# ବନଓ୍ୱାରୀର ଜୀବନ ଓ ସୃଜନରେ ରାଧାମୋହନ



ସଂଗ୍ରହ : ସୁନୀତି ମୁଣ୍ଡ୍

ବନଚାରୀର ଜୀବନ ଓ ସୃଜନରେ ରାଧାମୋହନ
ସଂଗ୍ରହ: ସୁନୀତି ମୁଣ୍ଡ

ପ୍ରକାଶକ: ଦକ୍ଷ ବୁକ୍ସ, କଟକ
ମୁଦ୍ରଣ: ଜଗନ୍ନାଥ ପ୍ରୋସେସ୍ ପ୍ରା. ଲି, କଟକ

Published by
Dakshya Books
(A unit of Dakshya Venture Pvt Ltd)
Flat No-305, 3rd Floor,
Sidhivinayak Residency, Mahadev Nagar, Lane-2,
Jharpada, Bhubaneswar, Khurdha, Odisha
Mob.: 9778311533
E-mail: dakshyaodisha@gmail.com



ISBN: 978-93-84902-40-7


Printed at Jagannath Process Pvt. Ltd
Dagarapada, Cuttack-02






**BANACHAREERA**
**JEEBANA O' SRUJANARE RADHAMOHANA**

*A COLLECTION OF INTERVIEWS, BOOK REVIEWS AND LIFESTORY*

by Suniti Mund

First Edition : 2017

Price : ₹ 200/-

# ଅଭିବ୍ୟକ୍ତି...

ପୁସ୍ତକଟିଏ ଜନ୍ମଲାଭ କଲାପରେ, ତା'ର ପରିଚୟ ଭଲମନ୍ଦଗୁଣ, ଆଲୋଚନା, ସମାଲୋଚନା, ସମୀକ୍ଷାଦି ବିଭିନ୍ନ ଖବର କାଗଜ, ପତ୍ରପତ୍ରିକା, ଚିଠି ଇତ୍ୟାଦି ଆକାରରେ ଓ ଫୋନ୍ ମାଧ୍ୟମରେ ପ୍ରକାଶ ପାଇଥାଏ। ମୁଁ ଓଡିଆରେ ଲେଖିବା ଆରମ୍ଭ ହୁଏ ୧୯୮୦ ମସିହାରେ। ଏହା ପୂର୍ବରୁ ମୁଁ ଇଂରାଜୀ ଭାଷାରେ ଲେଖାଲେଖି କରୁଥିଲି। କିନ୍ତୁ ସମୟର ପଟ୍ଟ ପରିବର୍ତ୍ତନରେ ମାତୃଭାଷା ଓଡିଆ ପ୍ରତି ଆକର୍ଷିତ ହୋଇପଡିଲି ଠିକ୍ ସନ୍ତାନଟିଏ ମା'ପ୍ରତି ଆକୃଷ୍ଟ ହେଲା ପରି। ମୋର ଇଂରାଜୀରେ ପ୍ରକାଶିତ ବଡ ଗଳ୍ପ 'In Retrospection' ଯାହା ସର୍ବଭାରତୀୟସ୍ତରରେ ବର୍ଷର ଶ୍ରେଷ୍ଠ ଗଳ୍ପ (୧୯୬୪, ମାଇ ମ୍ୟାଗାଜିନ୍ ଅଫ୍ ଇଣ୍ଡିଆ) ଭାବେ ପୁରସ୍କୃତ ହୋଇଥିଲା, ପ୍ରଖ୍ୟାତ ଚଳଚ୍ଚିତ୍ର ନିର୍ଦ୍ଦେଶକ ସାଧୁ ମେହେର ମହାଶୟ 'ପହେଲା ସବେରା' ନାମରେ ଫିଲ୍ମଟିଏ କରିବାକୁ ଯୋଜନା କରନ୍ତି। ଏଣେ ମୋର ହିତାକାଂକ୍ଷୀ ଉପରିସ୍ଥ ଅଫିସର ତଥା ନାଟ୍ୟ ନିର୍ଦ୍ଦେଶକ ବୃନ୍ଦାବନ ପାଣିଗ୍ରାହୀ ବାବୁ ଗପଟିକୁ 'ପ୍ରଥମ ପ୍ରଭାତ' ନାମରେ ଉପନ୍ୟାସଟିଏ ଲେଖିବାକୁ ପରାମର୍ଶ ଦେଇ କହନ୍ତି, 'ରାଧାମୋହନ ବାବୁ, ଇଂରାଜୀ ଭାଷା ଏକ ମହାସାଗର, ସେଥିରେ ଆପଣଙ୍କ ଇଂରାଜୀ ଲେଖା ଟୋପାଏ ପାଣି ସଦୃଶ ହୋଇ କେଉଁଆଡେ ଲୀନ ହୋଇଯିବ ତା'ର ପତ୍ତା ରହିବନାହିଁ କିନ୍ତୁ ମାତୃଭାଷାର ଛୋଟ ପୁଷ୍କରିଣୀରେ ଟୋପାଏ ଜଳ ପଡିଲେ ତାହା ଦୃଶ୍ୟମାନ ହୋଇ ଆଦର ଲାଭ କରିବ।' କହିବା ବାହୁଲ୍ୟ ଯେ ସେ ଜଣେ ଗାଇଡ୍ ଭଳି 'ପ୍ରଥମ ପ୍ରଭାତ' ଲିଖନ, ସଂଶୋଧନ ଓ ପ୍ରକାଶନରେ ଅକୁଣ୍ଠିତ ସାହାର୍ଯ୍ୟ କଲେ ଯ'ଦ୍ୱାରା 'ପ୍ରଥମ ପ୍ରଭାତ' ଉପନ୍ୟାସ ପ୍ରକାଶ ପାଇଲା ଯାହାକୁ 'ମୁଁ କିପରି ଲେଖକ ହେଲି' ସାକ୍ଷାତ୍‌କାରମାନଙ୍କରେ ପୁନଃ ପୁନଃ କହିଆସିଛି। ପ୍ରଥମ ଉପନ୍ୟାସର ପାଠକୀୟ ସଫଳତା ମୋତେ ଖୁବ୍ ଉତ୍ସାହିତ କଲା। ଯା'ପରଠାରୁ ଗପ, ଉପନ୍ୟାସ, ପ୍ରବନ୍ଧ-ସ୍ତମ୍ଭ ଲେଖି ଆସିଛି ଓ ଆସୁଛି, ଆଉ ପଛକୁ ଫେରିନି। ସମୟ ଥିଲା ଅରଣ୍ୟ ଚାରଣ ମୋର ପ୍ରିୟାଦପି ପ୍ରିୟଥିଲା ଜଙ୍ଗଲ ଓ ଜନ୍ତୁଙ୍କ ପ୍ରତି ଏକ ଆକର୍ଷଣରେ ବାନ୍ଧି ହୋଇ ପଡିଥିଲି । କିନ୍ତୁ ସମୟର ପ୍ରବାହମାନ ସ୍ରୋତରେ ପରମେଶ୍ୱର ହାତରୁ ବନ୍ଧୁକ ଛଡାଇ ନେଇ କଲମ ଧରାଇ ଦିଅନ୍ତି; ଜଙ୍ଗଲକୁ ଦୂରେଇ ନେଇ କାଗଜର ବନାନୀଟିଏ ଥୋଇ ଦିଅନ୍ତି ଏବଂ ଯୋଗାଇ ଦିଅନ୍ତି ଲେଖକୀୟ ଶବ୍ଦଗୋଳା। ସେଇ ଦିନଠୁଁ ହୁଏତ ମୃତ୍ୟୁ ପର୍ଯ୍ୟନ୍ତ ମଜ୍ଜି ରହିବି ମୋ ସାରସ୍ୱତ କକ୍ଷ ଭିତରେ। ଏହି ବକ୍ତବ୍ୟଟି ମୁଁ ପୁନଃ ପୁନଃ ଉଚ୍ଚାରିତ କରିଥାଏ ସାକ୍ଷାତ୍‌କାରମାନଙ୍କରେ। ସାକ୍ଷାତ୍‌କାର ଏକ ଉଚ୍ଚାଙ୍ଗ ସାହିତ୍ୟ। ଏଥିରେ ଲେଖକର ବ୍ୟକ୍ତିତ୍ୱ, ରୁଚି, ଅଭିରୁଚି, ଲେଖନୀର ଉଦ୍ଦେଶ୍ୟ, ଜୀବନଯାତ୍ରାର ଝଲକ ଆଦି ଅନେକ ତଥ୍ୟ ପଦାକୁ ଆସିଥାଏ, ଲେଖକର ପ୍ରକୃତ ପରିଚିତି ମିଳିଥାଏ।

ଅତୀତରେ ମୋର ସ୍ୱଳ୍ପଦୀର୍ଘ ସାକ୍ଷାତ୍‌କାର, ପୁସ୍ତକ, ପରିଚୟ, ସମୀକ୍ଷା ଇତ୍ୟାଦିଗୁଡିକ ଏକତ୍ରିତ କରି କାଳ ନିରବଧି ପରିପ୍ରେକ୍ଷୀରେ ମଣିଷ ମାନସପଟରେ ଆଉ କିଛି ଦିନ ତିଷ୍ଠି ରହିବା ଅଭିପ୍ରାୟରେ ସଂକଳନ ଆକାରରେ ପ୍ରକାଶ କରିବା ପାଇଁ ହିତୈଶୀ ବଂଧୁମାନେ ଅନୁରୋଧ କରନ୍ତି। ଯଥାର୍ଥ ଅବଶ୍ୟ । କିନ୍ତୁ ଦୀର୍ଘ ୩୫ବର୍ଷ ତଳରୁ ଆଜି ପର୍ଯ୍ୟନ୍ତ ମୋ ପ୍ରକାଶିତ ବହିର ପରିଚିତି ସାକ୍ଷାତ୍‌କାର ସମ୍ବନ୍ଧରେ ଲେଖାଗୁଡିକ ଖୋଜି ପାଇବା ଏବଂ ଏକତ୍ରିକରଣ କରିବା କାଠିକର ପାଠ। କେତେକୁଆଡେ ହଜିଗଲେଣି। ମହାବାତ୍ୟା ପରେ କେତୋଟି ବୃକ୍ଷ ତିଷ୍ଠିଲା ଭଳି ଯେଉଁ କେତୋଟି ଲେଖା ମିଳିଲା, ସେଗୁଡିକ ଏହି ପୁସ୍ତକରେ

ସଂକଳିତ ହେଉଛି ସ୍ୱଲିଖିତ ଜଙ୍ଗଲ ଓ ଜନ୍ତୁ ସମ୍ବନ୍ଧୀୟ ଆଉ କେତୋଟି ଉପାଦେୟ ପ୍ରବନ୍ଧ ସହିତ ଯେଉଁଗୁଡ଼ିକ ପରିବେଶ ଜନିତ ବିଶେଷ ଦିନମାନଙ୍କରେ ପତ୍ରପତ୍ରିକା, ଖବରକାଗଜ, ସ୍ମରଣିକାମାନଙ୍କରେ ପ୍ରକାଶ ପାଇଥିଲ (ସବୁଗୁଡ଼ିକ ଦେବା ସମ୍ଭବ ହେଉନି)। ମୋ ନିଜସ୍ୱ ଅନୁଭୂତି ଓ ଦୃଷ୍ଟିଭଙ୍ଗୀରେ ମୁଁ ବାଘକୁ 'ବନର ରାଜା', ହାତୀକୁ 'ଜଙ୍ଗଲର ସମ୍ରାଟ', ଅଜଗରକୁ 'ଅରଣ୍ୟର ବାଦ୍‌ଶାହ, ଚିତା ବାଘକୁ 'ବନ-ବନାନୀର ରାଜକୁମାର' ଇତ୍ୟାଦି ନାମକରଣ କରିଛି। ପାଠକୀୟ ପତ୍ର ଓ ଭ୍ରମ୍ୟଭାଷରେ ମୁଁ ଦକ୍ଷ ବୁକ୍‌ସର ସ୍ୱତ୍ୱାଧିକାରିଣୀ ସୁନୀତି ମୁଣ୍ଡଙ୍କୁ ଧନ୍ୟବାଦ ଦେଉଛି। ତାଙ୍କ ବିଷୟରେ ମୁଁ ଶୁଣିଥିଲି। ତାଙ୍କ ମାସିକ ପତ୍ରିକା 'ଦୀକ୍ଷା' ଉପନ୍ୟାସ ପାଇଁ ଉତ୍ସର୍ଗୀକୃତ। ରାଜରାସ୍ତାମାନଙ୍କରେ ବଡ ବଡ ହୋଡିଂ ବିଜ୍ଞାପନରୁ ଜାଣିଥିଲି। ଦୈବାତ୍ ଗତ ପୂଜା ସଂଖ୍ୟ 'ଦୀକ୍ଷା' ପାଇଁ ଉପନ୍ୟାସ ସମ୍ବନ୍ଧରେ ସଂକ୍ଷିପ୍ତ ସାକ୍ଷାତ୍‌କାର ନେବା ପାଇଁ ମୋ ଘରେ ଉପସ୍ଥିତ ହୁଅନ୍ତି। ସୁନୀତିଙ୍କର ପ୍ରଥମ ସାକ୍ଷାତରେ ମୋର ଆଖି ବିସ୍ଫାରିତ ହୋଇଗଲା। ବ୍ୟକ୍ତିତ୍ୱରେ ଯେମିତି, ଗୁଣରେ ତତୋଧିକ, କାର୍ଯ୍ୟରେ କରିତ୍‌କର୍ମା, ମନେହେଲେ। ସତେ ଯେମିତି ସେ ଓଡ଼ିଆ ନାରୀ ଶକ୍ତିର ଜଣେ ଜାଗ୍ରତ ପ୍ରହରୀ। ମୁଁ ଓଡ଼ିଆ ଉପନ୍ୟାସର ଭବିଷ୍ୟତ ଚିନ୍ତା କରି ନୈରାଶ୍ୟରେ ଭାଙ୍ଗି ପଡୁଥିଲାବେଳେ ସେ ଜଣେ ଅଭଙ୍ଗା କଣ୍ଢେଇ ଭଳି ଆବିର୍ଭୂତ ହୁଅନ୍ତି । ସହସା ତାଙ୍କ ଲ୍ୟାପ୍‌ଟପ୍‌ରେ ସଂକ୍ଷିପ୍ତ ସାକ୍ଷାତ୍‌କାରଟିଏ ସଂଗୃହୀତ କରିନେଲେ। ୨୦୧୬ର 'ଦୀକ୍ଷା' ପୂଜାସଂଖ୍ୟା ଓଡ଼ିଆ ପାଠକପାଠିକା ଲେଖକମାନଙ୍କୁ ପ୍ରୀତ, ମୁଗ୍ଧ କରିଥିବ ନିଶ୍ଚୟ। ସୁନୀତିଙ୍କ ଅଭିପ୍ରାୟ ଓ ମୋର ଆଭିମୁଖ୍ୟ ମେଳ ଖାଇଲା। କଳାର ଦେଶ ଉତ୍କଳ, ବୀରତ୍ୱର ଦେଶ କଳିଙ୍ଗ, ଜାତିଶ୍ରେଷ୍ଠ ଓଡ଼ିଆର ଦେଶ ଓଡ଼ିଶା ବିଶ୍ୱପୃଷ୍ଠରେ ସୁପ୍ରତିଷ୍ଠିତ ହେଉ ମୋର କାମନା। ଏହି ଶୁଭ ଅବସରରେ ସୁନୀତିଙ୍କ ମଥାରେ କଲ୍ୟାଣର କଳସୀଟିଏ ଥାପନା କରୁଛି। ଚରୈବତି... ଚରୈବତି...



-ରାଧାମୋହନ ମହାପାତ୍ର

ଯେଉଁ ମହାନ୍
ପୂଣ୍ୟାତ୍ମାଙ୍କର ଅସୀମ
କରୁଣାରୁ ଏ
ଧରାପୃଷ୍ଠରେ ଭୂମିଷ୍ଠ
ହୋଇଛୁ ସେମାନଙ୍କ
ପବିତ୍ର ପାଦପଦ୍ମରେ
ଆମ୍ଭେ ଭକ୍ତ୍ୟର୍ଘ୍ୟ
ଅର୍ପଣ କରୁଛୁ ।



ରାଧାମୋହନ ମହାପାତ୍ରଙ୍କ ବାପା ବାଞ୍ଛାନିଧି
ମହାପାତ୍ର ଓ ବୋଉ ରଂଜନା ମହାପାତ୍ର



ରାଧାମୋହନ ମହାପାତ୍ରଙ୍କ ଶ୍ୱଶୁର ରଘୁନାଥ ଦାସ ଓ ଶାଶୂ ପଦ୍ମାଳୟା ଦାସ

ଯେଉଁମାନଙ୍କ ଦିଗ୍‌ଦର୍ଶନ ଆମ ଜୀବନରେ ପାଥେୟ ହୋଇଛି ସେମାନଙ୍କ ପ୍ରତି
ଲେଖକଙ୍କର ଆନ୍ତରିକ କୃତଜ୍ଞତା ।



ରାଧାମୋହନ ମହାପାତ୍ରଙ୍କ ବଡ଼ଭାଇ ପ୍ରିୟନାଥ ମହାପାତ୍ର ଓ ଭାଉଜ ରେଣୁବାଳା ମହାପାତ୍ର



ରାଧାମୋହନ ମହାପାତ୍ରଙ୍କ ବଡ଼ଭଉଣୀ ରମାରାଣୀ ମହାନ୍ତି ଓ ଭିଣୋଇ ବଂଶୀଧର ମହାନ୍ତି


















୧. ରାଧାମୋହନ ମହାପାତ୍ର ଏବଂ ଧର୍ମପତ୍ନୀ ପ୍ରତିଭା ମହାପାତ୍ର, ୨. କନ୍ୟା ଲିପିକା, ସ୍ୱାମୀ ହରିହର ଦାସ ଓ ନାତୁଣୀ ସାୟନା, ୩. କନ୍ୟା ସମାପିକା, ସ୍ୱାମୀ ଅସୀତ୍ ରଂଜନ ଦାସ, ନାତି ରୁଦ୍ରାକ୍ଷ ଏବଂ ରେୟାନ୍, ୪. ପୁତ୍ର ରାକେଶ, ବୋହୂ ରୋଜାଲିନ, ନାତୁଣୀ ଅନ୍ୱେଷା, ନାତି ଆରିୟାନ୍, ୫. କନ୍ୟା ରୁଚିକା, ସ୍ୱାମୀ ଅଞ୍ଜନେୟ ପାଲ୍, ନାତୁଣୀ ଆସି

# ଅରଣ୍ୟର ଇତିବୃତ୍ତ

ଅରଣ୍ୟ ହେଉଛି ବିଶ୍ୱର ସର୍ବବୃହତ ଓ ସର୍ବଶ୍ରେଷ୍ଠ ଗ୍ରନ୍ଥାଳୟ ଏବଂ ପ୍ରକୃତିର ଅମୂଲ୍ୟ ଗନ୍ତାଘର । ଅରଣ୍ୟ ମଣିଷର ଆଦିଭୂମି । ପୃଥିବୀ ସୃଷ୍ଟିର ନିୟୁତ ନିୟୁତ ବର୍ଷ ପରେ ଏନ୍‌ଜିଓସାର୍ମ ବା ଉଦ୍ଭିଦ ଗୋଷ୍ଠୀର ଜନ୍ମ । ପ୍ରାୟ ଦଶ କୋଟି ବର୍ଷ ପୂର୍ବେ ପ୍ରାକୃତିକ କ୍ରମବିକାଶ ଓ ବିବର୍ତ୍ତନ ପ୍ରକ୍ରିୟାରେ ଜଳ କଲ୍ଲୋଳିତ ପୃଥିବୀ ତରୁଲତାରେ ପଲ୍ଲବିତ ହୋଇ ଅରଣ୍ୟରେ ପରିଶୋଭିତ ହେଲା । ଅରଣ୍ୟ କହିଲେ ବିବିଧ ଦ୍ରୁମ ଗୁଳ୍ମଲତା, ଜୀବଜନ୍ତୁ, ପାହାଡ଼ ପର୍ବତ, ଝରଣାଦି ଏକତ୍ରିତ ହୋଇଥିବା ଜୈବ ବିବିଧତାକୁ ବୁଝାଏ । ଏହି ଅଞ୍ଚଳ ସହିତ ମଣିଷର ସଂପର୍କ ଅତି ନିବିଡ଼ । ଅରଣ୍ୟର ପୁଷ୍ପଫଳ ବିମଣ୍ଡିତ ଅପୂର୍ବ ଅପରୂପ ଶୋଭାରାଜି ମନୁଷ୍ୟ ପ୍ରାଣକୁ କେବଳ ସ୍ପନ୍ଦିତ କରେ ନାହିଁ । ମଣିଷକୁ ପରିପୁଷ୍ଟ କରିଥାଏ, ତା'ର ଆର୍ଥିକ ମେରୁଦଣ୍ଡକୁ ସୁଦୃଢ଼ କରିଥାଏ । ଆଦିମ ଅଧିବାସୀ ସଂପ୍ରଦାୟ ଜୀବନ ଧାରଣ ପାଇଁ ମୁଖ୍ୟତଃ ଅରଣ୍ୟ ଉପରେ ନିର୍ଭରଶୀଳ । ପରିବେଶ ସନ୍ତୁଳନ ରକ୍ଷା, ଜଳଚକ୍ରର ସୁରକ୍ଷା, ବାୟୁଚକ୍ର ସଞ୍ଚାଳନ, ବିଶ୍ୱ ଉଷ୍ଣତା ନିୟନ୍ତ୍ରଣ, ଜୀବଜନ୍ତୁ ଓ ପକ୍ଷୀ ଜଗତ ପାଇଁ ନିରାପଦ ଆଶ୍ରୟସ୍ଥଳୀ, ମୃତ୍ତିକା ସଂରକ୍ଷଣ, ପ୍ରାକୃତିକ ବିପର୍ଯ୍ୟୟରୁ ରକ୍ଷା, ଜୈବ ବିବିଧତାର ସୁରକ୍ଷା ଆଦି ବହୁବିଧ ବ୍ୟବସ୍ଥା ଅରଣ୍ୟ ଯୋଗାଇ ଦେଇଥାଏ । ଅରଣ୍ୟର ବୃକ୍ଷଲତା ହିଁ ଅଙ୍ଗାର ଆତ୍ମୀକରଣ କରି ଅମ୍ଳଯାନ ସୃଷ୍ଟି କରିଥାଏ ଯାହା ଜୀବଜଗତ ପାଇଁ ସଂଜୀବନୀ । ଏଣୁ ଅରଣ୍ୟ ସ୍ରଷ୍ଟାଙ୍କର ଅମୂଲ୍ୟ ସୃଷ୍ଟି ।

ଜଳବାୟୁ ମୃତ୍ତିକା ପ୍ରକାରଭେଦକୁ ଆଧାର କରି ଅରଣ୍ୟକୁ ବିଭନ୍ନ ଶ୍ରେଣୀରେ ବିଭକ୍ତ କରାଥାଏ ଯଥା ଚିର ହରିତ୍ ଅରଣ୍ୟ, ଶୁଷ୍କ ଅରଣ୍ୟ, ପୂର୍ଣ୍ଣପୋକ୍ଷୀ ଅରଣ୍ୟ, ପାର୍ବତ୍ୟ ଅରଣ୍ୟ, ଜୁଆରିଆ ଅରଣ୍ୟ ହିମାଞ୍ଚଳ ଅରଣ୍ୟ । ପୃଥିବୀର ପ୍ରାୟ ୭୬ ପ୍ରତିଶତ ଅଞ୍ଚଳ ଜଙ୍ଗଲ । ଅଧୁନା ଭାରତ ବର୍ଷର ଅରଣ୍ୟର ଆୟତନ ବିଶ୍ୱ ଜଙ୍ଗଲ ଆୟତନର ଶତକଡ଼ା ୧.୭୮ ପ୍ରତିଶତ ଯାହା ଅତ୍ୟନ୍ତ ଉଦ୍‌ବେଗଜନ ।

ଭାରତରେ ରହିଛି ୬୯୦୮୯୯ ବର୍ଗ କିଲୋମିଟର ଅରଣ୍ୟ ଯାହାକି ଦେଶର ସମଗ୍ର ଆୟତନର ୨୧ ଭାଗ । ସେହିପରି ଆମ ଓଡ଼ିଶା ରାଜ୍ୟରେ ଜଙ୍ଗଲ ଜମିର ଆୟତନ ୪୮,୮୫୫ବର୍ଗ କି.ମି, ଯାହା ସମଗ୍ର ଆୟତନର ୩୧.୮୮ ଭାଗ ବୋଲି ଦାବି କରାଯାଉଛି ।

ପୃଥିବୀର କୌଣସି ଦେଶର ଜଙ୍ଗଲ କ୍ଷେତ୍ରରେ ପରିବୃଦ୍ଧି ଘଟୁଥିବାର ଦେଖାଯାଉ ନାହିଁ । ବରଂ ପ୍ରତିବର୍ଷ ୦.୦୫ ପ୍ରତିଶତ ବୃକ୍ଷ କ୍ଷୟ ଘଟୁଛି ଓ ଜଙ୍ଗଲର ପରିସୀମା ସଙ୍କୁଚିତ ହେଉଛି । ଜଙ୍ଗଲର ଅବକ୍ଷୟ ଯୋଗୁଁ କେବଳ ମଣିଷ ନୁହେଁ, ଜୀବମଣ୍ଡଳ ବିପଦାପନ୍ନ । ଏହା ଦ୍ୱାରା ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ଶୋଷଣପ୍ରକ୍ରିୟା ବ୍ୟାହତ ହୋଇ ଗଚ୍ଛିତ ଅଙ୍ଗାରକ ଅଙ୍ଗାରକାମ୍ଳରୂପେ ବାୟୁମଣ୍ଡଳକୁ ନିର୍ଗତ ହୋଇ ବିଶ୍ୱ ଉତ୍ତାପ ବୃଦ୍ଧିରେ ସହାୟ ହେଉଛି । ବିଶ୍ୱଉତ୍ତାପ ଯୋଗୁଁ ମେରୁ ଅଞ୍ଚଳରେ । ବରଫ ତରଳିବା ଆରମ୍ଭ ହୋଇଛି ଏବଂ ସମୁଦ୍ର ପତନ ବୃଦ୍ଧି ହୋଇ ଉପକୂଳ ଅଞ୍ଚଳରେ କ୍ଷତି ଘଟାଉଛି । ମାଳଦ୍ୱୀପ ପରି ଅନେକ ଦେଶ ଆଜି ଲୀନ ହେବାର ଦ୍ୱାର ଦେଶରେ ।

ପରିସଂଖ୍ୟାନ ପୃଷ୍ଠାରୁ ଜଣାଯାଏ ପୃଥିବୀର ୭.୬ ପ୍ରତିଶତ ସ୍ତନ୍ୟପାୟୀ, ୧୨.୬ ପ୍ରତିଶତ ପକ୍ଷୀ, ୬.୨ ପ୍ରତିଶତ ସରୀସୃପ ପ୍ରଜାତିର ପ୍ରାଣୀ ଆମ ଭାରତରେ ବାସ କରନ୍ତି । ପ୍ରାୟତଃ ୩୫୦ ପ୍ରଜାତିର ସ୍ତନ୍ୟପାୟୀ ଜୀବ, ୨୦୦୦ ପ୍ରଜାତିର ପକ୍ଷୀ, ୫୦୦ ପ୍ରଜାତିର ସରୀସୃପ, ୨୫ ହଜାରରୁ ଅଧିକ କୀଟ ପତଙ୍ଗ ସହିତ ପାଖାପାଖି ୨୫୦୦ପ୍ରଜାତିର ମାଛ ଓ ସାମୁଦ୍ରିକ ଜୀବ ଅଛନ୍ତି । ତନ୍ମଧ୍ୟରୁ ଭାରତରେ ୧୧୪୩ ପ୍ରଜାତିର ପ୍ରାଣୀକୁ ବିରଳ ଓ ବିପନ୍ନ ପ୍ରାଣୀ ଭାବେ ଚିହ୍ନଟ କରାଯାଇଛି । ଏହି ବିରଳ ତାଲିକାରେ ୭୧ ପ୍ରଜାତିର ସ୍ତନ୍ୟପାୟୀ ପ୍ରାଣୀ, ୮୮ ପଜାତିର ପକ୍ଷୀ ଏବଂ ୧୧ ପ୍ରଜାତିର ସରୀସୃପ ରହିଛନ୍ତି । ପରିବେଶ ଅସନ୍ତୁଳନ, ଦ୍ରୁତ ଜଙ୍ଗଲକ୍ଷୟ ଓ ତ୍ୱରିତ ଶିଳ୍ପାୟନ ଓ ଏଇ ଭଳି ଜନ ବିସ୍ଫୋରଣର ବିନାଶ ପର୍ବ ଯଦି ଲାଗିରହେ ହୁଏତ ଆଉ କିଛି ଶତାବ୍ଦୀ ପରେ ସମୟ ଆସିବ ମଣିଷ ବ୍ୟତୀତ ଆଉ କୌଣସି ଜୀବଜନ୍ତୁ ଏ ପୃଥିବୀ ପୃଷ୍ଠରେ ଦେଖିବାକୁ ମିଳିବେ ନାହିଁ। ଯଦି ସେମାନଙ୍କୁ କିଏ ଜାଣିବାକୁ ଇଚ୍ଛା କରିବ, ସେମାନେ କେବଳ ପୁସ୍ତକ ପୃଷ୍ଠାର ଚିତ୍ରରେ ଅଥବା ମଣିଷ ସୃଷ୍ଟ ଚିଡ଼ିଆଖାନାରେ । ହୁଏତ ସେତେବେଳର ଚିଡ଼ିଆଖାନାରେ ସ୍ଥିତି ବଦଳି ଯାଇଥିବ । ପରିବେଶ ଅସନ୍ତୁଳନ, ପ୍ରାକୃତିକ ବିପର୍ଯ୍ୟୟ, ବିବର୍ତ୍ତନବାଦ ପରିପ୍ରେକ୍ଷୀରେ ଜୀବ ଜଗତର ଚିତ୍ର ଓ ଚରିତ୍ର ବଦଳି ଯାଇଥିବ ସଂପୂର୍ଣ୍ଣ ।

ସଂପ୍ରତି ଭାରତରେ ୮୬ଟି ଜାତୀୟ ବନ ଉଦ୍ୟାନ, ୪୮୧ଟି ଅଭୟାରଣ୍ୟ, ଶତାଧିକ ସୁରକ୍ଷିତ ଓ ସଂରକ୍ଷିତ ଜଙ୍ଗଲ, ଗ୍ରାମ୍ୟ ଜଙ୍ଗଲ ରହିଅଛି । କ୍ରମଶଃ ସେମାନେ ଆଉ ଘଞ୍ଚ ଅରଣ୍ୟ ପଦବାଚ୍ୟ ହୋଇନାହାନ୍ତି। ନଦୀରେ ନାହିଁ ମାଛ ବନରେ ନାହିଁ ଗଛ ଭଳି ସାଂପ୍ରତିକ ଅବସ୍ଥା। ସରକାରଙ୍କ ବନ କ୍ଷେତ୍ରଫଳ ଆକଳନ ୩୧.୮୩% ସଠିକତା ଉପରେ ସନ୍ଦେହ ଜାତ ହୁଏ। ମୋତେ ୭୦ ବୟସ ଛୁଇଁଲାଣି । ମୋ ଜୀବକାଳ ଭିତରେ ଅନେକ ଅଭୟାରଣ୍ୟ, ସଂରକ୍ଷିତ ଗ୍ରାମ୍ୟ ଜଙ୍ଗଲ ଓ ଜାତୀୟ ଉଦ୍ୟାନ ସଂସ୍ପର୍ଶରେ ଆସିଛି ଜଣେ ଜଙ୍ଗଲବୁଲା ଉଦାମ ବନଚାରୀଭାବେ। ମାତ୍ର ଅର୍ଦ୍ଧ ଶତାବ୍ଦୀ କାଳ ଭିତରେ ବନ ବୃକ୍ଷର ଘଞ୍ଚତା ମଧ୍ୟରେ ଆକାଶ ପାତାଳ ପ୍ରଭେଦ ଦେଖି ପାରୁଛି । ଗ୍ରାମ ହେଉ ବା ସହରର ମାଫିଆ ହୁଅନ୍ତୁ ମାଙ୍କଡ଼ ହାତରେ ଶାଳଗ୍ରାମ ଭଳି ଅବସ୍ଥା ଉପୁଜିଛି ଏବଂ ଏହା ଅଧିକ ଉତ୍କଟ ହେଉଛି । ଜଙ୍ଗଲ ଆମର, ଏହାକୁ ହରିଲୁଟ କରିବାର ଅଧିକାର ଆମର। ଜଗୁଆଳିକୁ ପୁଣି ଜଗିବ କିଏ ? ଅନେକ ଆଭ୍ୟନ୍ତର ଜଙ୍ଗଲ ମୁଁ ଦେଖିଛି। ବାହାର ଜଗତକୁ ଶ୍ୟାମଳ ଦିଶୁଥିଲେ ମଧ୍ୟ ଭିତର ଖୋଲା, ଖାଲି ଖାଲି। ଯେଉଁଠି ବୃକ୍ଷଟିଏ କଟାଯାଇଛି ବା ବାତ୍ୟାରେ ବିଧ୍ୱସ୍ତ ହୋଇଛି, ସେଠି ନୂତନ ଗଛ ରୋପଣ କରିବା ଓ ତାକୁ ବୟଃପ୍ରାପ୍ତ ଅବସ୍ଥାକୁ ଆଣିବା ଯଦିବି ଯୋଜନାମାନ ରହିଛି, ତାହା କେତେଦୂର କାର୍ଯ୍ୟକାରୀ ହେଉଛି ମା ଗଙ୍ଗେଇ ଜାଣନ୍ତି। ଧରାଯାଉ ଜଗନ୍ନାଥଙ୍କ ରଥ ନିର୍ମାଣ ପାଇଁ ସଦ୍ୟ ଗଛ କଟାଯାଇ ବିପୁଳ କାଠ ବ୍ୟବହାର କରାଯାଉଛି, ସେହି ସ୍ଥାନମାନଙ୍କରେ ନୂତନ ଗଛ ରୋପଣ, ସେଗୁଡ଼ିକର ଯତ୍ନ ଓ ପରିବୃଦ୍ଧି ସମ୍ବନ୍ଧରେ ଯଦିଓ ବିସ୍ତୃତ ନିର୍ଦ୍ଦେଶନାମା ରହିଛି, ଏହାର ସମୀକ୍ଷା ଓ କାର୍ଯ୍ୟକାରିତା ସମ୍ବନ୍ଧରେ ଜନସାଧାରଣ ଅବଗତ ନାହାନ୍ତି । କାଠ ଦ୍ୱାରା ରଥ ନିର୍ମାଣ ପାଇଁ ବିକଳ୍ପ ବ୍ୟବସ୍ଥାର ଆହ୍ୱାନ ଉପସ୍ଥିତ ହୋଇଛି । କିନ୍ତୁ କାର୍ଯ୍ୟକାରୀ କରିବ କିଏ ? ସାଧାରଣତଃ ଗୋଟିଏ ବୃକ୍ଷକୁ ଉଭାରିବା ଓ ଯୁବାବସ୍ଥାକୁ ଆଣିବାକୁ ଅନ୍ୟୂନ ୩୦ରୁ ୫୦ ବର୍ଷ ଲାଗିଥାଏ ବୃକ୍ଷର

ଶ୍ରେଣୀ ନେଇ । ବନ୍ୟ ପ୍ରାଣୀ ସଂରକ୍ଷଣ ଯୋଜନା ୨୦୦୨ ଅନୁସାରେ ପ୍ରତ୍ୟେକ ଅଭୟାରଣ୍ୟ ଓ ଜାତୀୟ ଉଦ୍ୟାନର ୧୦ କି.ମି. ପରିସୀମାକୁ ପ୍ରାକୃତିକ ସ୍ପର୍ଶକାତର ଅଞ୍ଚଳ (ଇ. ଏସ୍. ଏ.) ଭାବରେ ସୂଚିତ କରାଯିବା କଥା । କିନ୍ତୁ ଖଣି ମାଫିଆ, କାଠ ମାଫିଆ, ବ୍ୟୁଲଡ଼ର ଓ ଶିଳ୍ପପତିଙ୍କ ସ୍ୱାର୍ଥପରତା, ଚକ୍ରାନ୍ତ ଓ ମଧୁଚନ୍ଦ୍ରିକା ମନୋଭାବ ଯୋଗୁଁ ଆଇନ୍ ବସ୍ତୁତଃ କାର୍ଯ୍ୟକାରୀ ହୋଇପାରୁନାହିଁ । 'ତୁ ଯା ଆଗେ କରିବୁ ଫେରାଦ, ସେ ମୋତେ ଦେଇଛି ବରାଦ' ଅନେକାଂଶରେ ଦେଖିବାକୁ ମିଳୁଛି । ନାହିଁ ଆନ୍ତରିକତା ନାହିଁ ଶହେପଣ ସ୍ୱଚ୍ଛତା ।

ବୃକ୍ଷରୋପଣ ସମ୍ବନ୍ଧୀୟ ସରକାର ଉଦାସୀନତା ତଥା କାର୍ଯ୍ୟନିଷ୍ଠତା ସଂପର୍କରେ ଏକ ବ୍ୟଙ୍ଗୋପାଖ୍ୟାନ ଶୁଣନ୍ତୁ । ବିଭାଗୀୟ ହାକିମ ଚୌକିରେ ବସି ଚାରି ଜଣ ତଳିଆ କର୍ମଚାରୀଙ୍କୁ ବୃକ୍ଷରୋପଣ ପାଇଁ ନିର୍ଦ୍ଦେଶ ଦିଅନ୍ତି । ରାଜଗଡ଼ାର ଦୁଇ କଡ଼ରେ ଠାଏ ସ୍ଥାନ ନିରୂପିତ ହୁଏ, ଚାରିଜଣ କର୍ମଚାରୀଙ୍କ ମଧ୍ୟରେ କାମ ବାଣ୍ଟି ଦିଆଯାଏ । ପ୍ରଥମ କର୍ମଚାରୀଙ୍କ କେବଳ ଗାତ ଖୋଳିବ । ୨ୟ ଜଣକ ଗଛଚାରା ଗାତରେ ଥୋଇବ । ୩ୟ କର୍ମଚାରୀ ତାପରେ ଗାତ ପୋତି ପୋତି ଯିବ । ୪ର୍ଥ କର୍ମଚାରୀ ଟିଣରେ ପାଣି ବୋହି ଚାରାମୂଳରେ ପାଣି ଦେଇ ଦେଇ ଯିବ । ଦୈବାତ୍ ସେଦିନ ୨ୟ ବ୍ୟକ୍ତି ଯାହାର କାମ ଗାତରେ ଚାରା ଥୋଇବା, ଆସି ପାରିଲା ନାହିଁ । ହାକିମଙ୍କ କର୍ମ ବଣ୍ଟନ ଆଦେଶ ଉଲ୍ଲଂଘନ ହୋଇନପାରେ । ଅତଏବ ତୃତୀୟ ବ୍ୟକ୍ତି ଗାତରେ ଚାରା ଆଉ ନଥାଉ ସେ ଗାତଗୁଡ଼ିକ ପୋତି ଚାଲିଲା ଏବଂ ଚତୁର୍ଥ ବ୍ୟକ୍ତି ଗାତ ଗୁଡ଼ିକରେ ପାଣି ଦେଇ ଦେଇ ଚାଲିଲା । ଏଭଳି ଚାଲିଛି ସରକାର କାର୍ଯ୍ୟଦକ୍ଷତା, କର୍ମନିଷ୍ଠତା । ଫାଇଲଗୁଡ଼ିକରେ ଅୱାଜ ବେଶୀ, କାମ କମ୍ । କେଉଁ ଜଙ୍ଗଲରେ କି କି କିସମରେ କେତେ ସଂଖ୍ୟାରେ ଗଛ ଅଛି, ମୁଁ ଜାଣିବା ପାଇଁ ଆର ଟି ଆଇ ଆକ୍ଟରେ ଆଶ୍ରୟ ନେଇଥିଲି । କିନ୍ତୁ ବୃକ୍ଷମାନଙ୍କ ସଂପୂର୍ଣ୍ଣ ଗଣନା ହୋଇପାରି ନଥିବାରୁ ନିରାଶ ହେବାକୁ ପଡ଼ିଥିଲା ।

ଅରଣ୍ୟ ପାଇଁ ସବୁଠୁଁ ବିପଜ୍ଜନକ ପରିସ୍ଥିତି ସୃଷ୍ଟି କରୁଛି ଜନସଂଖ୍ୟା ବିସ୍ଫୋରଣ ଓ ବନାଗ୍ନି ଓ ପୋଡୁ ଚାଷ । ପ୍ରତି ବର୍ଷରେ ବନାଗ୍ନିରେ ୦.୦୭ ଜଙ୍ଗଲ ଧ୍ୱଂସ ହେଉଛି ଯାହା ଦ୍ୱାରା ଜୈବ ବିବିଧତା କଠୋର ଭାବେ ଆଘାତପ୍ରାପ୍ତ । ମୋର ଜଙ୍ଗଲ ପରିଭ୍ରମଣ କାଳରେ ଅନେକଥର ବନାଗ୍ନିର ଭୟାବହତା ଦେଖି ମର୍ମାହତ ହୋଇଛି । ଜଳ ଭଳି ଅଗ୍ନି ବିହୁନେ ସୃଷ୍ଟିନାଶ, ଅଗ୍ନି ଗହଳେ ସୃଷ୍ଟିନାଶ ସୂକ୍ତିର ସତ୍ୟତା ବାସ୍ତବ କ୍ଷେତ୍ରରେ ମର୍ମେ ମର୍ମେ ଉପଲବ୍ଧି କରିଛି (ପୃଷ୍ଠା-୭୯, ମିଷ୍ଟର ଖରସେଲ୍) ବିକଶିତ ଦେଶ ଭଳି ଆମର ଅତ୍ୟାଧୁନିକ ଉପକରଣ ନାହିଁ ଭସ୍ମାସୁର ଅଗ୍ନିକୁ ନିର୍ବାପିତ କରିବା ପାଇଁ । ନିକଟ ଅତୀତରେ ତା ୨୩-୦୩-୧୫ ରେ ଘଟିଥିବା ସିମିଳିପାଳ ଜାତୀୟ ବନ ଉଦ୍ୟାନର ଅଗ୍ନିକାଣ୍ଡ ଏହାର ଦୃଷ୍ଟାନ୍ତ ନିଆଯାଇପାରେ ।

ଆଜି ପୃଥିବୀର ଜନ ସଂଖ୍ୟା ୭୦୦ କୋଟିରୁ ଅଧିକ । ହିସାବ କରି ଦେଖାଯାଇଛି ଯେ ଜନ ସଂଖ୍ୟା ଏହି ହାରରେ ବଢ଼ିଲେ ୨୦୫୦ ମସିହା ବେଳକୁ ପୃଥିବୀର ଜନସଂଖ୍ୟା ୯୦୦ କୋଟି ହୋଇଯିବ । ପୂର୍ବେ ୧୦୦ କୋଟି ଲୋକ ସୃଷ୍ଟିକରିବାକୁ ଶହ ଶହ ବର୍ଷ ଲାଗୁଥିଲା ବେଳେ ଏବେ ୧୦୦ କୋଟି ଲୋକ ସୃଷ୍ଟି କରିବାକୁ ୧୦ ବର୍ଷ ଲାଗୁଛି । ଏସିଆ ମହାଦେଶ ବିଶ୍ୱ ଜନସଂଖ୍ୟାକୁ ଯୋଗଦାନ ସର୍ବାଧିକ ଥିବାବେଳେ ଭାରତ ଖୁବଶୀଘ୍ର ବିଶ୍ୱର ଏକ ନମ୍ବର ଜନସଂଖ୍ୟା ବିଶିଷ୍ଟ ଦେଶ ହେବାକୁ ମୁହାଁଇଛି ।

ଜନସଂଖ୍ୟା ବିସ୍ଫୋରଣ ଜଙ୍ଗଲ ଧ୍ୱଂସର ମୁଖ୍ୟ କାରଣ। କ୍ରମ ବର୍ଦ୍ଧିଷ୍ଣୁ ମଣିଷର ବାସ ପାଇଁ ସ୍ଥାନ ସଂପ୍ରସାରଣ ହେଉଥିବା ବେଳେ ଅରଣ୍ୟାଞ୍ଚଳର ସୀମା ଉଲଂଘନ ଓ କ୍ରମଶଃ ସଂକୁଚନ ମୁଖ୍ୟ ସମସ୍ୟା ଉପୁଜିଛି। ଭୋଗବାଦୀ ସଂସ୍କୃତି ଅରଣ୍ୟର କାଳ ହୋଇଛି । ଆଜି ଜନସଂଖ୍ୟା ନିୟନ୍ତ୍ରଣ ପଦକ୍ଷେପକୁ କଡ଼ା କଡ଼ି ଭାବେ ପାଳନ ନକଲେ ମଣିଷମୟ ପୃଥିବୀ ଭାରତ ଶେଷରେ ଭସ୍ମାସୁର ହୋଇଯିବା ଅସମ୍ଭବ ନୁହେଁ। ଚିନ୍ତାଶୀଳ ବୁଦ୍ଧିଜୀବୀମାନେ ଜାତି, ଧର୍ମ, ଗୋତ୍ର, ନିର୍ବିଶେଷରେ ଜନ୍ମ ନିୟନ୍ତ୍ରଣ ବାଧ୍ୟତାମୂଳକ କରିବା ପାଇଁ ଆହ୍ୱାନ ଦେଲେଣି ଯାହା ସ୍ୱାଗତଯୋଗ୍ୟ। (ପୃଷ୍ଠା ୭୯, ମିଷ୍ଟର ଖରସେଲ୍, ପୃଷ୍ଠା-୧୧୮, ୱାଲଡ ମିରର୍) ଆଜିର ଏହି ବିଷମ ପରିସ୍ଥିତିରେ ବୃକ୍ଷ ବଞ୍ଚାଇବା ପାଇଁ ଆହ୍ୱାନ 'କାମକୁ କରାଇ ପଛ, ଆସ ଲଗାଇବା ଗଛ' 'ବୃକ୍ଷ ଆମ ଜୀବନ ତା ସୁରକ୍ଷାରେ ଦିଅ ମନ' 'ମୋତେ ଦିଅ ଜଳ ମୁଁ ଦେବି ଫଳ' 'ବୃକ୍ଷ ଆମ ବନ୍ଧୁ ତା'ର ଅନ୍ୟନାମ କୃପାସିନ୍ଧୁ' ଆଦି ଜନସଚେତନା ପାଇଁ ବାରମ୍ବାର ପ୍ରଚାରିତ ହୋଇ କାୟମନୋବାକ୍ୟରେ କାର୍ଯ୍ୟକାରୀ ହେଲେ ଆଜିର ଦୁଃସ୍ଥ ରୋଗିଣା ଅଭୟାରଣ୍ୟ ପୁନର୍ଜୀବୀତ ହୋଇ ଜୀଇଁ ଉଠିବ, ପ୍ରକୃତି ଓ ପରିବେଶ ହସି ଉଠିବ (ପୁରୀ କୋଣାର୍କ ମାରାଇନ୍ ଡ୍ରାଇଭ୍ ବେଲେଶ୍ୱର ମନ୍ଦିର ସମ୍ମୁଖ ନିର୍ଜନ ନିବାସ ସତ୍ୟାଶ୍ରମ/ ଜୀବେଦୟା ଫାର୍ମ ହାଉସ ପରିସର ଦେଖନ୍ତୁ)। ପରିଶେଷରେ ଏହି ପରିପ୍ରେକ୍ଷୀରେ ଜଙ୍ଗଲର ଖାଦ୍ୟଶୃଙ୍ଖଳ ରକ୍ଷାକାରୀ ବଣର ଜଗୁଆଳି ବାଘର ଭୂମିକା କହିବ ।

"ନର୍ବନୋ ବଧ୍ୟତେ ବ୍ୟାଘ୍ରୋ
ନିର୍ବାଘଂ ଛିଦ୍ୟତେ ବନମ୍
ତସ୍ମାବ୍ ବ୍ୟାଘ୍ରୋବନଂ ରକ୍ଷ ଦ୍ ବନଂ ବ୍ୟାଘ୍ରମ୍ ।"

ଅର୍ଥାତ୍ ଜଙ୍ଗଲର ବ୍ୟତିରେକ ବ୍ୟାଘ୍ରର ମୃତ୍ୟୁ ଏବଂ ବ୍ୟାଘ୍ର ବ୍ୟତିରେକେ ଜଙ୍ଗଲ ଅସୁରକ୍ଷିତ।

◆




ପ୍ରକୃତି ବନ୍ଧୁ ସମ୍ମାନ ପ୍ରାପ୍ତିବେଳେ।



# ବଣର ରାଜା

ପ୍ରାଣୀ ଜଗତରେ ମାଂସାହାରୀ ପରିବାରର ଏକ ବୃହତ୍ତମ ସମାଜ ହେଲା ମାର୍ଜାର ସମାଜ। ବାଘ ମାର୍ଜାର ପରିବାର ଅନ୍ତର୍ଭୁକ୍ତ। ବାଘ ତାର ଶାରୀରିକ ଗଠନ, ଆଚାର ବ୍ୟବହାର, ଶୈଳୀ ତଥା ସର୍ବୋପରି ତାର ଚମତ୍କାର ବର୍ଣ୍ଣାଢ୍ୟ ଆଭା ନିମନ୍ତେ ମଣିଷ ମନରେ ସ୍ୱତନ୍ତ୍ର ଆକର୍ଷଣ ସୃଷ୍ଟି କରିଥାଏ। ତାର ସୌନ୍ଦର୍ଯ୍ୟ, ଠାଣି ଓ ରାଜକୀୟତା ପାଇଁ ଏହାକୁ ଭାରତ ସରକାର ଜାତୀୟ ପଶୁର ମାନ୍ୟତା ଦେଇଛନ୍ତି। ହିନ୍ଦୀରେ ବାଗ୍, ଶେର; ମଧ୍ୟଭାରତରେ ନହର, ଶେଲା ଭାଗା; ମରାଠୀରେ ୱାଗ୍; ବର୍ମିଜ୍‌ରେ ଚାର୍, ତାମିଲ୍ ଓ ତେଲୁଗୁରେ ପୋଲଇ, ମାଲାୟାଲମ୍‌ରେ କାଦ୍ୱା, କନ୍ନଡରେ ହୋଲି, ଇଂଲିଶରେ ଟାଇଗର ବୋଲି କୁହାଯାଉଥିବା ମହାବଳ ବାଘକୁ ପ୍ରାଣୀ ବିଜ୍ଞାନୀମାନେ ପାନ୍ଥେରା ଟାଇଗ୍ରିସ ଭାବେ ନାମିତ କରିଛନ୍ତି। ଏହି ଅଭିଜାତ ପଶୁଟି ମଣିଷ ସମାଜର ସାହିତ୍ୟ, ସଂସ୍କୃତି ଓ ଧର୍ମୀୟ ଚିନ୍ତାଧାରାରେ ସ୍ଥାନିତ। 'ଟାଇଗର ଟାଇଗର ବର୍ନିଂ ବ୍ରାଇଟ୍' ଇଂଲିସ୍ ଲୋକଗୀତର ଜନପ୍ରିୟତା ସମସ୍ତେ ଜାଣନ୍ତି।

ଆଜି ଅନେକ ଜୀବସମ୍ପଦ ପ୍ରକୃତି ଓ ପରିବେଶ ପରିବର୍ତ୍ତନର କୁପ୍ରଭାବରୁ ନିଶ୍ଚିହ୍ନ ହୋଇଗଲେଣି ଓ ଆଉ କେତେ ନିଶ୍ଚିହ୍ନର ଦ୍ୱାର ଦେଶରେ। ଜୀବବିଜ୍ଞାନୀଙ୍କ ମତରେ ଗତ ୪ ଶହ ବର୍ଷ ମଧ୍ୟରେ ପୃଥିବୀ ପୃଷ୍ଠରୁ ସବୁଦିନ ପାଇଁ ବିଲୁପ୍ତ ହୋଇଛନ୍ତି ୫୮ ପ୍ରକାରର ସ୍ତନ୍ୟପାୟୀ ଏବଂ ୧୧୫ ପ୍ରକାରର ପକ୍ଷୀଜାତୀୟ ପ୍ରାଣୀ। କିନ୍ତୁ ପୃଥିବୀରେ ମୋଟ କେତେ ପ୍ରକାର ଜୀବ ପ୍ରଜାତି ବାସ କରନ୍ତି ତାର ଠିକ୍ ଆକଳନ ହୋଇପାରି ନାହିଁ। ବିଜ୍ଞାନୀମାନେ ଜଣାଇଛନ୍ତି ଯେ ଏହି ସଂଖ୍ୟା ୩ରୁ ୩୦ ମିଲିଅନ ମଧ୍ୟରେ ସୀମିତ। ତେବେ ଏ ପର୍ଯ୍ୟନ୍ତ ମୋଟ ୧୮ ଲକ୍ଷ ଜୀବ ପ୍ରଜାତିକୁ ଚିହ୍ନିତ କରବା ସମ୍ଭବ ହୋଇଛି।

ଏଥିରୁ ସୂଚିତ ହେଉଛି ଯେ ମନୁଷ୍ୟ ସମାଜ ସହିତ ପରିଚିତ ହେବା ପୂର୍ବରୁ କେତେକ ଜୀବ ପ୍ରଜାତି ବିଲୁପ୍ତ ହୋଇ ସାରିଲେଣି। ଯଦି କୌଣସି ପ୍ରକାରର ପ୍ରଜାତିକୁ ଦେଖିବାକୁ ମିଳେ ନାହିଁ, ତେବେ ୫୦ ବର୍ଷ ପରେ ସରକାରୀ ଭାବେ ସେ ବିଲୁପ୍ତ ବୋଲି ଘୋଷିତ ହୋଇଥାଏ। ତେବେ ୧୯୯୦ ମସିହାରେ ପରିଚିତ ସ୍ତନ୍ୟପାୟୀ ମୋଟ ୧୨ ଭାଗ ଓ ପରିଚିତ ପକ୍ଷୀଜାତୀୟ ପ୍ରାଣୀମାନଙ୍କ ମଧ୍ୟରୁ ୧୧ ଭାଗ ବୋଲି ଘୋଷଣା କରାଯାଇଛି। ବାଘ ଆଜି ବିପନ୍ନ ପ୍ରାଣୀମାନଙ୍କ ମଧ୍ୟରେ ପରିଗଣିତ।

କିନ୍ତୁ ବାଘ ବିଭିନ୍ନ ଜଳବାୟୁ ସହ ଖାପଖୁଆଇ ଚଳିବାରେ ଅଭ୍ୟସ୍ତ। ସାଇବେରିଆର ବରଫାବୃତ୍ତ ଅଞ୍ଚଳ, ହିମାଳୟର ଉତ୍ତୁଙ୍ଗ ଶିଖର, ଇଣ୍ଡୋନେସିଆର ସନ୍ତସନ୍ତିଆ ଅନ୍ଧାରୁଆ ଜଙ୍ଗଲ ପ୍ରଭୃତି ବ୍ୟାଘ୍ରର ଆଦିମ ବାସସ୍ଥାନ। ବିଶ୍ୱରେ ଦେଖାଯାଉଥିବା ୮ ପ୍ରକାର ବାଘ ମଧ୍ୟରୁ ସର୍ବାପେକ୍ଷା କ୍ଷୁଦ୍ରତମ 'ବାଲିନିଜ୍' ବାଘ ୧୯୪୦ ମସିହାରୁ ସମ୍ପୂର୍ଣ୍ଣ ଭାବେ ଲୋପ ପାଇସାରିଲାଣି। କାସ୍ପିଆନ ବାଘର ସ୍ଥିତି ଏବେ ସନ୍ଦିହାନ ଘେରରେ। ୧୯୭୦ ମସିହା ପରେ ଏହା ଆଉ ଦେଖିବାକୁ ମିଳୁନାହିଁ। ସେହିପରି ଜାଭାନ ବାଘ ୧୯୮୦ରେ ଶେଷଥର ପାଇଁ ଦେଖାଯାଇଥିଲା। ସମ୍ପ୍ରତି ଜୀବିତ ବାଘ ଜାତି ମଧ୍ୟରେ ଦକ୍ଷିଣ ଚୀନା ବାଘ କ୍ଷୁଦ୍ରତମ। ଏମାନେ ମଧ୍ୟ ଲୋପ ପାଇବାକୁ ବସିଲେଣି। ଏମାନଙ୍କ ସଂଖ୍ୟା ୩୦ରୁ ୬୦ ଭିତରେ। ପୀତରଂଗା ସାଇବେରିଆନ ବାଘ 'ଆମୁର' ବିଶ୍ୱରେ ସର୍ବବୃହତ୍। ରୁଷିଆର ପୂର୍ବାଞ୍ଚଳରେ ବାସ କରୁଥିବା ଏହି ବାଘଙ୍କ ସଂଖ୍ୟା ୧୫୦ରୁ ୨୦୦ ମଧ୍ୟରେ ସୀମିତ। ଇଣ୍ଡୋଚିନ୍ ଅଞ୍ଚଳରେ (କାମ୍ବୋଡ଼ିଆ, ଭିଏତନାମ, ଲାଓସ, ତାଇୱାନ ପ୍ରଭୃତି)ରେ ଦେଖାଯାଉଥିବା ଇଣ୍ଡୋଚାଇନିଜ୍ ବାଘଙ୍କ ସଂଖ୍ୟା ୧୦୦୦ ଭିତରେ। ସେହିପରି ସୁମାତ୍ରିଆନ ବାଘ ସଂଖ୍ୟା ୫୦୦ ଭିତରେ। ଏମାନଙ୍କ ଦ୍ରୁତ ଅବକ୍ଷୟ ଘଟୁଛି।

ପ୍ରାୟ ୧୦୦ ବର୍ଷ ତଳେ ପୃଥିବୀରେ ବାଘ ସଂଖ୍ୟା ଏକ ଲକ୍ଷରୁ କିଛି ଅଧିକ ଥିଲା ବେଳେ ୨୦୦୬-୦୭ ବେଳକୁ ଏମାନଙ୍କ ସଂଖ୍ୟା ୭୪୩୬ରେ ପହଞ୍ଚିଥିଲା। ଏଣୁ ବିଶ୍ୱର କ୍ଷୟିଷ୍ଣୁ ବାଘ ଜାତିକୁ ଉଦ୍‌ବେଗଜନକ ପରିସ୍ଥିତିରୁ ଉଦ୍ଧାର କରିବାକୁ ଆନ୍ତର୍ଜାତିକ ସ୍ତରରେ ୨୯ ଜୁଲାଇ ୨୦୧୦ ସେଣ୍ଟପିଟ୍‌ସବର୍ଗ ସମ୍ମିଳନୀରେ ବାଘମାନଙ୍କ ସୁରକ୍ଷା ପାଇଁ ଏହି ଦିନକୁ ବିଶ୍ୱ ବ୍ୟାଘ୍ର ଦିବସ ରୂପେ ପାଳନ କରିବାକୁ ଆହ୍ୱାନ ଦିଆଯାଇଥିଲା। କିନ୍ତୁ ଏହା ପୂର୍ବରୁ ଇନ୍ଦିରା ଗାନ୍ଧୀଙ୍କ ଶାସନ କାଳରେ ୧୯୭୩ ମସିହାରେ ଆରମ୍ଭ କରାଯାଇଥିଲା ପ୍ରୋଜେକ୍ଟ ଟାଇଗର। ଏହି କାର୍ଯ୍ୟକ୍ରମର ଉଦ୍ଦେଶ୍ୟ ଥିଲା ବେଙ୍ଗଲ ଟାଇଗର ସଂଖ୍ୟା ସୁନିଶ୍ଚିତ କରିବା ଏବଂ ବାଘମାନଙ୍କ ଆବାସସ୍ଥଳୀ ଯେପରି ସଂକୁଚିତ ନ ହୁଏ, ସେଥିପ୍ରତି ଗୁରୁତ୍ୱ ଦେବା। ଆମ ଦେଶରେ ୧୯୭୩ ମସିହାରେ ପ୍ରୋଜେକ୍ଟ ଟାଇଗର ଏହି କାର୍ଯ୍ୟକ୍ରମର ଉଦ୍ଦେଶ୍ୟ ଥିଲା ଜଙ୍ଗଲ ଟାଇଗର ସଂଖ୍ୟା ସୁନିଶ୍ଚିତ କରିବା ଏବଂ ବାଘମାନଙ୍କ ଆବାସସ୍ଥଳୀ ଯେପରି ସଂକୁଚିତ ନ ହୁଏ, ସେଥିପ୍ରତି ଗୁରୁତ୍ୱ ଦେବା। ପ୍ରଥମ ଥର ଏହି ପ୍ରକଳ୍ପ ପାଲାମାଓ ଟାଇଗର ରିଜର୍ଭରେ ଆରମ୍ଭ କରାଯାଇଥିଲା। ଏହାର ପରିଚାଳନା ପାଇଁ ରହିଛି ଜାତୀୟ ବ୍ୟାଘ୍ର ସଂରକ୍ଷଣ ପ୍ରାଧିକରଣ। ଯାହାର ଅଧୁନା ବାସସ୍ଥଳୀ ଗୁଡ଼ିକ ହେଲା ଶିବାଲିକ୍-ତେରାଇ ସଂରକ୍ଷଣ, ଉତ୍ତରପୂର୍ବ ସଂରକ୍ଷଣ, ସୁନ୍ଦରବନ ସଂରକ୍ଷଣ, ପୂର୍ବଘାଟ ସଂରକ୍ଷଣ, କେନ୍ଦ୍ରୀୟ ଭାରତ ସଂରକ୍ଷଣ ଓ ସାରିସ୍କା ସଂରକ୍ଷଣ ୟୁନିଟ।

ତେବେ ୧୯୫୧ ମସିହାରେ ମଧ୍ୟପ୍ରଦେଶର ରେଓ୍ବା ଜଂଗଲରେ ପ୍ରଥମ ଥର ପାଇଁ ଆଶ୍ଚର୍ଯ୍ୟଜନକ ଭାବେ ଧଳାବାଘଟିଏ ନଜରକୁ ଆସିଥିଲା, ଯାହାକୁ ଆମ ଦେଶୀୟ ଭାଷାରେ ବିଲାତି ବାଘ ଆଖ୍ୟା ଦିଆଯାଇପାରେ । ଏହି ଧଳାବାଘ ଆବିର୍ଭାବରେ ପ୍ରାଣୀ ବିଶେଷଜ୍ଞଙ୍କ ଆଖି ଖୋସି ହୋଇଯାଇଥିଲା । ସେମାନଙ୍କ ଗବେଷଣା କକ୍ଷ ଚଳଚଞ୍ଚଳ ହୋଇଉଠିଥିଲା । ଏହା ଜଳବାୟୁ ପରିବର୍ତ୍ତନର ପ୍ରଭାବ ବୋଲି ମନେକରାଯାଉଥିଲା । କିନ୍ତୁ ଏହା ଅହେତୁକ ବୋଲି ଭାବି ନିଆଗଲା କାରଣ ପରବର୍ତ୍ତୀ ବାଘ ଶାବକମାନେ ପ୍ରଭାବିତ ହୋଇନଥିଲେ । ପୂର୍ବଭଳି ସେମାନଙ୍କ ରଙ୍ଗ ଅପରିବର୍ତ୍ତିତ ରହିଥିଲା । ତେବେ ସାଧାରଣ ବାଘ ପରି ଧଳାବାଘର ଗଠନ, ଆକାର, ଓଜନ ଓ ଜୀବନଶୈଳୀ ସମାନ, କେବଳ ପାର୍ଥକ୍ୟ ଚମଡ଼ାର ରଂଗରେ ଯାହା ତନ୍ତୁପେଶୀରେ ଜିନ୍‌ଗତ ପ୍ରଭାବ । ସାଧାରଣ ବାଘ ପରି ବୟସ୍କ ଧଳାବାଘର ହାରାହାରି ଲମ୍ବ ୨୬୫ ସେମି ଓ ଓଜନ ୧୬୦ କି.ଗ୍ରା. । ପରେ ବୟସ୍କା ଏହି ବାଘକୁ ସାଧାରଣ ପୁରୁଷ ବାଘ ସହିତ ସଂଗମ କରାଯାଇ ଅନେକ ଧଳା ଶାବକ ଉତ୍ପନ୍ନ କରାଗଲା, ଯଦ୍ୱାରା ନନ୍ଦନକାନନ ଚିଡ଼ିଆଖାନା ଧଳାବାଘର ଏକ୍ସୁଡ଼ିଶାଳ ବନିଗଲା । ପୃଥିବୀରେ ଧଳାବାଘ ଗଣନାରେ ଆମ ଓଡ଼ିଶାର ସ୍ଥାନ ଶୀର୍ଷରେ ।

ନନ୍ଦନକାନନ କାରାବନ୍ଧ ଧଳା ବା ବିଲାତି ବାଘ ଛଡ଼ା ଭାରତ ବା ପୃଥିବୀରେ ଅଭୟାରଣ୍ୟମାନଙ୍କରେ ସେମାନଙ୍କର ଆଉ ଦୃଷ୍ଟିଗୋଚର ହେଉନାହିଁ । କିନ୍ତୁ ପୀତଧର ଦେଶୀୟ ବାଘମାନଙ୍କୁ ଜଙ୍ଗଲରେ ଦେଖିବାକୁ ମିଳିଥାଏ । ତା'ର ସ୍ୱଭାବକୁ ଅନୁଧ୍ୟାନ କଲେ ଜଣାଯାଏ, ଆପଣ ଜଙ୍ଗଲରେ ଗଲାବେଳେ ଯଦି ବାଘଟିଏ ରାସ୍ତା ଉପରେ ବସିଥାଏ, ତା' ଉପରେ ଆପଣଙ୍କ ଜିପ୍, କାର୍ ବା ଭ୍ୟାନ୍ କିମ୍ବା ଭାରିଯାନର ଉଜ୍ଜ୍ୱଳ ଲାଇଟ ପଡ଼େ, ସେ ଅନ୍ୟ ଜନ୍ତୁଙ୍କ ପରି (କେବଳ ହାତୀଙ୍କୁ ଛଡ଼ି) ହଠାତ୍ ଛେଗୁଆଙ୍କ ପରି ଦୌଡ଼ି ପଳାଇ ଯାଏ ନାହିଁ । ଖୁବ୍ ବେପରବାୟ ଭାବେ କିଛି ସମୟ ଠୁଙ୍କା ମାରି ବସିରହେ । ଯାନର ପୁନଃ ପୁନଃ ଗର୍ଜନରେ ସେ ଆଦୌ ଡରି ଯାଏ ନାହିଁ । ତା'ପରେ ସେ ଧୀରେ ସୁସ୍ଥେ ରାସ୍ତାକଡ଼କୁ ଯାଇ ପୁନଶ୍ଚ ବସିରହେ ଏବଂ ଯାନ ତା'ପରେ ଅଗ୍ରସର ହଏ ଗନ୍ତବ୍ୟସ୍ଥଳକୁ । ବିନା କାରଣରେ ସେ ଯାନକୁ ଆକ୍ରମଣ କରେ ନାହିଁ । ସତୁରି ଦଶକରେ ରାୟଗଡ଼ା ଠାରୁ ଗୁଣୁପୁର ଏବଂ କଳାହାଣ୍ଡି ଥୁଆମୁଲରାମପୁର ଜଙ୍ଗଲ ରାସ୍ତାରେ ମୁଁ ବହୁବାର ବାଘକୁ ଭେଟିଛି । କିନ୍ତୁ ତାକୁ ଉତ୍ୟକ୍ତ କଲେ ବା ତା ଛୁଆଙ୍କର ଜୀବନ ପ୍ରତି ବିପଦ ଆସିଲେ, ଅଥବା ଖାଦ୍ୟାଭାବଜନିତ କ୍ଷୁଧା ଯୋଗୁଁ ତା ହିଂସାଚରଣ ବଢ଼ିଥାଏ ଏବଂ ପରିଶେଷରେ ଜନବସତିକୁ ଆକ୍ରମଣ କରିଥାଏ । ଗୃହପାଳିତ ପଶୁ ଓ ମଣିଷକୁ ମାରିଥାଏ ଯଦିଚ ମଣିଷ ତାର ପ୍ରାକୃତିକ ଖାଦ୍ୟ ନୁହେଁ । କିନ୍ତୁ ବାଘ ପରି ଚିତାବାଘ ମାର୍ଜାର ଶ୍ରେଣୀୟ ପଶୁ ହେଲେ ହେଁ ଜାତିରେ ସେ କନିଷ୍ଠ, ଡରକୁଳା, କିନ୍ତୁ ଦୁଷ୍ଟ, ଚୌରବୃତ୍ତିରେ ଜୀବ ପୋଷେ । ମହାବଳ ବାଘ ଦିନବେଳେ ସନ୍ନିକଟ ପଶୁଶାଳାରେ ପଶି ଶିକାର କରିବାକୁ ପସନ୍ଦ କରି ନ ଥାଏ । ଚିତାବାଘ ଦିନ ଓ ରାତିର ତଫାତ୍ ବୁଝି ନ ଥାଏ । ହାବୁଡ଼େ ଯିଏ ପଡ଼ିଲା ମାରି ପେଟପୂଜା କରିଥାଏ । କହନ୍ତି, ଦିନବେଳେ ବାଘ ସହିତ ବାଟୋଇର ମୁହାଁମୁହିଁ ହେଲେ ନିର୍ଭୀକ ବାଟୋଇ ଯଦି ସାହସର ସହିତ ନିଶ୍ଚଳ ଭାବେ ଛିଡ଼ାହୋଇ ତା ସହିତ ଆଖି ମିଳାଏ, ବାଘ ବାଟ କାଟି ପଳାଇଯାଏ ବାଘକୁ ଫାଘ ଭୟ ନ୍ୟାୟରେ । କିନ୍ତୁ ମୋର ଦୀର୍ଘ ଜଙ୍ଗଲ ପରିକ୍ରମା ସମୟରେ ଏପରି କୌଣସି ଘଟଣା ନଜରକୁ ଆସି ନାହିଁ ।

ମହାବଳୀ ଏହି ବାଘ ଚରିତ୍ରକୁ ଲକ୍ଷ୍ୟକଲେ ଜଣାପଡ଼େ ଯେ ସେ କେବଳ ସୌନ୍ଦର୍ଯ୍ୟର ପ୍ରତୀକ ନୁହେଁ, ସେ ମଧ୍ୟ ହିଂସ୍ରତାର ନିଦର୍ଶନ। ଯଦିଚ ତାର ଘ୍ରାଣଶକ୍ତି ଓ ଦୃଷ୍ଟିଶକ୍ତି ସେତେଟା ଭଲ ନୁହେଁ, ମାତ୍ର ଶ୍ରବଣ ଶକ୍ତି ଅତି ପ୍ରଖର, ତାର ମାଂସଳ ପାହୁଲ ଦ୍ୱାରା ନିଃଶବ୍ଦରେ ଶିକାର ପାଖକୁ ଯାଇପାରେ ଏବଂ ତତ୍‌କ୍ଷଣାତ୍ ଝାମ୍ପମାରେ। ଶିକାର ଯେତେ ବଡ଼ ହେଲେ ବି ସେ ଦାନ୍ତରେ କାମୁଡ଼ି ଝୁଲାଇ ବା ଘୋଷାଡ଼ି ନିଏ ଲତାବୁଦାକୁ ଓ ପେଟଭରି ଆହାର କରେ। ଖାଇସାରି ପାଖରେ କେଉଁଠି ଶୋଇଯାଏ। ବଣର ମେହେନ୍ତର ପଲ ଶୃଗାଳ, ଶାଗୁଣା, ଗଧିଆଙ୍କୁ ଘଉଡ଼ାଇ ଦିଏ। ଦୁଇଦିନ ପରେ ମାଂସ ପଚିଗଲେ ଥରକୁ ଥର ମଢ଼ ପାଖକୁ ଆସି ସେହି ମାଂସ ଖାଇଥାଏ। ମଣିଷ ବାଘର ପ୍ରାକୃତିକ ଖାଦ୍ୟ ନୁହେଁ। କ୍ରମବର୍ଦ୍ଧିଷ୍ଣୁ ଜଙ୍ଗଲ କ୍ଷୟ, ଖାଦ୍ୟାଭାବ, ବ୍ୟାଘାତ ଖାଦ୍ୟ ଶୃଙ୍ଖଳ, ପରିବେଶ ଅସନ୍ତୁଳନ ଓ ଅନ୍ୟାନ୍ୟ କାରଣରୁ ବାଘ ମଣିଷଖିଆ ପାଲଟିଥାଏ। ବାଘ ପାଇଁ ମଣିଷ ଏକ ସହଜଲବ୍ଧ ଶିକାର। ଥରେ ପାଟିରେ ଲାଗିଗଲେ, ବାରମ୍ବାର ମଣିଷ ମାଂସ ଆଶାରେ ଧାଇଁଥାଏ ମାରେ ଓ ଖାଏ। (ସୂଚନା : 'ଜଙ୍ଗଲର ଜମାନବନ୍ଦୀ' ପୃ-୯୭, ଓ୍ୱାଇଲଡ ମିରର୍, ପୃଷ୍ଠା-୨୦୮)

ବୃଦ୍ଧ ହୋଇଗଲେ ବା ରୁଗ୍ଣ ହୋଇଗଲେ ବା ଶିକାର କରିବାକୁ ଅକ୍ଷମ ହେଲେ ମାଛ, କଙ୍କଡ଼ା, ବେଙ୍ଗ, ଝିଣ୍ଟିକା ଖାଇ ଯଥାତଥା ଜୀବନ ବଞ୍ଚାଇଥାଏ, ବଞ୍ଚିଥାଏ ଖୁବ୍ ବେଶୀରେ ୧୯ ବା ୨୦ ବର୍ଷ ପର୍ଯ୍ୟନ୍ତ। ବାର୍ଦ୍ଧକ୍ୟ ଆରମ୍ଭ ହୁଏ ୧୬ ବର୍ଷରୁ।

ସେମାନଙ୍କ ଦାମ୍ପତ୍ୟ ଜୀବନ ମଧ୍ୟ ବିଚିତ୍ର। ସେମାନେ ପରିବାର ଧରି ସଂଘବଦ୍ଧ ଭାବେ ରହନ୍ତି ନାହିଁ। ଏକାକୀ ରହିବାକୁ ପସନ୍ଦ କରନ୍ତି। ସେମାନଙ୍କ ପ୍ରାୟ ସଂଗମ ଋତୁ ନ ଥାଏ। ଯୌନ ଉତ୍ତେଜିତ ଅବସ୍ଥାରେ ମାଈବାଘ ପୁରୁଷବାଘକୁ ଗ୍ରହଣ କରେ। ୧୦୫ରୁ ୧୦୯ ଦିନ ପର୍ଯ୍ୟନ୍ତ ଗର୍ଭାବସ୍ଥା ପରେ ବାଘୁଣୀ ଗୋଟିଏରୁ ପାଞ୍ଚ ପର୍ଯ୍ୟନ୍ତ ଛୁଆ ଜନ୍ମ କରିଥାଏ। ଛୁଆମାନଙ୍କ ଶିକାର କରିବା ଦକ୍ଷତା ଆସିଲେ, ମା'କୁ ଛାଡ଼ି ନିଜେ ନିଜେ ବଞ୍ଚନ୍ତି, ଭିନ୍ନ ଭିନ୍ନ ସଂସାର ଗଢ଼ନ୍ତି।

୧୦୦ ବର୍ଷ ପୂର୍ବେ ପୃଥିବୀର ବାଘ ସଂଖ୍ୟା ଏକ ଲକ୍ଷରୁ ଅଧିକ ଥିଲା। ଉନ୍ନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଭାରତରେ ପ୍ରାୟ ୪୦ହଜାର ବାଘ ଥିଲେ। ୨୦୦୬ ବେଳକୁ ଏମାନଙ୍କ ସଂଖ୍ୟା ୧୪୧୧ରେ, ୨୦୧୦ରେ ବାଘ ସଂଖ୍ୟା ୧୭୦୬ ଏବଂ ୨୦୧୪ରେ ଏହା ୨୨୨୬କୁ ବୃଦ୍ଧି ପାଇଲା ଯାହା ବିଶ୍ୱ ବାଘ ସଂଖ୍ୟାର ୭୦ ପ୍ରତିଶତ। ଅବଶ୍ୟ ପୃଥିବୀରେ ବାଘ ରହିଥିବା ୧୩ଟି ଦେଶରେ ଗତ ୫୦ ବର୍ଷ ମଧ୍ୟରେ ୯୭ ପ୍ରତିଶତ ହ୍ରାସ ପାଇଥିବା ବେଳେ ଭାରତରେ ୪ ବର୍ଷ ଭିତରେ ବାଘ ସଂଖ୍ୟା ୩୦ ପ୍ରତିଶତ ବୃଦ୍ଧି ପାଇଛି। ହାସ୍ୟାସ୍ପଦର ବିଷୟ ଯେ ପରିବେଶ, ଜଙ୍ଗଲ ଓ ଜଳବାୟୁ ପରିବେଶ ମନ୍ତ୍ରୀ ଉତ୍ସାହିତ ହୋଇ କହିପକାଇଥିଲେ ଯେ ଏଥର ବିଦେଶକୁ ବାଘ ରପ୍ତାନୀ ହୋଇପାରିବ। ତେବେ ଭାରତର ବାଘ ଗଣନା ୨୦୧୪ ଅନୁଯାୟୀ କର୍ଣ୍ଣାଟକରେ ୪୦୦, ଉତ୍ତରାଖଣ୍ଡରେ ୩୪୦, ମଧ୍ୟପ୍ରଦେଶରେ ୩୦୮, ତାମିଲନାଡୁରେ ୨୨୯, ଉତ୍ତରପୂର୍ବ ରାଜ୍ୟରେ ୨୦୧, ମହାରାଷ୍ଟ୍ରରେ ୧୯୦, କେରଳରେ ୧୩୦, ଉତ୍ତର ପ୍ରଦେଶରେ ୧୧୭, ସୁନ୍ଦରବନ ଅଞ୍ଚଳରେ ୭୬, ଆନ୍ଧ୍ର ଓ ତେଲେଙ୍ଗାନାରେ ୬୮, ଛତିଶଗଡ଼ରେ ୪୬, ରାଜସ୍ଥାନରେ ୪୫ଟି ବାଘ ଗଣନା

କରାଯାଇଥିବା ବେଳେ ଓଡ଼ିଶାରେ ୨୮, ବିହାରରେ ୨୮, ଗୋଆରେ ୫ଟି ଏବଂ ଝାଡ଼ଖଣ୍ଡରେ ୩ଟି ବାଘ ଥିବାର ଜଣାପଡ଼ିଥିଲା । ଆମ ଓଡ଼ିଶାରେ ମାତ୍ର ୨୮ ବାଘ ଥିବା ରିପୋର୍ଟକୁ ଗଣନାରେ ତ୍ରୁଟି ଦର୍ଶାଇ କ୍ୟାମେରା ଟ୍ରାପ୍ ମେଥଡ୍ ଯୋଗେ ପୁନଃଗଣନା କରାଯାଇ ୪୦ ବାଘ ଅଛନ୍ତି ବୋଲି ଦର୍ଶାଗଲା । ଆମ ରାଜ୍ୟରେ ବନ୍ୟପ୍ରାଣୀ ସୁରକ୍ଷା ପାଇଁ ୧୮ଟି ଅଭୟାରଣ୍ୟ ଓ ୨ଟି ଜାତୀୟ ଉଦ୍ୟାନ ରହିଛି । ଏଥିମଧ୍ୟରୁ ବାଘ ସୁରକ୍ଷା ପାଇଁ ୩ଟି ଅଭୟାରଣ୍ୟ ଯଥା ଶିମିଳିପାଳ, ସୁନାବେଡ଼ା ଓ ସାତକୋଶିଆ ଚିହ୍ନିତ ରହିଛି । ଶିମିଳିପାଳରେ ସର୍ବାଧିକ ୨୬ଟି ବାଘ ରହିଥିଲା ବେଳେ, କରଞ୍ଜିଆ ବନଖଣ୍ଡରେ ୩ଟି, କେନ୍ଦୁଝରରେ ୩ଟି, ସୁନାବେଡ଼ାରେ ୪ଟି, ସାତକୋଶିଆରେ ୨ଟି, ଖରିଆରରେ ୧ ଓ ସୁନ୍ଦରଗଡ଼ ବନଖଣ୍ଡରେ ଗୋଟିଏ ଅଛନ୍ତି । ତଥାପି ୨୦୦୬ ରିପୋର୍ଟ ଅନୁଯାୟୀ ଓଡ଼ିଶାରେ ବାଘ ସଂଖ୍ୟା ଥିଲା ୪୫ । ସରକାରଙ୍କ କ୍ୟାମେରା ଟ୍ରାପ୍ ମେଥଡ ଦ୍ୱାରା ପୁନଃଗଣନା ପ୍ରମାଣ କରେ କି ଓଡ଼ିଶାରେ ବାଘ ସଂଖ୍ୟା କମିବାରେ ଲାଗିଛି । ଖରିଆରରେ ୧ଟି, ଓ ସୁନ୍ଦରଗଡ଼ରେ ୧ଟି ବାଘର ଭବିଷ୍ୟତ କ'ଣ ? ସେଠାରେ ବାଘ ପାଇଁ ବିପରୀତ ଲିଙ୍ଗର ବାଘଟିଏ ନ ଛାଡ଼ିଲେ ବଂଶବୃଦ୍ଧି ଅସମ୍ଭବ । କିନ୍ତୁ ଆଶ୍ୱାସନାର ବିଷୟ ଯେ ଆମ ପ୍ରାଣୀ ଉଦ୍ୟାନ ନନ୍ଦନକାନନରେ ନିକଟ ଅତୀତରେ ବାଘୁଣୀ ସ୍ନେହା ଓ ବିଜୟା ଯଥାକ୍ରମେ ୩ଟି ଓ ୨ଟି (୫.୮.୧୬ ଓ ୯.୮.୧୬) ଶାବକ ପ୍ରସବ ପରେ ବାଘ ସଂଖ୍ୟା ୨୬କୁ ବୃଦ୍ଧି ପାଇଛି ।

ଦିନ ଥିଲା ବାଘ ଶିକାର ଏକ ସୌଖୀନ ରାଜକୀୟ କ୍ରୀଡ଼ାର ପ୍ରତୀକ ଭାବ ଧରାଯାଉଥିଲା । ଶିକାର ପାଗଳ ବ୍ରିଟିଶ ସାହେବମାନଙ୍କୁ ଭାରତୀୟ ରାଜାରାଜୁଡ଼ାମାନେ ଖୋରାକ ଯୋଗାଉଥିଲେ । ଶୁଣାଯାଏ ଲଣ୍ଡନ ମହାରାଣୀ ଭିକ୍ଟୋରିଆଙ୍କୁ ବାଘ ମରାଯାଇ ବର୍ଣ୍ଣାଢ୍ୟ ଉପହାର ଦିଆଯାଇଥିଲା । ଉଦୟପୁର ମହାରାଜା ଏକ ହଜାର ବାଘ ଶିକାର କରିଥିଲେ । ଶିକାରୀ କର୍ଣ୍ଣେଲ ସିଂ ତାଙ୍କ ଜୀବନ କାଳରେ ବାଘ ଶିକାରରେ ସେଞ୍ଚୁରି ଟପିଥିଲେ ବୋଲି ବାହାସ୍ଫୋଟ ମାରନ୍ତି । ବିଂଶ ଶତାବ୍ଦୀର ସର୍ବଶ୍ରେଷ୍ଠ ବାଘ ଶିକାରୀ କର୍ଣ୍ଣେଲ ଜିମ୍ କରବେଟ ଏକ ଡଜନରୁ ଊର୍ଦ୍ଧ୍ୱ ନରମାଂସଭକ୍ଷୀ ବାଘ ଶିକାର କରିଥିବା ଜଣାଯାଏ । ହିମାଳୟର କୁମାୟୁଁ ଅଞ୍ଚଳରେ ଆତଙ୍କ ସୃଷ୍ଟିକାରୀ ନରଖାଦକ ବ୍ୟାଘ୍ରମାନଙ୍କୁ ନିଧନ କରିବାରେ କରବେଟ ସାହେବଙ୍କ ଅବଦାନ ରହିଛି । କିନ୍ତୁ ସୌଖୀନରେ ସେ ବାଘ ଶିକାର କରୁ ନ ଥିଲେ । ବନବାସୀ ନିରୀହ ନିଃସହାୟ ଲୋକମାନଙ୍କ ଓ ଗୃହପାଳିତ ପଶୁମାନଙ୍କ ଜୀବନରକ୍ଷା ପାଇଁ ସେ ବନ୍ଧୁକଚାଳନା କରୁଥିଲେ । କୁହାଯାଏ ସେ ଚମ୍ପାୱତ୍‌ର ବାଘୁଣୀକୁ ନିଧନ କରିବା ବେଳକୁ ଏହା ୪୮୩ ଜଣ ମଣିଷ ଶିକାର କରି ସାରିଥିଲା । ଭାରତର ସୁନ୍ଦରବନ ଅଞ୍ଚଳରେ ଦେଖାଯାଉଥିବା ମହାବଳ ବାଘ ସର୍ବାପେକ୍ଷା ହିଂସ୍ର ଓ ନରମାଂସାହାରୀ ଭାବେ କୁଖ୍ୟାତ । ସୁନ୍ଦରବନସ୍ଥିତ ଆରାମପୁର ଗ୍ରାମର ଅଧିକାଂଶ ପୁରୁଷ ବାଘ କବଳରେ ମୃତ୍ୟୁବରଣ କଲାପରେ, ଏହାର ନାମ ସ୍ଥାନୀୟ ବାସିନ୍ଦାଙ୍କ ମୁଖରେ 'ବିଧବାପୁର' ହୋଇଛି ।

ଆଜି ବାଘ ଆଉ ନରଖାଦକ ହୋଇ ରହିନାହିଁ । ନର ବ୍ୟାଘ୍ରଖାଦକ ହୋଇଯାଇଛି । ଦୀର୍ଘଦିନରୁ ଭାରତରୁ ବ୍ୟାଘ୍ରର ଅସ୍ଥି, ଛାଲ, ହାତୀଦାନ୍ତ, ସମ୍ବର ଶିଙ୍ଗ ଆଦି ବିଦେଶକୁ ଚୋରାଚାଲାଣ ହେଉଛି । ଉତ୍ତର ଆମେରିକା, ଚୀନ୍, ଜାପାନ, ହଂକଂ ଓ କୋରିଆ ପ୍ରଭୃତି ଦେଶରେ ବ୍ୟାଘ୍ର ହାଡ଼ ଓ ରକ୍ତରୁ ତିଆରି ଔଷଧ ବହୁଳ ଭାବେ ବ୍ୟବହୃତ ହୁଏ । ଅତୀତରେ ଏଇ ଦଶନ୍ଧି ପୂର୍ବରୁ ଚାଇନାରେ ୧୫୦୭୯

କାର୍ଟୁନ ଔଷଧ, ୫୨୫୦ ଗ୍ରାମ୍ ତରଳ ଔଷଧ, ୩୧,୫୦୦ ବୋତଲ ବ୍ୟାଘ୍ର କିନ୍‌ରୁ ଉତ୍ପନ୍ନ ମଦ ବିଭିନ୍ନ ସ୍ଥାନକୁ ଚୋରାରେ ରପ୍ତାନି କରାଯାଇଥିବା ଚାଇନା ସରକାର ସ୍ୱୀକାର କରିଛନ୍ତି। ସମଗ୍ର ଚାଇନାରେ ଆୟୁର୍ବେଦ ପ୍ରତି ଯଥେଷ୍ଟ ଆଦର ରହିଛି। ତାଇୱାନ ବଜାରରେ ବ୍ୟାଘ୍ର ଅସ୍ଥିରୁ ପ୍ରସ୍ତୁତ ମଦ୍ୟ 'ଟାଇଗର ୱାଇନ୍' ଖୁବ୍ ଦାମୀ ଓ ଲୋକପ୍ରିୟ ଯାହା ଧନିକ ଶ୍ରେଣୀୟ ବ୍ୟକ୍ତି ବ୍ୟବହାର କରିଥାନ୍ତି। ଏକ ଲକ୍ଷ ବୋତଲ ଟାଇଗର ୱାଇନ୍ ପ୍ରସ୍ତୁତ କରିବା ପାଇଁ ପ୍ରାୟ ଅଧ ଟନ୍ ବ୍ୟାଘ୍ର ହାଡ଼ ଆବଶ୍ୟକ ହୋଇଥାଏ। ଏହି ପରିମାଣର ଅସ୍ଥି ପାଇଁ ୧୫୦ଟି ବାଘ ହତ୍ୟା କରାଯାଇଥାଏ। ପୁନଶ୍ଚ ତାଇୱାନ୍ ଭୋଜନାଳୟଗୁଡ଼ିକରେ ଉଭୟ ଦେଶୀ ଓ ବିଦେଶୀ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବା ପାଇଁ ବ୍ୟାଘ୍ର ଯୌନାଙ୍ଗରୁ ପ୍ରସ୍ତୁତ ଏକ ଜାତୀୟ ସୁପ୍ ପରିବେଷଣ କରାଯାଇଥାଏ। ସେଥିରେ ଯୌନ ଉଦ୍ଦୀପନା ବୃଦ୍ଧିକାରୀ ଶକ୍ତିଥିବାର ଅନେକ ବିଶ୍ୱାସ କରନ୍ତି। ଏହି ସୁପ୍ ଏକ କପ୍‌ର ମୂଲ୍ୟ ପ୍ରାୟ ୪୦୦ ଆମେରିକୀୟ ଡଲାର। ତାଇୱାନ୍‌ର ରାସ୍ତାକଡ଼ରେ ସ୍ପଷ୍ଟ ଦିବାଲୋକରେ ବାଘର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ଓ ଛାଲ ବିକ୍ରି ହେଉଥିବାର ଦେଖାଯାଏ। ଆନ୍ତର୍ଜାତିକ ବଜାରରେ ଗୋଟିଏ ବାଘଛାଲର ମୂଲ୍ୟ ୬୦୦୦ ଡଲାରରୁ ଅଧିକ ଓ ଏକ କିଲୋଗ୍ରାମ ବାଘ ହାଡ଼ର ମୂଲ୍ୟ ୧୫୦୦ ଡଲାର।

ଭାରତରେ ବନ୍ୟଜନ୍ତୁ ଶିକାର ନିଷେଧ ଆଇନ ଯେତେ କଡ଼ାକଡ଼ି ହେଲେ ମଧ ଶିକାର ନିରାଧ କରାଯାଇ ପାରି ନାହିଁ। ଅଗନା ଅଗନି ବନସ୍ତରେ ବାସ କରୁଥିବା ବନବାସୀମାନେ ଲୋଭମୁକ୍ତ ହୋଇ ପାରି ନାହାନ୍ତି। ବନ୍ଧୁକ ବଦଳରେ ଏନଡ୍ରିନ୍ ବିଷ ଦେଇ ଜନ୍ତୁ ଶିକାର କରୁଛନ୍ତି। ଏଇ ମାତ୍ର ତା ୫.୯.୨୦୧୬ରେ ମାଲକାନଗିରି ମାଥିଲି ବନାଞ୍ଚଳରେ ବନ କର୍ମଚାରୀ ମିଛ ବ୍ୟବସାୟୀ ସାଜି ୨ଟି ବାଘ ଚମଡ଼ା ଜବତ କରିଛନ୍ତି ଯାହା ଏକ ଦୃଷ୍ଟାନ୍ତ। ଜଙ୍ଗଲ ବିଭାଗ ପାଖରେ ବେଆଇନ ଶିକାରୀମାନଙ୍କୁ ପ୍ରତିରୋଧ କରିବା ପାଇଁ ଯଥେଷ୍ଟ ଅସ୍ତ୍ରଶସ୍ତ୍ର ଓ କର୍ମଚାରୀ ନ ଥିବା ଅଭିଯୋଗ ହେଉଛି। ଦେଶର ଜଙ୍ଗଲ ବିଭାଗର ସ୍ୱତନ୍ତ୍ର ଗୋଇନ୍ଦା ବ୍ୟବସ୍ଥା ଆଦୌ ନାହିଁ କହିଲେ ଚଳେ। ଚୋରା ବେପାରୀ, ଚୋରା ଶିକାରୀ, ମାଫିଆ, ଚୋରା ଚାଲାଣକାରୀଙ୍କୁ ଧରାଇ ଦେବା ପାଇଁ ଜନସାଧାରଣଙ୍କୁ ଆର୍ଥିକ ପୁରସ୍କାର ଆକାରରେ ପ୍ରୋତ୍ସାହନ ଦେବା ଆବଶ୍ୟକ ପଡୁଛି। ପୁନଶ୍ଚ ବନ୍ୟପ୍ରାଣୀ ସୁରକ୍ଷା ଆଇନରେ ଅପରାଧୀଙ୍କ ପାଇଁ କଠୋରତମ ବ୍ୟବସ୍ଥା ନାହିଁ। ବ୍ୟାଘ୍ର ଓ ଅନ୍ୟାନ୍ୟ ବନ୍ୟଜନ୍ତୁର ଅଙ୍ଗପ୍ରତ୍ୟଙ୍ଗ ଚୋରାଚାଲାଣରେ କୁଖ୍ୟାତି ଅର୍ଜନ କରିଥିବା ନୂଆଦିଲ୍ଲୀର ବ୍ୟବସାୟୀ ସଂସାର ଚାନ୍ଦଙ୍କ ନାମରେ ସମ୍ପ୍ରତି ୪୦ରୁ ଊର୍ଦ୍ଧ୍ୱ ମକଦ୍ଦମା ବିଚାରାଧୀନ ଥିବା ବେଳେ ସେ ଜାମିନ ପାଇ ଆରାମରେ ଜୀବନଯାପନ କରୁଛନ୍ତି (ବର୍ତ୍ତମାନ ସ୍ଥିତି ଅଜଣା)। କୁଖ୍ୟାତ ଚନ୍ଦନକାଠ ବେପାରୀ ଓ ହାତୀ ଶିକାରୀ ବୀରାପ୍ପାନଙ୍କୁ ଦଣ୍ଡିତ କରିବାରେ ସରକାର ଦଶନ୍ଧିକାଳ ଫୌଜ ଧରି ନାକରେ ପାଣି ପିଇଥିଲେ।

ଏହି ସଙ୍କଟଜନକ ପରିସ୍ଥିତିରେ ପୃଥିବୀର ଜୀବବିଜ୍ଞାନବିତ୍‌ମାନେ ଅଣ୍ଟାଭିଡ଼ିଛନ୍ତି ଏବଂ ସଫଳତା ହାସଲ କରିଛନ୍ତି। ପ୍ରଥମେ କୁକୁର ଜାତୀୟ ପଶୁମାନଙ୍କ ମଧ୍ୟରେ ସଙ୍କରୀକରଣ ପଦ୍ଧତିରେ ସଫଳତା ପରେ ଉତ୍ସାହିତ ହୋଇ ବିରାଡ଼ି ଜାତୀୟ ପଶୁ (ବାଘ ଓ ସିଂହ) ମଧ୍ୟରେ ସଂକରୀକରଣ ପଦ୍ଧତି ପ୍ରୟୋଗ

କରି 'ଟାଇଗନ' ସୃଷ୍ଟି କଲେ। ତା'ପରେ ସେମାନେ ପଛକୁ ଫେରି ନାହାନ୍ତି। ନିମ୍ନରେ ପ୍ରଦତ୍ତ 'ବାଘ, ସିଂହ, ଜାଗୁଆର, ଚିତାବାଘ ମଧ୍ୟରେ ମିଳନ କରାଇ ଉତ୍ପନ୍ନ ଶାବକମାନଙ୍କ ନାମକରଣ କରିଛନ୍ତି-

ପୁରୁଷ ଜାଗୁଆର + ଚିତାବାଘୁଣୀ = ଜାଗୁପାର୍ଡ

ପୁରୁଷ ଜାଗୁଆର + ସିଂହୀ = ଜାଗ୍‌ଲିଅନ

ପୁରୁଷ ଜାଗୁଆର + ବାଘୁଣୀ = ଜ୍ୟାଗର୍

ଚିତାବାଘ + ସିଂହୀ = ଲିପାର୍ଡ

ଚିତାବାଘ + ବାଘୁଣୀ = ଲିଓଗର

ବାଘ + ସ୍ତ୍ରୀ ଜାଗୁଆର = ଟାଗୁଆର

ସିଂହ + ବାଘୁଣୀ = ଲାଇଗର

ଚିତାବାଘ + ଜାଗୁଆର = ଲ୍ୟାପ୍‌ଜାଗ୍

ଲାଇଗର + ସିଂହ = ଲିଲିଗର

ଆନନ୍ଦର କଥା ସଂକରିତ ଲାଇଗର ସହିତ ସିଂହର ମିଳନ କରାଯାଇ ଲିଲିଗର ଜନ୍ମଲାଭ କରିଛି ଯିଏକି ବିରାଡ଼ି ପ୍ରଜାତି ପରିବାରରେ ସବୁଠୁଁ ବଡ଼ ବୋଲି ଗିନିଜ ବୁକ୍‌ରେ ସ୍ଥାନ ପାଇଛି ଏବଂ ନୂତନ ଜୀବଟି ଅତ୍ୟନ୍ତ ଶାନ୍ତ ଏବଂ ଦୁଗ୍ଧପ୍ରେମୀ। ଏହାର ନାମ ହରକ୍ୟୁଲେସ୍ ରଖାଯାଇଛି।

ଉଲ୍ଲେଖଯୋଗ୍ୟ ଯେ ଜୀବ ଜଗତର ବିଲୁପ୍ତ ପ୍ରାଣୀମାନଙ୍କ ସଂରକ୍ଷଣ ଓ ଅଭିବୃଦ୍ଧି ପାଇଁ ଯୁକ୍ତରାଷ୍ଟ୍ର ଆମେରିକାର ଦକ୍ଷିଣ କାରୋଲିନାସ୍ଥ ମାଟ୍ରିଲ ବେଳାଭୂମିରେ ଅନ୍ତର୍ଜାତିକ ଟାଇଗର୍ସ ଅନୁଷ୍ଠାନ (TIGERS - ଦ ଇନଷ୍ଟିଚ୍ୟୁଟ ଅଫ ଗ୍ରେଟ୍‌ଲି ଏନଡେନଞ୍ଜରଡ ରେୟାର ସ୍ପିସିଜ୍) କ୍ରସ୍‌ବ୍ରିଡିଂ ମାଧ୍ୟମରେ ମହନୀୟ ସାଫଲ୍ୟ ହାସଲ କରିଚାଲିଛନ୍ତି ଯାହା ଆଶ୍ୱାସନାର ବିଷୟ।





# ବନସ୍ତର ସମ୍ରାଟ

ସ୍ଥଳଭାଗରେ ସ୍ଥୂଳତନୁଧାରୀ ସର୍ବବୃହତ୍ ପ୍ରାଣୀ ହୋଇଛି ହାତୀ । ସଂସ୍କୃତରେ ଏହାକୁ ହସ୍ତୀ ଓଡ଼ିଆରେ ହସ୍ତୀ, ହାତୀ, ଗଜ, ସାରଙ୍ଗ, କୁଞ୍ଜର ଆଦି ନାମକରଣ କରାଯାଇଛି । ବଙ୍ଗଳାରେ ଏହାକୁ ମଧ୍ୟ ହାତୀ ବୋଲାଯାଏ। ହାତୀମାନେ ବରଫାବୃତ୍ତ ଦେଶମାନଙ୍କରେ ଦୃଶ୍ୟ ହୁଅନ୍ତି ନାହିଁ। ସେମାନଙ୍କ ବାସସ୍ଥଳୀ ହେଉଛି ଗ୍ରୀଷ୍ମମଣ୍ଡଳୀୟ ନାତିଶୀତୋଷ୍ଣ ଜଳବାୟୁ ଅଞ୍ଚଳ। ମୁଖ୍ୟତଃ ଦକ୍ଷିଣ ଆଫ୍ରିକା, ଏସିଆ ମହାଦେଶର ଭାରତ, ଶ୍ରୀଲଙ୍କା, ବଙ୍ଗଳାଦେଶ, ବର୍ମାଦେଶ, ଥାଇଲାଣ୍ଡ, ମାଲେସିଆ, ସୁମାତ୍ରାରେ ହାତୀସମାଜ ପ୍ରାଗୈତିହାସିକ କାଳରୁ ଗଢ଼ିଉଠିଛି । ହାତୀକୁ ବନସ୍ତର ସମ୍ରାଟ ବୋଲି ବିବେଚନା କରାଯାଏ ।

ଆଫ୍ରିକୀୟ ହାତୀମାନେ ଅପେକ୍ଷାକୃତ ବଡ଼ ଓ ସେମାନଙ୍କ ଦାନ୍ତ ମଧ୍ୟ। ସେମାନଙ୍କ ହାରାହାରି ଉଚ୍ଚତା ୧୦ ଫୁଟ, ଓଜନ ୪୦ କ୍ୱିଣ୍ଟାଲ କିନ୍ତୁ ବିରଳ କ୍ଷେତ୍ରରେ ବ୍ୟତିକ୍ରମ ଦେଖାଯାଏ । (ସୂଚନା- ପୃଷ୍ଠା ୨୬୩, 'ମିଷ୍ଟର ଖରସେଲ', ଉଚ୍ଚତା ୧୩ ଫୁଟ ଓଜନ ୧୧୧ ପାଉଣ୍ଡ ବା ୪୯ କ୍ୱିଣ୍ଟାଲ ୯୫୦ ଗ୍ରା. ଓ୍ୱାର୍ଲ୍ଡ ମିରର୍, ପୃଷ୍ଠା-୩୩୫) ଏହା ଶରୀରର ବିପୁଳତା ଓ ଦୈହିକ ଶକ୍ତିକୁ ଉଭିକରି ହାତୀ 'ଜଙ୍ଗଲ ସମ୍ରାଟ' ବୋଲି ପଦବାଚ୍ୟ।

ହାତୀର ରଙ୍ଗ ଫିକା କଳା, ମୁଣ୍ଡର କପାଳରେ ଛଉଛଉ ଭଳି ଫିକା ଗୋଲାପୀ ଫୁଲର ଦାଗ (ସବୁ କ୍ଷେତ୍ରରେ ନୁହେଁ)। ଥାଇଲାଣ୍ଡରେ କ୍ୱଚିତ ଧଳାହାତୀ ଦେଖାଯାଆନ୍ତି ।

ହାତୀ ଶରୀର ଗଠନର ବୈଚିତ୍ର୍ୟ ହେଉଛି, ସେମାନଙ୍କ ମୁଣ୍ଡଟି ବଡ଼, ବେକ ପ୍ରାୟତଃ ନାହିଁ। ମୁଣ୍ଡ ଶରୀର ସହିତ ପ୍ରାୟତଃ ଲାଗିଯାଇଛି । ଗୋଡ଼ର ଆକାର ମଧ୍ୟମ ନଡ଼ିଆ ଗଛର ମୋଟେଇ,

ସେଥିରେ ଶତ୍ରୁକୁ ଦଳି ଦେବାର ଅପୂର୍ବ ଶକ୍ତି । ହାତୀର ପ୍ରଧାନ ଅଙ୍ଗ ହେଉଛି ଶୁଣ୍ଢ ଯାହାକି ତାର ଉପର ଓଠର ସଂପ୍ରସାରଣ । ବିବର୍ତ୍ତନବାଦ ଓ କ୍ରମବିକାଶ ପ୍ରକ୍ରିୟାରେ ପ୍ରାୟ ୧୭ ଲକ୍ଷ ବର୍ଷ ପୂର୍ବେ ତା' ପୂର୍ବ ପୁରୁଷମାନଙ୍କ ଠାରେ ଥିବା ଘୁଷୁରି ଥୋବଣି ବଢ଼ି ବଢ଼ି କ୍ରମଶଃ ଜିନିଷ ଧରିଲା ଭଳି ଏକ ଲମ୍ୱା ଶୁଣ୍ଢରେ ପରିଣତ ହୋଇଛି । ଏହା କେବଳ ଭୂମି ସ୍ପର୍ଶ କରେନାହିଁ, ତା' ପଛ ଆଡ଼କୁ ଆଗ ଆଡ଼କୁ, ଦୁଇ ପାଖକୁ ଓ ଉପର ଆଡ଼କୁ ନେଇଥାଏ । ଶୁଣ୍ଢଦ୍ୱାରା ସେ ଅନେକ କାମ କରିଥାଏ । ବଡ଼ ବଡ଼ ଗଛଡ଼ାଳରୁ ଡ଼ାଳ ଛିଣ୍ଡାଇ ଖାଇପାରେ (ଶାକାହାରୀ ଜୀବ), ଶୁଣ୍ଢରେ ପାଣି ଟାଣି ପାଟି ଭିତରକୁ ଓଜାଡ଼ି ଦିଏ, ପାଟିକୁ ଖାଦ୍ୟ ନେବା ଲାଗି ହାତଭଳି ଶୁଣ୍ଢକୁ ବ୍ୟବହାର କରେ । ଶୁଣ୍ଢଟି ହାତୀର ପଞ୍ଚମ ଗୋଡ଼ ସଦୃଶ୍ୟ ବା ଏକ ଶକ୍ତିଶାଳୀ ହାତ । ବେଦରେ ହାତୀକୁ 'ହସ୍ତୀ' ଅର୍ଥାତ୍ ହସ୍ତଯୁକ୍ତ ଏକ ବିଶାଳ ପଶୁ ବୋଲି ବର୍ଣ୍ଣିତ (ସୂଚନା-ପୃଷ୍ଠା ୨୩୭ ମିଷ୍ଟର ଖରସେଲ୍ ) । ଶୁଣ୍ଢ ରୂପକ ହସ୍ତ ଦ୍ୱାରା ସେ ୫୦୦ କି.ଗ୍ରା ଓଜନର ଜିନିଷ ଅକ୍ଳେଶରେ ଉଠାଇପାରେ । ଅତି ଓଜନିଆ କାଠକୁ ତା' ଶୁଣ୍ଢ ସାହାଯ୍ୟରେ ଦୀର୍ଘ ଦୁଇ ଦାନ୍ତ ଉପରେ ସ୍ଥିରରଖି ତାକୁ ଶୁଣ୍ଢଦ୍ୱାରା ଜାବୁଡ଼ି ଧରିନିଏ ।

ନାକ ପୁଡ଼ାଟି ତାର ଘ୍ରାଣେନ୍ଦ୍ରିୟ । ଅନ୍ଧାରରେ ବା ଆଖିବୁଜି ସେ ଜିନିଷକୁ ଚିହ୍ନି ପାରେ ନାକ ପୁଡ଼ାରେ ସ୍ପର୍ଶକରି ଠିକ୍ ଯେମିତି ଜଣେ ଅନ୍ଧଲୋକ ତା' ହାତର ଯଷ୍ଟି ଛୁଆଇଁ ଦ୍ରବ୍ୟ ଜାଣିପାରେ (ସୂଚନା: ପୃଷ୍ଠା-୨୩୭ 'ମିଷ୍ଟର ଖରସେଲ୍') ।

ହାତୀର ଶକ୍ତିଶାଳୀ ପ୍ରାଣ ଶକ୍ତିକୁ ନେଇ ବୈଜ୍ଞାନିକମାନେ ନୂତନ ତଥ୍ୟ ହାସଲ କଲେଣି । ସାଧାରଣତଃ ପୋଲିସ ତଥା ସୁରକ୍ଷାବାହିନୀ ବିସ୍ଫୋରକ ସଂପର୍କରେ ଅନୁସନ୍ଧାନ କରିବା ଲାଗି କୁକୁର ବ୍ୟବହାର କରିଥାନ୍ତି । ଏବେ ହାତୀମାନଙ୍କୁ ଏହି କାର୍ଯ୍ୟରେ ସମ୍ଭବ ବୋଲି ସ୍ପଷ୍ଟ ଭାବେ ଜଣାପଡ଼ିଲାଣି । ଦକ୍ଷିଣ ଆଫ୍ରିକା ହାତୀମାନଙ୍କୁ ବିସ୍ଫୋରକ ଚିହ୍ନିବା ଲାଗି ପ୍ରଶିକ୍ଷଣ ଦିଆଯାଉଛି । କୁକୁରଙ୍କ ଭଳି ହାତୀଙ୍କ ଚମତ୍କାର ଆଘ୍ରାଣ କ୍ଷମତା ରହିଛି । 'ଚିଶୁ' ନାମକ ୧୭ ବର୍ଷୀୟ ଆଫ୍ରିକୀୟ ହାତୀକୁ କିଛି ବାସନ ଶୁଙ୍ଘିବାକୁ ଦିଆଯାଇଥିଲା । ସେଥି ମଧ୍ୟରୁ ଗୋଟିଏ ବାସନ ତଳେ ଟି.ଏନ୍.ଟି. ଗନ୍ଧଥିବା ଏକ ପଟି ଲଗାଯାଇ ଘୋଡ଼େଇ ଦିଆଯାଇଥିଲା । 'ଚିଶୁ' ସଫଳତାର ସହ ବିସ୍ଫୋରକ ଲାଗିଥିବା ବାସନକୁ ଚିହ୍ନିଥିଲା ଏବଂ ବାସନ ନିକଟରେ ପହଞ୍ଚିବା ପରେ ସେ ନିଜର ଆଗ ପଟ ଗୋଡ଼ ଉଠାଇ ତିନି ଗୋଡ଼ରେ ଠିଆହୋଇ ରହିଲା । ଏହା ପୁନଃ ପୁନଃ ପରୀକ୍ଷା କରାଯାଇଥିଲା ଏବଂ ଜଣା ପଡ଼ିଲା ଯେ ତାର ଘ୍ରାଣ ଶକ୍ତି ପ୍ରବଳ, ସୂକ୍ଷ୍ମ ଓ ତୀକ୍ଷ୍ଣ । କୁକୁର ଭଳି ବା ତା'ଠୁ ଅଧିକ ମାତ୍ରାରେ ଅନୁସନ୍ଧାନ କାର୍ଯ୍ୟରେ ନିଶ୍ଚିତ ଭାବେ ବ୍ୟବହାର କରାଯାଇ ପାରିବ । ଏକଥା ମଧ୍ୟ ପ୍ରମାଣିତ ଯେ କୁକୁରକୁ ଲଗାତାର ପ୍ରଶିକ୍ଷଣ ଆବଶ୍ୟାକ ପଡ଼ିଥାଏ, କିନ୍ତୁ ହାତୀକୁ ଥରେ ପ୍ରଶିକ୍ଷଣ ଯେଥେଷ୍ଟ । ଯାହାକୁ ସେ ଥରେ ଶୁଙ୍ଘିଦିଏ ଜୀବନ ସାରା ମନେ ରଖିଥାଏ । (ସୂଚନା: ପୃ-୨୦୮ 'ମିଷ୍ଟର ଖରସେଲ୍' ) ।

ହାତୀ ଭିତରେ ରହିଛି ମଣିଷ ଭଳି ଆବେଗ, ଆଚରଣ, ପ୍ରବୃତ୍ତି ଆଉ ପ୍ରେମ । ସେ ମଧ୍ୟ ଆପାତ୍ କାଳରେ ଲୋଡିଥାଏ ମନୁଷ୍ୟର ସାହାଯ୍ୟ । ତା'ଭିତରେ ଅଛି ବିଦ୍ରୋହ ଓ ବିପ୍ଳବର ଶକ୍ତି, ପ୍ରତିକ୍ରିୟାଶୀଳତା

ଓ ପ୍ରତିଶୋଧ ପରାୟଣତା (ସୂଚନା:ପୃଷ୍ଠା-୨୧୧, ମିଷ୍ଟର ଖରସେଲ) ହାତୀର ସର୍ବୋତ୍କୃଷ୍ଟ ଗୁଣ ହେଉଛି ତା'ର ଭବିଷ୍ୟବାଣୀ କ୍ଷମତା। ଭୂମିକମ୍ପ, ସୁନାମି, ବାତ୍ୟା, ଝଡ଼ ତୋଫାନ, ହୁଡ୍ ହୁଡ୍ ପ୍ରଳୟଙ୍କରୀ ପ୍ରାକୃତିକ ବିପର୍ଯ୍ୟୟ ପୂର୍ବରୁ ବିପଦ ସଙ୍କେତ ଦେଇପାରେ । ଏକ ଅସ୍ୱାଭାବିକ ଗର୍ଜନ ଦ୍ୱାରା ଶୁଣ୍ଢକୁ ସିଧା ଆକାଶ ଆଡ଼କୁ ଲମ୍ବାଇ ତିନି ଗୋଡ଼ରେ ଠିଆ ହୋଇଯାଏ । ତା'ର ଏହି ବିରଳ ଶୁଣ୍ଢକୁ ମଣିଷର ବୁଝିବାର ଶକ୍ତିଥିବା ଦରକାର । ( ସୂଚନା: ପୃ -୧୭୩,୨୨୨ 'ମିଷ୍ଟର ଖରସେଲ'; ପୃଷ୍ଠା-୨୯୧,୩୪୮ ଓ୍ୱାଇଲଡ ମିରର)

ହାତୀର ସବୁଠୁଁ ବଳିଷ୍ଠ ଅଙ୍ଗ ହେଉଛି ତା'ଶୁଭ୍ର ଦାନ୍ତ ଯେଉଁଠି ମୁଣ୍ଡ ପାଖରେ ଶୁଣ୍ଢ ମିଶିଛି, ଶୁଣ୍ଢର ଦୁଇ କଡ଼ରେ ୪ ଇଞ୍ଚ ବ୍ୟାସାର୍ଦ୍ଧର ଗୋଲେଇ ଅସ୍ତ୍ରଭଳି ବାହାରି ଆସି କ୍ରମଶଃ ଶେଷ ଭାଗ ଆଡ଼କୁ ସରୁ ହୋଇ ବଙ୍କେଇ ଯାଇଥାଏ ଯାହାର ଲମ୍ବ ୭/୮ ଫୁଟ ହୋଇଥାଏ । କିନ୍ତୁ ବିରଳରୁ ବିରଳତମ ସ୍ଥଳରେ ହାତୀଦାନ୍ତର ଲମ୍ବ ୧୦ ଫୁଟ ହୋଇପାରେ (ସୂଚନା: ପୃ-୨୬୩ 'ମଷ୍ଟର ଖରସେଲ') କେବଳ ପୁରୁଷ ହାତୀର ଦୀର୍ଘ ଦାନ୍ତ ଥାଏ। ମାଈ ହାତୀର ଦାନ୍ତ କ୍ଷୁଦ୍ର। ଦନ୍ତା ହାତୀ ଦଳର ସେନାପତି ଦାୟିତ୍ୱ ତୁଲାଇଥାଏ । କିନ୍ତୁ ବୟୋଜ୍ୟେଷ୍ଠା ବୁଢ଼ୀ ହାତୀ ପରିଚାଳନା ଦାୟିତ୍ୱରେ ଥାଏ । ଜଳାଭାବ ସ୍ଥାନକୁ, ଖାଦ୍ୟ ମିଳୁଥିବା ଅଞ୍ଚଳକୁ ଦିଗବାରଣୀ ଯନ୍ତ୍ର ପରି ବୁଢ଼ୀ ହାତୀ ବାଟ ବଢ଼େଇ ନିଏ। ସେ ସ୍ଥାନ ନିରୂପଣ କରି ସାରିଲା ପରେ ଯଦି ଜଳ ନପାଆନ୍ତି, ଶୁଣ୍ଢରେ ଗାତଖୋଳି ଜଳ ବାହାର କରି ପିଅନ୍ତି। ଅଣ୍ଡିରା ହାତୀ ବର୍ଷର କେତକ ସମୟରେ (ନିର୍ଦ୍ଦିଷ୍ଟ ନାହିଁ) ଉତ୍ତେଜିତ ଅବସ୍ଥାରେ ରହେ । ଏହି ଅବସ୍ଥାକୁ 'ମସ୍ତ' କୁହାଯାଏ । ଏହି ସମୟରେ ତା ଆକ୍ଷିପତାଥିବା ଗ୍ରନ୍ଥିରୁ ଏକ ପ୍ରକାର ଗନ୍ଧଯୁକ୍ତ ତରଳ ପଦାର୍ଥ ବହେ। ସଙ୍ଗ ପାଇଁ ଋତୁମତୀ ହସ୍ତିନୀ ନମିଳିଲେ ସେ ଅଧିକ ଉତ୍ତେଜିତ ହୁଏ । ଦଳରୁ ହସ୍ତିନୀ ସାଥିଟିଏ ମିଳିଗଲେ ସେ ଥଣ୍ଡାହୁଏ, ନତୁବା ଅନ୍ୟଦଳକୁ ସଂଗମ ଆଶାରେ ପଳାଇ ଯାଏ ( ସୂଚନା ପୃ ୧୫୪, ୧୫୫, ୧୫୬, ୧୯୭, 'ମିଷ୍ଟର ଖରସେଲ')। ଦଳର ଦନ୍ତା ସହିତ ଅନୁପ୍ରବେଶକାରୀର ଘମାଘୋଟ ଲଢ଼େଇ ହୋଇଥାଏ । ନିକଟ ଅତୀତରେ ତା ୨୯ ଜାନୁୟାରୀ ୨୦୧୫ ରେ ବିଳମ୍ବିତ ରାତିରେ ନିକଟସ୍ଥ ଚନ୍ଦକା ଅଭୟାରଣରେ ଗୋଟିଏ ପୁରୁଣା ଜଙ୍ଗଲ ହାତୀ ଦୁଇଟି ସ୍ଥାନରେ ସୁଦୃଢ଼ ପଥର ପାଚେରିକୁ ଭାଙ୍ଗି ହାତୀ ସଫାରିକୁ ପ୍ରବେଶ କରିଥିଲା ହାତିଣୀ ହୀରା, ବାସନ୍ତୀ ଓ ପ୍ରେମା ସହିତ ସହବାସ ଉଦ୍ଦେଶ୍ୟରେ । ଜଗୁଆଳ ସେନାପତି ଦନ୍ତା ଆକ୍ରମଣରେ ଜଙ୍ଗଲ ହାତୀ କ୍ଷତାକ୍ତ ହୋଇଥିଲା। କର୍ତ୍ତୃପକ୍ଷ ନିଶ୍ଚେତକ zylazine and Antogozil ଡାଟ୍ ବନ୍ଧୁକ ଦ୍ୱାରା ପ୍ରୟୋଗ କରି ଅନୁପ୍ରବେଶକାରୀ 'ମସ୍ତ' ହାତୀକୁ ଜଙ୍ଗଲକୁ ବିତାଡିତ କରିଥିଲେ।

ତେବେ ସେମାନଙ୍କ ମସ୍ତ ସମୟ ପ୍ରାୟ ୮/୧୦ ଦିନ ରହିଥାଏ । ଯଦି ସହବାସ ନହୁଏ, ନଦୀ ବା ପୋଖରୀରେ ପାଣି ଓ ପଙ୍କ ଲେପିବା ପ୍ରୟୋଜନ ପଡ଼ିଥାଏ । କେବଳ ହସ୍ତୀର ମସ୍ତ ସମୟ ଯଥେଷ୍ଟ ନୁହେଁ। ହସ୍ତିନୀର ଋତୁ ସମୟ ଉପସ୍ଥିତ ହେବା ଦରକାର। ହସ୍ତିନୀର ଋତୁ ସମୟ ଉପସ୍ଥିତ ହେଲେ ତା' ଜନନେନ୍ଦ୍ରିୟରୁ ଏକ ପ୍ରକାର ଗନ୍ଧଯୁକ୍ତ ନାଳ ନିର୍ଗତ ହୁଏ। ଏହି ସମୟରେ ସେ ତାର ଲାଙ୍ଗୁଡ଼କୁ ପଛ ଦୁଇ ଗୋଡ ଭିତରେ ରଖି ଜନନେନ୍ଦ୍ରିୟରେ ପୁନଃ ପୁନଃ ଘର୍ଷଣ କରିଥାଏ।

ସଂଗମ ପରେ ମାଈ ହାତୀ ୨୧ ମାସ ପରେ ଛୁଆ ଜନ୍ମଦିଏ ଯାହାର ଉଚ୍ଚତା ପ୍ରାୟ ୧ ମିଟର ଓ ଓଜନ ୧୦୦ କି.ଗ୍ରା. ହୋଇଥାଏ । ମା'ର ଆଗ ଗୋଡ଼ ସନ୍ଧିରେଥିବା ଦୁଇଟି ମାତ୍ର ସ୍ତନ ଚିରରୁ ଛୁଆ କ୍ଷୀର ପିଏ । ମାଈ ହାତୀ ଥରକୁ ଗୋଟିଏ ମାତ୍ର ଛୁଆଦିଏ । ଖୁବ୍ କ୍ୱଚିତ୍ ଘଟଣାରେ ଦୁଇଟି ଛୁଆ ପ୍ରସବ କରିବାର ନଜିର ରହିଛି । ଜୀବ କାଳରେ ହସ୍ତିନୀ ୮/୧୦ ଥର ଛୁଆ ଦେଇଥାଏ । ତାର ପ୍ରଜନନ କ୍ଷମତା ୫୦ ବର୍ଷ ପର୍ଯ୍ୟନ୍ତ। ସବୁଠାରୁ ବିଚିତ୍ର ଘଟଣା ହସ୍ତିନୀ ପ୍ରସବ କାଳରେ ଦଳର ପ୍ରାୟ ସମସ୍ତେ ସାହାଯ୍ୟ କରିଥାନ୍ତି କିନ୍ତୁ, ମାଈ ହାତୀଟିଏ ଗର୍ଭିଣୀ ହାତୀ ପ୍ରସବ କଲା ବେଳେ ଧାଈ ଭଳି ଗର୍ଭଯନ୍ତ୍ରଣାରୁ ମୁକ୍ତ କରିଥାଏ, ସେ ମାଉସୀ ହାତୀ ବୋଲି ଧରାଯାଏ। ସେଇଭଳି ମାଉସୀ ହାତୀ ଗର୍ଭିଣୀ ହେଲେ ପୂର୍ବ ମା' ହସ୍ତିନୀ ମାଉସୀ ହାତୀର ଧାଈ ସାଜି ଋଣ ପରିଶୋଧ କରିବାର ନଜିର ଅଛି । ହାତୀ ଆମର ମୂଲ୍ୟବାନ ଜାତୀୟ ସମ୍ପତ୍ତି, ଆମ ସଭ୍ୟତା, ସଂସ୍କୃତି ଓ ଜନ ଜୀବନ ସହିତ ଜଡ଼ିତ ଯାହା ଯେକୌଣସି ଅନ୍ୟ ବନ୍ୟଜନ୍ତୁଠୁଁ ଭିନ୍ନ ହାତୀକୁ ନେଇ ଆମର କେତେ ଲୋକ ଗୀତ, ଲୋକ କଥା ସ୍ୱତନ୍ତ୍ର- ଝୁଲୁରେ ହାତୀ ଝୁଲୁ, ବାଆ ପାଣିଖାଇ ଫୁଲ; ହାତୀ ବୁଲୁଥାଏ ରାଜା ରାଜା ବଗିଚାରେ କିଆ କନ୍ଧା ଖାଇବାକୁ... ହାତୀ ଜୀଇଁଲେ ଲକ୍ଷେ ଟଙ୍କା, ହାତୀ ମଲେ ଲକ୍ଷେ ଟଙ୍କା ଇତ୍ୟାଦି।

କିନ୍ତୁ ପରିତାପର ବିଷୟ, ସୃଷ୍ଟିର ଏହି ଅନ୍ୟତମ ଶ୍ରେଷ୍ଠ ଜୀବ ଆଜି ବିପନ୍ନମୁଖୀ। ଦ୍ରୁତ ଜଙ୍ଗଲ କ୍ଷୟ, ବର୍ଦ୍ଧିଷ୍ଣୁ ଶିଳ୍ପାୟନ, ସହର ସଂପ୍ରସାରଣ, ଖଣିଖନନ, ନଦୀବନ୍ଧ ଯୋଜନା, ରେଳପଥ ବର୍ଦ୍ଧିକରଣ, ପରିବେଶ ଓ ଜଳବାୟୁର ପରିବର୍ତ୍ତନ, ଜନସଂଖ୍ୟା ବିସ୍ଫୋରଣ ଆଦି କେବଳ ହାତୀ କାହିଁକି ବଣ୍ୟଜନ୍ତୁଙ୍କ ପାଇଁ କାଳ ହୋଇଛି। ହା ଅନ୍ନ ଚିତ୍କାରରେ ହାହାକାର ଛାଡୁଛନ୍ତି, ବୁଭୁକ୍ଷର ଗର୍ଜନରେ ବନଭୂମି ପ୍ରକମ୍ପିତ, ଦୁର୍ଗତଙ୍କ ଆର୍ତ୍ତସ୍ୱର ଗଗନ ପବନ ଗିରି ପାହାଡରେ ପ୍ରତିଧ୍ୱନିତ। ସ୍ୱୀକାର୍ଯ୍ୟଯେ ମନୁଷ୍ୟକୃତ କାର୍ଯ୍ୟ ଯୋଗୁଁ ହାତୀମାନେ ବାସହରା ହେଉଛନ୍ତି, ଜନ ବସତି ଆକ୍ରମଣ କରୁଛନ୍ତି । ଫଳରେ ସେମାନେ ମଣିଷକୁ ଏବଂ ମଣିଷ ଦ୍ୱାରା ମରାହେଉଛନ୍ତି । ( ସୂଚନା - ପୃ ୨୫୩, ୨୫୪, ମିଷ୍ଟର ଖରସେଲ) ଗତ ୫ ବର୍ଷ ମଧ୍ୟରେ ୩୭୮ ହାତୀ ମୃତ ହୋଇଥିଲା ବେଳେ ହାତୀ ଆକ୍ରମଣରେ ୩୫୬ ଜଣ ମଣିଷ ପ୍ରାଣ ହରାଇଛନ୍ତି । ପରିସଂଖ୍ୟାନକୁ ଲକ୍ଷ୍ୟକଲେ ଓଡିଶାରେ ହାତୀ ସଂଖ୍ୟା ଉତ୍ସାହଜନକ ନୁହେଁ, ସଂଖ୍ୟା ୨୦୦୦ ଭିତରେ ସୀମିତ। ହାତୀ ମଣିଷ ସଂଘର୍ଷର ସମଧାନ ନିକଟ ଭବିଷ୍ୟତରେ ଦିଶୁନାହଁ । ସରକାର ଏହାର କୂଳ କିନାରା ପାଉ ନାହାନ୍ତି । ମଣିଷ କ'ଣ କେବେ ସେମାନଙ୍କ ଉଜୁଡ଼ା ବାସସ୍ଥାନ ସଜାଡ଼ି ପାରିବ ? ସେମାନଙ୍କର ଅତୀତର ଘଞ୍ଚ ଅରଣ୍ୟ ଓ ବାଙ୍ମୟ ନିର୍ଜ୍ଜନତା ଫେରସ୍ତ ଦେଇପାରିବ ?





# ବଣର ବାଦଶାହ

ବର୍ତ୍ତମାନ ପୃଥିବୀରେ ପ୍ରାୟ ୧୮ ହଜାର ପ୍ରକାର ସାପର ସନ୍ଧାନ ମିଳିଛି ଓ ତନ୍ମଧ୍ୟରୁ ଆମ ଭାରତରେ ପ୍ରାୟ ୧୫ ହଜାର ସାପ ଦେଖାଯାନ୍ତି । ସେଥିପାଇଁ ଅନେକେ ଭାରତ ସାପର ଦେଶ ବୋଲି କହିଥାନ୍ତି । ସେମାନେ ସରୀସୃପ ଜାତିର । ସ୍ଥଳଭାଗରେ ସର୍ବବୃହତ୍ ସରୀସୃପ ହେଉଛି ଅଜଗର ସାପ । ଜୀଅନ୍ତା ଜୀବମାନଙ୍କୁ ଗୋଟାପଣେ ଗିଳି ଦେବାରେ ଯେଉଁ ରାକ୍ଷସ ଜୀବଟି ମଣିଷ ମନରେ ଭୟ ସଂଚାର କରେ ସେ ଏହି ଅଜଗର । ତା'ର କାହାକୁ ଭୟ ନାହିଁ, ସମସ୍ତେ ତାକୁ ଭୟ କରନ୍ତି । ବନର ବାଦଶାହ ସେ, ତା' ଜୀବନ ଶୈଳୀ ମଧ୍ୟ ସେଇପରି ।

ଅଜଗର ସାପମାନେ ପଶ୍ଚିମ ଆଫ୍ରିକା ପୂର୍ବାଞ୍ଚଳ ଲୋହିତ ଭାରତୀୟ ଦ୍ୱୀପପୁଞ୍ଜ, ଚିନ୍, ଭାରତ, ମାଲୟେସିଆ, ବର୍ଣ୍ଣିଓ, ସୁମାତ୍ରା, ଅଷ୍ଟ୍ରେଲିଆ ମହାଦେଶରେ ଦେଖାଯାନ୍ତି । ଆଫ୍ରିକୀୟ ଅଜଗରର ଲମ୍ବ ୧୦.୫ ମିଟର ଯାଏ ହୋଇଥାଏ । ଭାରତୀୟ ଅଜଗରର ଲମ୍ବ ୮.୫ ମିଟର । ଏହାର ଗୋଲେଇ ତରୁଣ ହାତୀର ଆଗ ଗୋଡ଼ ବା ମଧ୍ୟମ ନଡ଼ିଆ ଗଛର ଗୋଲେଇ ସଙ୍ଗେ ସମାନ । ଏହାର ଲାଞ୍ଜଟି କ୍ରମଶଃ ସରୁ ଓ ଶେଷ ଭାଗ ଥୁଣ୍ଡା । ସେଇପରି ମୁଣ୍ଡ ଶରୀର ଅପେକ୍ଷା ଛୋଟ ଓ ବର୍ଚ୍ଛା ପରି । ଦେହର ରଂଗ ହଳଦିଆ କଳା ପାଉଁସିଆ ଓ ପିଠି ସାରା ଚତୁର୍ଭୁଜ । କୃତି କଳାକଳା ଜାଲି ଚିହ୍ନ ଥାଏ ସତେ ଯେମିତି କଳା ଧଳା ରଂଗର ଫେଭିକୁଇକ୍ ଅଠାଦ୍ୱାରା ଥାପି ହୋଇଛି । ସୂର୍ଯ୍ୟ କିରଣ ତା'ଦେହର ପଡ଼ିଲେ ଚିକ୍ ଚିକ୍ କରି ବିଭିନ୍ନ ପ୍ରକାର ରଂଗ ବାହାରେ ଏବଂ ଦେଖିବାକୁ ସୁନ୍ଦର ଲାଗେ ।

ସେମାନଙ୍କ ସଂଘବଦ୍ଧ ଜୀବନ ନଥାଏ; ଯୋଡ଼ି ଯାଉଁଳି ହୋଇ ଦାମ୍ପତ୍ୟ ଜୀବନ ନଥାଏ । ସ୍ତ୍ରୀ ଅଜଗରର ଋତୁ ହେଲେ ସେ ଇଲାକାରେ ଖୋଜି ଖୋଜି ପୁରୁଷ ଅଜଗର ପାଖକୁ ଯାଇଥାଏ ଏବଂ

ସେମାନଙ୍କ ସଙ୍ଗମ ହୋଇଥାଏ ଦୁଇଟି ମୋଟ ଦଉଡ଼ିକୁ ବଳି ଗୁଡ଼ାଇ ଏକତ୍ର କଲାଭଳି ଖୋଲା ଜାଗାରେ । ସଙ୍ଗମ ଏକ ଘଣ୍ଟା ପର୍ଯ୍ୟନ୍ତ ହୋଇଥାଏ ଏବଂ ୪/୫ ଦିନ ପର୍ଯ୍ୟନ୍ତ ସଂଗମର ପୁନରାବୃତ୍ତି ହୋଇଥାଏ । ସ୍ତ୍ରୀ ଅଜଗର ୩/୪ ମାସ ପରେ ପାଖାପାଖି ୬୦ରୁ ୭୦ ଅଣ୍ଡା ଦେଇଥାଏ ଏବଂ ସେଗୁଡ଼ିକୁ ନିଜେ ଉଷୁମାଇ ଥାଏ । ୯୦ ଦିନ ପରେ ଅଣ୍ଡାରୁ ଛୁଆ ବାହାରେ। ଶାବକମାନେ ପୋକ ଜୋକ କୀଟ ପତଂଗ, ଏଣ୍ଡୁଅ, ଅସରପା, ବୁଢ଼ିଆଣୀ, ବେଙ୍ଗ, ପକ୍ଷୀ ଆଦି ଖାଇ ବଢ଼ନ୍ତି ଏବଂ ୮ ମାସରେ ବୟଃପ୍ରାପ୍ତ ହୁଅନ୍ତି। ସେମାନଙ୍କ ଅୟୁଃକାଳ କୋଡ଼ିଏ ବର୍ଷ ।

ଅଜଗର ଗୋଟିଏ ସର୍ବଭକ୍ଷ ଅଳସୁଆ ନିଦ୍ରାଳୁ ଜୀବ। ଘଣ୍ଟାରେ ତାର ବେଗ ଏକ କି.ମି, ଖୁବ୍ ବେଶୀରେ ଦେଢ଼ କି.ମି.। ସେ ପ୍ରାୟତଃ ଶିକାର ପାଖକୁ ଯାଏ ନାହିଁ ବରଂ ଶିକାର ତା'ପାଖକୁ ଆସନ୍ତି। ଗଛ ଗହଳ କିମ୍ବା ନଟାବୁଦା ଭିତରେ ନିଜକୁ ଖୁବ୍ ଚତୁରତା ସହ ଗୋପନ ରଖିଥିବା ବେଳେ କୈଣସି ଖାଦ୍ୟୋପଯୋଗୀ ପ୍ରାଣୀ ଯଥା ସରୀସୃପ, ସ୍ତନ୍ୟପାୟୀ ବାରହା, ସମ୍ବର, ହରିଣ ଆଦି ଜୀବଜନ୍ତୁ ତା ମୁହଁ ଆଗରେ ଯିବା ସମୟରେ ଯନ୍ତାରେ ଧରିବା ଭଳି ଖପ୍‌କିନି ଧରିନିଏ। ଯଦି ଥରେ କୌଣସି ଜନ୍ତୁର ଦେହାଂଶ ତା ପାଟି ଭିତରେ ପଶିଯାଏ ସେ ଆଉ ବାହାରକୁ ଆସି ପାରେ ନାହିଁ ୱାନ୍ ୱେ ଟ୍ରଫିକ ଭଳି। ସେ ନିଜେ ବାନ୍ତି କରି ତାକୁ ପାଟି ଭିତରୁ ବାହାର କରିବା ମଧ୍ୟ ସମ୍ଭବ ନୁହେଁ କାରଣ ତା ବିଶାଳ ମୁହଁ ଭିତରେ ତୀକ୍ଷ୍ଣ ଦାନ୍ତଗୁଡ଼ିକ ବନ୍‌ସି କଣ୍ଟାଭଳି ତଣ୍ଟି ଆଡ଼କୁ ଢ଼ଳି ରହିଥାଏ, ଭକ୍ଷିତ ପଦାର୍ଥକୁ ଯେତେ ଜୋରରେ ଓଟାରିଲେ ମଧ୍ୟ ତାହା ଆଉ ବାହାରକୁ ଆସିପାରେ ନାହିଁ ଏବଂ ପଦାର୍ଥର ଆକାର ନେଇ ତା' ପାଟି ବେଲୁନ ପରିକା ଫୁଲି ଫୁଲି ଯାଏ। ଗୋଟିଏ ମୋଟା ଆହାର ମିଳିଗଲେ ଦିନ କେତେ ଲମ୍ବ ହୋଇ ପ୍ରକୃତିର ପ୍ରକାଣ୍ଡ କୋଳ ପଥର କୋରଡ଼ରେ କୁମ୍ଭକର୍ଣ୍ଣ ନିଦ୍ରାରେ ଶୋଇଯାଏ ନିର୍ଭୟରେ କାରଣ ସେ ଶତ୍ରୁଜିତ, ଜଙ୍ଗଲର ପରାକ୍ରମୀ ଅପ୍ରତିଦ୍ୱନ୍ଦ୍ୱୀ ବାଦଶାହ, ତା ପ୍ରରାକ୍ରମର କାହାଣୀ, କିମ୍ବଦନ୍ତୀ ଅନେକ।

ହିନ୍ଦୁ ପୁରାଣରେ ନଳ ଦମୟନ୍ତୀ କାହାଣୀରୁ ଜଣାଯାଏ ଯେତେବେଳେ ଦମୟନ୍ତୀ ଏକାକୀ ଘୋର ଅରଣ୍ୟ ମଧ୍ୟ ଦେଇ ପିତାଙ୍କ ଘରକୁ ଯାଉଥିଲେ ଏକ ଅଜଗର ଦମୟନ୍ତୀଙ୍କ ଦେହକୁ ଘେରି ରହିଲା, ଗଛ ଡ଼ାଳରେ ମୁଣ୍ଡଟି ହଲାଇ ଅଟକି ରହିଲା। ଭାଗ୍ୟବଶତଃ ଏକ ବ୍ୟାଧ ଦମୟନ୍ତୀଙ୍କ କ୍ରନ୍ଦନ ଶୁଣି ଅଜଗର ମୁହଁକୁ ଲକ୍ଷ୍ୟକରି ଶର ନିକ୍ଷେପ କଲା ଏବଂ ଅଜଗର ସେଇଠି ପଡ଼ି ମରିଗଲା । ପ୍ରାଚୀନ ଇଂରାଜୀ ପ୍ରକୃତି ବିଜ୍ଞାନ କୋଷରେ ଅଜଗରର ବର୍ଣ୍ଣନା ଦେଖିବାକୁ ମିଳେ। ଯେଉଁ ସମୟରେ ରୋମ୍ ଏକ ପ୍ରସିଦ୍ଧ ନଗର ଥିଲା, ସେତେବେଳେ ଟାଇବର ନଦୀକୂଳରେ ଥିବା ଏକ ଗୁମ୍ଫାରେ ଏକ ବିଶାଳ ଜୀବ ରହୁଥିଲା । ତାହାର ଲମ୍ବ ୧୨୫ ଫୁଟ ଥିଲା। ରେମୁଲାସ୍‌ଙ୍କ ସୈନ୍ୟମାନେ ଏହି ରାକ୍ଷସର କିଛି କ୍ଷତି କରି ପାରିନଥିଲେ। ପରନ୍ତୁ ଯେ ସୈନ୍ୟମାନଙ୍କୁ ମାରି ଦେଉଥିଲା, ଏପରିକି ବଡ଼ ବଡ଼ ତୋପ ଏହାର କିଛି କ୍ଷତି କରି ପାରିଲେନାହିଁ। ପରିଶେଷରେ ସ୍ୱୟଂ ସମ୍ରାଟ୍ ରେମୁଲାସ ଯୁଦ୍ଧରେ ଅବତୀର୍ଣ୍ଣ ହୁଅନ୍ତି ଏବଂ ଅସୁରକୁ ନିଧନ କରନ୍ତି । ଏହା ଥିଲା ଏକ ବିଶାଳ ସର୍ପରୂପୀ ରକ୍ଷସ ଯାହାକୁ ଏବର ଅଜଗର ବୋଲାଗଲା।

କଥିତ ଅଛି ଯେ ଫିଲିପାଇନ୍ ଦ୍ୱୀପ ପୁଞ୍ଜର ଜଣେ ଅପରାଧି ଭୟ ହେତୁ ଗୋଟିଏ ଗୁମ୍ଫାରେ ଲୁଚି ଯାଇଥିଲା, ସେଇକଥା କେବଳ ତା' ବାପାକୁ ଜଣାଥିଲା। ତା'ର ବାପା ପୁଅକୁ ଗୁମ୍ଫାରେ ଖାଦ୍ୟ ଦେଇ

ଆସୁଥିଲା । କିନ୍ତୁ ଦିନେ ସେହି ଗୁହରେ ଯାଇ ତାଙ୍କ ପୁଅ ପରିବର୍ତ୍ତେ ଗୋଟିଏ ବିରାଟ ଅଜଗରକୁ ଦେଖିଲା । ସେ ତତ୍‌କ୍ଷଣାତ୍ ତାକୁ ଶର ମାରିଲା ଏବଂ ତା' ପେଟ ଭିତରୁ ତାଙ୍କ ପୁଅର ଶବକୁ ଅବିଷ୍କାର କଲା । ସେଇପରି ପ୍ରକୃତି ବିଜ୍ଞାନ କୋଷରେ ଅଜଗରର ପରାକ୍ରମ ବିଷୟରେ ବର୍ଣ୍ଣିତ ଅଛି ଯେ ଏକ ବିରାଟ ଅଜଗର ସହିତ ଏକ ମଣିଷର ଯୁଦ୍ଧ ହୋଇଥିଲା । ଅଜଗର ମହିଷକୁ ଚାରିଆଡୁ ଏପରି ଭାବରେ ତା' ଦେହର ଗୁଡ଼େଇ ଚାପି ଦେଇଥିଲା ଯେ ସେହି ମଣିଷର ସବୁ ହାଡ ଭାଙ୍ଗି ଚୂରମାର୍ ହେଇଯାଇଥିଲା । ସେଇପରି ବାଘକୁ ଓ କୁମ୍ଭୀରକୁ ଗୁଡ଼େଇ ହୋଇ ଚାପି ମାରି ଦେଇଥିବାର ଅନେକ ଦୃଷ୍ଟାନ୍ତ ଅଛି । ନିଉ ଗୁଆନାରେ ଇଷତ୍ ସବୁଜ ରଙ୍ଗର ଅଜଗର ଗଛରେ ବାସ କରୁଥିବା ଦେଖାଯାଏ, ଡ଼ାଳ ପତ୍ର ସଂଗେ ନିଜକୁ ମିଶାଇ ଦିଏ । ଦେଖାଯାଇଛି, ହାତୀ ଯେତେବେଳେ ଶୁଣ୍ଢ ଲମ୍ବାଇ ଗଛରୁ ଡ଼ାଳପତ୍ର ଛିଣ୍ଡାଇ ଖାଏ, ଅଜଗର ତା' ଶୁଣ୍ଢରେ ତା' ନାଶାକୁ ଧରିନିଏ ଏବଂ ହାତୀର ଆଖି ଫୁଟାଇ ଦିଏ । ଶ୍ୱାସରୁଦ୍ଧ ହୋଇ ହାତୀ ମୃତ୍ୟୁ ବରଣ କରେ ।

ଅଜଗର କାରନାମାରେ ଅନ୍ୟ ଏକ ଉଲ୍ଲେଖନୀୟ ଉଦାହରଣ ହେଉଛି କୋରାପୁଟ ଜିଲ୍ଲାର ବେଲଘର୍ ଅଭୟାରଣ୍ୟରେ ଏକ ହାତୀ ଅଜଗରର ରଣୋନ୍ମତ୍ତ ଘଟଣା ଯାହା ଘଟିଥିଲା ଭାରତ ସ୍ୱାଧୀନତାର ବହୁ ବର୍ଷ ପୂର୍ବରୁ, ବ୍ରିଟିଶ୍ ମ୍ୟୁଜିଅମ୍‌ରେ ସଂଗୃହୀତ ହାତୀ କଙ୍କାଳ ତାହାର ପ୍ରମାଣ ଦିଏ । ଇଂରେଜ ଶିକାରୀ ତଥା ପର୍ଯ୍ୟବେକ୍ଷକ ଏଡ୍‌ଗାର ରୋବେଇରୋ ଆଭ୍ୟନ୍ତର ଅଗନା ଅଗନି ବନସ୍ତରୁ ଉକ୍ତ କଙ୍କାଳକୁ ଆବିଷ୍କାର କରିଥିଲେ । କଙ୍କାଳର ଇତିବୃତ୍ତରୁ ଜଣାଯାଏ ଜଙ୍ଗଲର ଭୁତଖିଆ ନାମ୍ନୀ ଏକ ଜଳାଶୟ ଥିଲା ଯେଉଁଥିରେ ଏକ କୁଖ୍ୟାତ ଅଜଗର ବାସକରୁଥିଲା । ଥରେ ସାପଟା ଜଙ୍ଗଲର ଚଲାବାଟରେ ଶିକାର ଆଶାରେ ନିଷ୍ପଳ ହୋଇ ଶୋଇ ରହିଥିଲା ବେଳେ ଗୋଟିଏ ହାତୀର ଖୋଜ ତା' ଉପରେ ପଡ଼ିଗଲା ଓ ତତ୍‌କ୍ଷଣାତ୍ ଅଜଗର ହାତୀର ଶୁଣ୍ଡକୁ ମୁହଁରେ ଧରିନେଲା । ପରିଶେଷରେ ହାତୀ ଅଣନିଶ୍ୱାସୀ ହୋଇ ପ୍ରାଣ ହରାଏ, କିନ୍ତୁ ତା' ଖୋଜ ଅଜଗର ଉପରେ ଚାପି ହୋଇ ପଡ଼ିରହି ଥିଲା ଏବଂ ତା'ର ମଧ ଜୀବନ ଶେଷ ହୋଇଯାଇଥିଲା । ଏହିପରି ଅଜଗରର ଅନେକ ରୋମାଞ୍ଚକର ସଂଘର୍ଷର କାହାଣୀ ଲିପିବଦ୍ଧ ରହିଛି ।

ଦୁଇଟି ରୋମାଞ୍ଚକର ଘଟଣା ମୋର ଜ୍ଞାତସାରରେ ଅଛି । ଅଜଗର ମଣିଷକୁ ଆକ୍ରମଣ କରିବା ଓ ଧୀରେ ଧୀରେ ଗିଳିବାର ଏକ ଘଟଣା ନଜରକୁ ଆସିଥିଲା ମୋ ପିଲାଦିନେ ପାଠପଢ଼ା ସମୟରେ, ଯେତେବେଳେ ଅଜଗରକୁ ମରାଯାଇ ବଡ଼ ବାବା ରାୟବାହାସଦୂରଙ୍କ ପାଖକୁ ଅଣାଯାଇଥିଲା ପୁରସ୍କାର ପ୍ରାପ୍ତି ଆଶାରେ । ବଦୁତିବନ୍ଧ ତାଳବସ୍ତ ଗ୍ରାମ ଚନ୍ଦକା ଅରଣ୍ୟର ଅଂଶ ବିଶେଷ । ଚକ୍ରଧର ଓରଫ ଚକରା ନାମ୍ନୀ ଜଣେ ମଧ୍ୟବୟସ୍କ ଗଉଡ଼ ତା ଗାଇଗୋରୁଙ୍କ ପାଇଁ ଦୁଇ ତିନି ବୋଝ ଘାସ କାଟି ନେଇଯିବ ବୋଲି ଭାବି କାମ ଆରମ୍ଭ କରିଥିଲା । ପ୍ରାୟ ଅଧଘଣ୍ଟାଏ ଘାସ କାଟିବା ପରେ ତା'ର ବାମ ହାତକୁ ବୁଦା ମଧରେ କେହି ଟାଣୁଥିବାର ଅନୁଭବ କଲା । ଚାହିଁ ଦେଖିଲା ବେଳକୁ ତା' ହାତଟା ଟାଣିବା ପୂର୍ବରୁ ଅଜଗର ତା' ଗୋଡ଼ରେ ଯାଇ ତତ୍‌କ୍ଷଣାତ୍ ଗୁଡ଼େଇ ହୋଇଗଲା । ସେ ତା' କବଳରୁ ଖସିବା ପାଇଁ ଯେତେ ଟାଣି ଓଟାରି ହେଲା, ପାରିଲା ନାହିଁ । ସେଇଠୁ ଚକରା ବଡପାଟିରେ ଚିତ୍କାର

କଲା । ତା' ଆର୍ତ୍ତ ଚିତ୍କାର ଶୁଣି ଆଖ ପାଖରେ କେତେ ଲୋକ ଦୌଡ଼ି ଆସିଲେ। ସେତେବେଳକୁ ଅଜଗର ସାପ ତା' କହୁଣୀ ପର୍ଯ୍ୟନ୍ତ ଗିଳି ଦେଲାଣି । ଲୋକମାନେ ସାପଟାକୁ ପଛ ପଟୁ ହାଣି ପକାଇଲେ। ସାପଟା ମରିଗଲା, ତଥାପି ତା' ପାଟି ଭିତରୁ ଚକରାର ହାତ ବାହାରିପାରିଲାନାହିଁ ଏଣୁ ତାକୁ ଓ ମଲା ସାପକୁ ଏକ ଶଗଡ଼ରେ ପକାଇ ଗାଁ ଲୋକ ବାଙ୍କୀ ହାସପାତାଳକୁ ଆଣିଲେ । ଡ଼ାକ୍ତର ଅସ୍ତ୍ରୋପଚାର କରି ସାପ ଓ ଚକରାକୁ ଅଲଗା ଅଲଗା କଲେ। ଅଜଗରଟା ଥିଲା ମଧ୍ୟମ ଧରଣର। ଏହି ଦୃଶ୍ୟର ମୁଁ ଥିଲି ଜଣେ ବାଲୁତ ପ୍ରତ୍ୟକ୍ଷଦର୍ଶୀ । (ସୂଚନା : ମିଷ୍ଟର ଖରସେଲ, ପୃ-୧୦୬)

ଅନ୍ୟ ଘଟଣାଟି ଥିଲା ମରଣାନ୍ତକ ଓ ଯମ ସହିତ ସଂଘର୍ଷ । ସରୋଜ ବାବୁ ବୋଲି ଜଣେ କମ୍ପାଉଣ୍ଡର ହାସପାତଳରେ କାମ କରନ୍ତି। ତାଙ୍କ ଘର ତାଳବସ୍ତ ଡ଼ମପଡ଼ାଠୁଁ ପାଞ୍ଚ ମାଇଲ ଦୂର, ବାଙ୍କୀ ଠାରୁ ପନ୍ଦର ମାଇଲ ହେବ। ହାସପାତାଲରେ ରୋଗୀ ସେବା କାମ ସାରି ବାଙ୍କୀ ବଜାରରୁ ସଉଦା କରନ୍ତି ଓ ଦିନାନ୍ତେ ସାଇକଲ ଚଳାଇ ଭାୟା ଡ଼ମପଡ଼ା ଗାଁ କୁ ଫେରନ୍ତି। ଜଙ୍ଗଲ ଗେଙ୍ଗୁଟିଆ ରାସ୍ତା । ଅନ୍ଧାର ରାତି। ସାଇକଲଟି ତାଙ୍କର ନୀତି ଦିନିଆ ଯାନ (ସେତେବେଳେ ବାଙ୍କୀର ତିନି ଚାରୋଟି ସାଇକଲ ଯାନ ମଧ୍ୟରୁ ତାଙ୍କର ଅନ୍ୟତମ, ସାଇକେଲର ଅନ୍ୟନାମ ଥିଲା ଶୂନଯାନ)। ସରୋଜ ବାବୁ ସବୁଦିନ ପରି ସାଇକଲ ଚଳାଇ ଘରକୁ ଫେରୁଥିଲେ । ପାଗ ଶୁଖିଲା ଥିଲା। ଡ଼ମପଡ଼ା ଅତିକ୍ରମ କଲେଣି । ତା' ପରେ ପଥୁରିଆ ରାସ୍ତା ତାଳବସ୍ତ ପର୍ଯ୍ୟନ୍ତ । ରାସ୍ତାର ଉଭୟ ପାର୍ଶ୍ୱରେ ଘୋର ଜଙ୍ଗଲ । ରାତ୍ରି କାଳରେ ରାସ୍ତା ଆହୁରି ନିଶୂନ। ହିଂସ୍ରଜନ୍ତୁ ଭୟ। ତେବେ ସେ ଏହି ନିତିଦିନିଆ ରାସ୍ତାରେ ଅଭ୍ୟସ୍ତ। ସାଇକଲ ହାଣ୍ଡଲରେ ଲଣ୍ଠନଟି ଝୁଲାଇ ଚାଲିଥାନ୍ତି। ଲଣ୍ଠନରେ ମିଞ୍ଜି ମିଞ୍ଜି ଆଲୁଅ କେବଳ ଗୋଡତଳ ଦେଖିବାପାଇଁ। ହଠାତ୍ ସାଇକେଲ ଆଗ ଚକ ଚଢ଼ିଗଲା ଗୋଟେ ମସୃଣ ପଥର ଉପରେ ଏବଂ ଖସରିଗଲା ତା' ଉପରେ । ଆରେ ଏତ ପଥର ନୁହେଁ ଆଉ ଗୋଟେ କଅଣ ! ଚିତ୍ପଟା ହୋଇ ପଡ଼ିଗଲେ ସରୋଜ ବାବୁ, ତାଙ୍କ ଯାନ ଠାଏ ଓ ସେ ଆଉ ଠାଏ। ସାଇକଲ ହାଣ୍ଡଲରୁ ଲଣ୍ଠନ ଖସିପଡ଼ି ଖଣ୍ଡେ ଦୂରରେ ହାମୁଡ଼େଇ ପଡ଼ିଥାଏ । ସେଥିରୁ କିରୋସିନିତକ ଚହଲି ନିଗିଡ଼ି ଯାଇ ଲଣ୍ଠନ ଦେହ ସାରା ବୋଳି ହୋଇ ଯିବା ଦ୍ୱାରା ହୁଳା ଭଳି ଜଳିବାକୁ ଲାଗିଲା ଏବଂ ମୁହୂର୍ତ୍ତକ ମଧ୍ୟରେ ନିଆଁ ଲଣ୍ଠନଟିକୁ ସଂପୂର୍ଣ୍ଣ ଚାଟିଦେଲା। ଏଣେ ସରୋଜ ବାବୁ ଅନ୍ଧାର ଭିତରେ ଅନୁଭବ କରନ୍ତି ଯେମିତି ତାଙ୍କ ଗୋଡ଼କୁ ସରୀସୃପଟାଏ କାବୁ କରି ବସିଛି । ଟିକିଏ ପ୍ରକୃସ୍ଥିତ ହୋଇ ଦେଖନ୍ତି ତାଙ୍କ ପାଦ ଦୁଇଟା ଗୋଟେ ବୃହତ୍ ଅଜଗର ସାପ ପାଟି ଭିତରେ ଆକ୍ରାନ୍ତ ଏବଂ ଗୋଡ଼ ପଟୁ ତାଙ୍କ ଦେହକୁ ଆସ୍ତେ ଆସ୍ତେ ଟାଣି ନେଉଛି ତା' ଭୟଙ୍କର ପାଟି ଭିତରକୁ । ଗୋଟେ ବିରାଟ ଅଜଗର ମୁହଁରେ ପଡ଼ିଛନ୍ତି ଏବଂ ତାଙ୍କୁ ଗଳିବାକୁ ବସିଛି ଗୋଡ଼ଆଡୁ। ଆଉ କେଇ ମିନିଟ ଭିତରେ ତାଙ୍କ ଜୀବନ୍ତ ଶରୀର ଅଜଗରର ଆହାର ହୋଇଯିବ ଏକଥା ନିଶ୍ଚିତ । କ୍ରମଶଃ ତାଙ୍କ ଆଣ୍ଠୁ ପର୍ଯ୍ୟନ୍ତ ଅଜଗର ଗିଳି ସାରିଲାଣି। ଝିଟିପିଟି ମୁହଁରେ ପତଂଗଟିଏ ଯେମିତି ପ୍ରଥମେ ଛଟ ପଟ ହୁଏ ସେହିପରି ତାଙ୍କର ଅବସ୍ଥା। ମୃତ୍ୟୁ ହିଁ ଅନିବାର୍ଯ୍ୟ। ତଥାପି ଗୋଟିଏ ବୁଦ୍ଧି ତାଙ୍କ ମନକୁ ସ୍ପର୍ଶକଲା ବୁଡ଼ି ଯିବା ବେଳେ କୁଟାଖିଅକୁ ଆଶ୍ରାକରି କାଳେ ବଞ୍ଚି ଯିବା ଭଳି। ସେ ମନରେ ସାହାସ ବାନ୍ଧିଲେ । ତାଙ୍କ ହାତ ଦିଓଟି

ସଚଳ ଥିଲା । ତାଙ୍କ କାନ୍ଧରେ ବଡ଼ ଫିତାବାଲା କପଡ଼ା ବ୍ୟାଗଟି ଲାଖି ରହିଥିଲା । ସେଥିରେ ଡ଼ାକ୍ତରଖାନାର ଅସ୍ତ୍ରୋପଚାର ଧାରୁଆ ଛୁରୀଟିଏ ସର୍ବଦା ଥାଏ ବାନ୍ଧିଲା ଘୋଡ଼ା ଘାସ ଖାଇବା ନ୍ୟାୟରେ । ଆଉ କ୍ଷଣେ ଚିନ୍ତା ନ କରି ବ୍ୟାଗ ଭିତରୁ ଅଣ୍ଟାଳି ଛୁରିଟିକୁ ନେଇ ଆସିଲେ ଏବଂ ଅଜଗରର ପାଟିକୁ ସେଥିରେ ଚିରିବାକୁ ଲାଗିଲେ । ଅଜଗର ଯେତିକି ମାତ୍ରରେ ତାଙ୍କ ଗୋଡ଼କୁ ତା' ପେଟ ଭିତରକୁ ଗଳିବାରେ ଲାଗିଥାଏ, ସେଇ ଅନୁପାତରେ ସରୋଜ ବାବୁ ତା' ଓଠର ଉଭୟ ପ୍ରାନ୍ତକୁ ଚିରିବାରେ ଲାଗିଥାନ୍ତି । ଆକାଶର ପଞ୍ଚମୀ ଚାନ୍ଦ ଏ ଦିଗରେ ତାଙ୍କୁ କ୍ଷୀଣ ଆଲୋକ ଦେଖାଇ ସାହାଯ୍ୟ କରିଥିଲା । କ୍ରମଶଃ ସାପର ଶକ୍ତି ଶେଷ ହୋଇ ଯାଇଥିଲା । ଚକଡ଼ାଟା ରକ୍ତରେ ବୁଡ଼ିଗଲା । ତା'ପରେ ବିଶାଳ ସର୍ପଟା ନିସ୍ତେଜ ହୋଇ ପଡ଼ିଥିଲା । ତା'ର ପାଟିଠାରୁ ପେଟ ପର୍ଯ୍ୟନ୍ତ ଦୁଇ ଫାଳ ହୋଇ ଯାଇଥିଲା ଠିକ୍ ପନିକିରେ ଲମ୍ବା ଛତିନ୍ଦ୍ରା (ଗୟଳ କଲରା) ଅଗ୍ରଭାଗରୁ ଉଦର ପର୍ଯ୍ୟନ୍ତ ଦୁଇ ଫାଳ ହେବା ଭଳି । ସାହାସୀ ସରୋଜ ବାବୁ ଅନାୟସରେ ତାଙ୍କର ପାଦ ଯୁଗଳକୁ ଅଜଗରର ଉଦର ଭିତରୁ ଉଦ୍ଧାରକରି ଦେଖନ୍ତି କେବଳ ରକ୍ତ । ରୁଧିର ସ୍ନାନ କରିଛି ତାଙ୍କର ଆପଦ ଅଣ୍ଟା । କେଉଁଠି କ୍ଷତ ଚିହ୍ନ ନାହିଁ, ନାହିଁ ମଧ ଯନ୍ତ୍ରଣା । ସେ ଏଥର ପ୍ରକୃସ୍ଥିତ ହେଲେ, ଥରିଲା ଦେହକୁ ଦମ୍ଭ କରି ଛିଡ଼ା ହେଲେ ଏବଂ ବ୍ୟାଗରୁ ଗାମୁଛା କାଢି ଆଗେ ଛୁରିକୁ ପୋଛି ଚୁମା ଦେଲେ । ଛୁରିକୁ ପାଖରେ ରଖିଥିଲେ ବୋଲି ସିନା ଜୀବନ ରକ୍ଷା କଲେ ! ଗାମୁଛାରେ ରକ୍ତ ଭିଜା ଗୋଡ଼କୁ ପୋଛିଲେ । ପୋଡ଼ା ଲଣ୍ଠନକୁ ଉଠାଇ ସାଇକଲ ଯାନର ଯଥା ସ୍ଥାନରେ ଝୁଲାଇଲେ ଏବଂ ସାଇକଲକୁ ଗଡ଼ାଇ ଗଡ଼ାଇ ଗାଁ ଆଡ଼କୁ ଚାଲିଲେ । ଗାଁ ସେଠୁ ଦୁଇ ମାଇଲି ଦୂର ହେବ । କାହିକି କେଜାଣି ସବୁ ଠିକ୍ ଥିଲେ ମଧ ସେ ସାଇକଲ ଚଢ଼ି ପାରି ନଥିଲେ । ଗୋଟିଏ ମହା ବିପଦରୁ ବର୍ତ୍ତି ଯାଇଛନ୍ତି ଠିକ୍ ଯମ ମୁହଁରୁ ରକ୍ଷା ପାଇଲା ପରି । ଈଶ୍ୱରଙ୍କୁ ପ୍ରଣାମ କଲେ । ବାଙ୍କୀର ଅଧିଷ୍ଠାତ୍ରୀ ଦେବୀ ଚର୍ଚ୍ଚିକାଙ୍କୁ ମନେ ମନେ ଧନ୍ୟବାଦ ଦେଲେ ତାଙ୍କର ଅସୀମ କରୁଣା ପାଇଁ । ଦେବୀକୃପା ନଥିଲେ ଏପରି ନିଶ୍ଚିତ ମରଣରୁ କିଏ କଣ ରକ୍ଷାପାଏ ?

କିନ୍ତୁ ସବୁଠୁ ଆଶ୍ଚର୍ଯ୍ୟର ବିଷୟ, ସ୍ଥଳର ଏହି ବୃହତ୍ତମ ସାପ ବିଷଶୂନ୍ୟ । ବର୍ମା ଦେଶର କିମ୍ବଦନ୍ତୀରୁ ଜଣାଯାଏ, ପ୍ରଥମେ କେବଳ ଅଜଗରର ବିଷଥିଲା । ଏ ଯୁଗର ବିଷଧର ସାପମାନେ ଅଜଗର ଠାରୁ ବିଷ ନେଇ ବିଷାକ୍ତ ହୋଇଛନ୍ତି । ଏହି ଅଜଗର ଇବ୍ ନାମକ ନାରୀକୁ ଧରି ଏକ ଗୁହାକୁ ନେଇ ଯାଇଥିଲା ଏବଂ ତାକୁ କହିଲା ତା ଦେହ ଉପରେ ଚିତ୍ର ତିଆରି କରିବାକୁ । ସେହି ଚିତ୍ର ଆଜି କାଲି ଅଜଗର ଦେହ ଉପରେ ଦେଖିବାକୁ ମିଳେ ବୋଲି ବିଶ୍ୱାସ । ସେହି ଅଜଗରର ବିଷ ଏତେ ପ୍ରଖର ଥିଲା ଯେ ଯଦି ରାସ୍ତା ଉପରେ ପଡ଼ିଥିବା କୌଣସି ମନୁଷ୍ୟର ପାଦ ଚିହ୍ନକୁ ସେ କାମୁଡ଼ି ଦିଏ ତେବେ ସେହି ମନୁଷ୍ୟ ଯେତେ ଦୂରରେ ଥାଉ ନା କାହିଁକି ନିଶ୍ଚୟ ମରିଯିବ । ମନୁଷ୍ୟର ମୃତ୍ୟୁ ସେହି ଅଜଗର ନିଜ ଆଖିରେ ଦେଖିପାରି ନଥିଲା । ତେଣୁ ସେ ଗୋଟିଏ କୁଆକୁ କହିଲା ତୁ ଯା ଦେଖିଆ ଏହି ପାଦ ଚିହ୍ନକୁ ମୁଁ କାମୁଡ଼ି ବାରୁ କୈଣସି ଲୋକ ମରିଛନ୍ତି କି ନାହିଁ । କୁଆ ଗୋଟିଏ ଘର ନିକଟକୁ ଯାଇ ଦେଖିଲା ସେଠି ଲୋକମାନେ ଖୁବ୍ ନାଚଗୀତ ମଉଜ କରୁଛନ୍ତି । ପ୍ରକୃତରେ ଅଦିମ ଅଧିବାସୀମାନେ

କେହି ମରିଗଲା ପରେ ତାଙ୍କ ସମାଜିକ ପ୍ରଥା ଅନୁଯାୟୀ ନାଚଗୀତ କରନ୍ତି । କୁଆ ଅଜଗରକୁ କହିଲା ଯେ କ୍ରନ୍ଦନ ପରିବର୍ତ୍ତେ ସେମାନେ ଆନନ୍ଦ କରୁଛନ୍ତି । ଏହା ଶୁଣି ଅଜଗର ବହୁତ ରାଗିଗଲା । ସେ ଗୋଟିଏ ଗଛ ଉପରେ ଚଢ଼ିଯାଇ ନିଜର ବିଷ ସଂପୂର୍ଣ୍ଣ ଭାବେ ଉଦ୍‌ଗୀରଣ କରିଦେଲା । ଏହି ବିଷକୁ ଅନ୍ୟ ସରୀସୃପମାନେ ଖାଇଲେ ଯାହା ଫଳରେ ସେମାନେ ବିଷଧର ହୋଇଗଲେ । ସେହି ଗଛ ବି ଏକ ବିଷାକ୍ତ ପ୍ରାଣଘାତୀ ଗଛ ହୋଇଗଲା ସେଥିପାଇଁ ଆଦିବାସୀମାନେ ତାଙ୍କ ତୀରର ମୁନକୁ ବିଷାକ୍ତ କରିବା ଲାଗି ସେହି ଗଛର ରସକୁ ପ୍ରୟୋଗ କରନ୍ତି । ଅଜଗର ଅନ୍ୟ ଜୀବମାନଙ୍କୁ ଉପଦେଶ ଦେଇ ଶପଥ କରାଇ ଦେଲା ଯେ ଯେତେବେଳେ ପର୍ଯ୍ୟନ୍ତ ମନୁଷ୍ୟ ତମକୁ ଆଘାତ ନ କରିଛି ସେତେକ୍ଷଣ ପର୍ଯ୍ୟନ୍ତ ତୁମେ ତାକୁ କାମୁଡ଼ିବ ନାହିଁ କିନ୍ତୁ ପାଣି ସାପ ଓ ବେଙ୍ଗ କହିଲେ ସେମାନେ ଯାହାକୁ ଚାହିଁବେ ତାକୁ କାମୁଡ଼ିବେ । ଏହା ଶୁଣି ଅଜଗର ସେମାନଙ୍କୁ ପାଣିରେ ଠେଲିଦେଲା ଯ'ଦ୍ୱାରା ସେମାଙ୍କର ବିଷ ପାଣିରେ ଧୋଇ ହୋଇଗଲା ଏବଂ ସେମାନେ ବିଷହୀନ ହୋଇଗଲେ ।

ପରିତାପର ବିଷୟ, କାହାଣୀ କିମ୍ବଦନ୍ତୀ କାରନାମାପୂର୍ଣ୍ଣ ବୃହତ୍ ଜୀବଟିର ଜୀବନ ଆଜି ଅତ୍ୟନ୍ତ ସଙ୍କଟପୂର୍ଣ୍ଣ । ଅନ୍ୟ ବିପନ୍ନ ବନ୍ୟଜନ୍ତୁ ବାଘ ହାତୀ ଇତ୍ୟାଦିଙ୍କର ସଂରକ୍ଷଣ ଓ ପରିବୃଦ୍ଧି ପାଇଁ ଯେପରି ତତ୍ପରତା ଦେଖାଯାଉଛି ଅଜଗର ପାଇଁ ସେମିତି ଉତ୍ସାହ ଉଦ୍ୟମ ଦେଖାଯାଉନାହିଁ, ସେମାନଙ୍କ ସଂଖ୍ୟାନ ବିଭାଗୀୟ କର୍ତ୍ତୃପକ୍ଷଙ୍କ ପାଖେ ସଂପୂର୍ଣ୍ଣ ନାହିଁ । ନିବିଡ଼ତା ଶୂନ୍ୟ ଅରଣ୍ୟ, ଦ୍ରୁତ ଜଙ୍ଗଲକ୍ଷୟ, ଘୋର ଖାଦ୍ୟାଭାବ ଆଜି ବଣର ବାଦଶାହ ନିଶ୍ଚିହ୍ନତାର ଦ୍ୱାର ଦେଶରେ ।







# ଜଙ୍ଗଲର ରାଜକୁମାର

ମାର୍ଜାର ସମାଜର ତୃତୀୟ ସ୍ଥାନର ବଳବାନ୍ ପ୍ରାଣୀ ହେଉଛି ଚିତାବାଘ ବା କଲରାପତ୍ରିଆ ବାଘ। ଯଦି ବାଘ ସିଂହଙ୍କୁ ଜଙ୍ଗଲର ରାଜା ବୋଲାଯିବ, ଚିତାବାଘ ରାଜକୁମାର ପଦବାଚ୍ୟ। ହିନ୍ଦୀରେ ଏହାକୁ କେନ୍ଦୁଆ, ଚିତା, ଚିତାବାଘ; ତାମିଲରେ ଚିରୁଥାଇ; ତେଲୁଗୁରେ ଚିନାପୁଲି; ମଲୟାଲାମରେ ପୁଲିପୋଲି, ବର୍ମାରେ ଥିଟ୍, ଇଂରାଜୀରେ ଲିଓପାର୍ଡ ବା ପାନ୍ଥର ବା ଜାଗୁଆର ଏବଂ ଏହାର ବୈଜ୍ଞାନିକ ନାମକରଣ ପାନ୍ଥେରା ପାରାଡସ୍ ହୋଇଅଛି। ଓଡ଼ିଶାରେ ଏହାକୁ କଲରାପତ୍ରିଆ ବାଘ କହିବାର କାରଣ ଯେ ଏହା ଦେହରେ ଛୋଟ ଛୋଟ କଲାରାପତ୍ର ପରି ଫିକା ହଳଦିଆ, ଭେଲଭେଟ ମସୃଣ ଲୋମଶ ଚମଡ଼ାରେ କଳା କଳା ଦାଗ ଥାଏ, କିନ୍ତୁ ଦାଗଗୁଡ଼ିକ ଅପେକ୍ଷାକୃତ ଅଣ୍ଡାକୃତି, ସାନବଡ଼ ଛାପଛାପିଆ । ଯଦି ସାଧାରଣରେ ଏହାକୁ ଚିତାବାଘ ବୋଲି ନାଂରଣ କରନ୍ତି, କିନ୍ତୁ ଚିତାବାଘ ଆଉ ଭାରତରେ ନାହାନ୍ତି। ଅଧୁନା ଏହା ଦକ୍ଷିଣ ଆଫ୍ରିକାରେ ବହୁଳ ଭାବେ ଦୃଶ୍ୟମାନ। ଚିତାବାଘ କଲରାପତ୍ରିଆ ବା ଲିଓପାର୍ଡ ଠାରୁ ଅପେକ୍ଷାକୃତ ପତଳା, କିନ୍ତୁ ଗୋଡ଼ ଲମ୍ବା ଯିଏ ଘଣ୍ଟାକୁ ୧୦୦ କିମି ବେଗରେ ଦୌଡ଼ିପାରେ। ବନ୍ୟପ୍ରାଣୀଙ୍କ ମଧ୍ୟରେ ସବୁଠୁ ଦ୍ରୁତଗାମୀ ଦୌଡ଼ାଳି ପ୍ରାଣୀ। କିନ୍ତୁ କଲରାପତ୍ରିଆ ବାଘର ବେଗ ଘଣ୍ଟା ପ୍ରତି ୬୦ରୁ ୭୦ କି.ମି.। ଦକ୍ଷିଣ ଆମେରିକାରେ ଏହାକୁ ଜାଗୁଆର, ଆମେରିକାରେ ପୁମା ଭାବେ ଜଣାଶୁଣା। ଏକ ମାଲବୁହା ରେଳ ବଗି (୭ ଫୁଟ ଉଚ୍ଚ ଓ ୨୦ ଫୁଟ ଲମ୍ବ)କୁ ଅନାୟାସରେ ଡେଇଁପାରିବାର ନଜିର ଅଛି। କଲରାପତ୍ରିଆ ବାଘ ସମଗ୍ର ଭାରତ ଭୂଖଣ୍ଡ ବ୍ୟତୀତ ବର୍ମା ଓ ନିମ୍ନ ପାର୍ବତ୍ୟ ଭୂମି ଏବଂ ଦକ୍ଷିଣରେ ମହୀଶୁର ପର୍ଯ୍ୟନ୍ତ ଏମାନଙ୍କ ବାସସ୍ଥଳ। ଆଫ୍ରିକୀୟମାନେ ଏହାକୁ ରାଜକୀୟ ପ୍ରାଣୀ ବୋଲି ଆଖ୍ୟା ଦେଇଛନ୍ତି। ଆମ ଉତ୍ତର ପ୍ରଦେଶରେ ଏହାକୁ ରାଜ୍ୟ ପଶୁର ମାନ୍ୟତା ଦିଆଯାଇଛି।

ଏକଦା ସିନ୍ଧୁ ପ୍ରଦେଶ, କାଶ୍ମୀର, ବେଲୁଚିସ୍ଥାନ, ନେପାଳ ଓ ସିକିମ୍‌ରେ କଲରାପତ୍ରିଆ ବାଘମାନେ ସେମାନଙ୍କ ଜାତିର ଏକ ବିଶେଷ ଉପଜାତି ଭାବେ ପରିଗଣିତ ହେଉଥିଲେ। ସମଗ୍ର ଏସିଆ ମହାଦେଶରେ ଲିଓପାର୍ଡ ବାଘର ଏଗାରଟି ଉପଜାତି ଉପଲବ୍ଧ ହେଉଥିବା ବିଷୟ 'ପୋଲକ' ନାମଧାରୀ ଜଣେ ପ୍ରାଣୀ ବିଜ୍ଞାନୀ 'ଜର୍ଣ୍ଣାଲ ଅଫ ବମ୍ବେ ନାଚୁରାଲ ହିଷ୍ଟ୍ରି ସୋସାଇଟି'ରେ ପ୍ରକାଶ କରିଛନ୍ତି ଓ ସେମାନଙ୍କୁ ମଧ୍ୟ ନାମିତ କରିଛନ୍ତି। ଏଥିରୁ ତିନୋଟି ଉପଜାତି ଭାରତବର୍ଷରେ ଦେଖାଯାଆନ୍ତି ଓ ଓଡ଼ିଶାର କଲରାପତ୍ରିଆ

ବାଘ ତହିଁରୁ ଅନ୍ୟତମ। ପୁରାତନ ଅତୀତରେ ଏହି ବାଘମାନେ ୟୁରୋପରେ ବାସ କରୁଥିଲେ, କିନ୍ତୁ ଏବେ ଆଉ ନାହାନ୍ତି।

ବାଘ କିମ୍ବା ସିଂହ ଅପେକ୍ଷା କଲରାପତ୍ରିଆ ବାଘର ଆକୃତି ଛୋଟ ଓ ଏହା ପ୍ରଚଣ୍ଡ ଆଶୁ ପ୍ରତିକ୍ରିୟାଶୀଳ ପ୍ରାଣୀ, କୌଣସି ବିରକ୍ତିକର ପରିସ୍ଥିତିରେ ସେ ନୃଶଂସ ଭାବେ ଲଢ଼େଇ କରିବାକୁ ତତ୍ପର ହୋଇଉଠେ। ଆଂଶିକ ମରୁପ୍ରାନ୍ତୀୟ ଜଳବାୟୁ କିମ୍ବା ବୁଦୁବୁଦିକିଆ ପାହାଡ଼ିଆ ଅଞ୍ଚଳରେ ଏହି ବାଘମାନେ ଅପେକ୍ଷାକୃତ ବଡ଼ ଆକୃତିର ହୋଇଥାନ୍ତି। ସେମାନେ ଯେ କୌଣସି ସ୍ଥାନରେ ରହିପାରନ୍ତି। ଗଛ, ପଥର କୋରଡ଼, ଲଣ୍ଡା ପାହାଡ଼ ଓ ସମତଳ ଅଞ୍ଚଳରେ ଅନାୟାସରେ ବସବାସ କରିପାରନ୍ତି। ଏପରିକି ପାହାଡ଼ ଗଛକୁ ଲାଗି ଗାଁମୁଣ୍ଡ ନିରୋଳା ଟିଣଛପର ଆଟୁ ଉପରେ ରହି ଛୁଆଜନ୍ମ କରିବାର ନଜିର ରହିଛି, ଯେଉଁ ଆଟୁଘରେ ଆମ ଜଙ୍ଗଲ ପରିଭ୍ରମଣରେ ସପ୍ତାହ ସପ୍ତାହ ବିତାଇଥାଉ (ବି.ଦ୍ର.-ଜଙ୍ଗଲର ଜମାନବନ୍ଦୀ ପୃ.୧୫୨-୧୬୩, ଏବଂ ୱାଇଲ୍ଡ ମିରର ପୃ.୨୧୩-୨୨୬)।

ଗୋଟିଏ ପୂର୍ଣ୍ଣ ବୟସ୍କ ଅଣ୍ଡିରା କଲରାପତ୍ରିଆ ବାଘର ହାରାହାରି ଶରୀରର ଦୈର୍ଘ୍ୟ ୨୨୫ସେ.ମି. ଏବଂ ବାଘୁଣୀର ଦୈର୍ଘ୍ୟ ଏହାଠାରୁ ପ୍ରାୟ ୩୦ସେ.ମି. କମ୍। ବାଘର ଓଜନ ହାରାହାରି ୮୦କି.ଗ୍ରା. ଥିବାବେଳେ ବାଘୁଣୀ ୭୦ କି.ଗ୍ରା. ଏବଂ ଲୋମସ ଲାଞ୍ଜ ଦେହ ଲମ୍ବର ପ୍ରାୟ ଅଧା। ଏମାନଙ୍କ ଋତୁର ନିର୍ଦ୍ଦିଷ୍ଟ ସମୟ ନାହିଁ, ସବୁ ସମୟରେ ପ୍ରଜନନକ୍ଷମ। ଅଢ଼େଇ ବର୍ଷର ବାଘୁଣୀ ଗର୍ଭଧାରଣ କରିପାରେ ଏବଂ ଗର୍ଭଧାରଣ ସମୟ ୯୦ରୁ ୧୦୦ ଦିନ ହୋଇଥାଏ ଏବଂ ଥରକେ ୨ରୁ ୪ ଛୁଆ ଜନ୍ମ କରନ୍ତି। ଛୁଆମାନେ ୬ ମାସ ପର୍ଯ୍ୟନ୍ତ ମା' ପାଖରେ ଲାଳିତ ପାଳିତ ହୁଅନ୍ତି, ଶିକ୍ଷାର୍ଜନ କରନ୍ତି। ଏମାନେ ନିଃସଙ୍ଗ ଜୀବନଯାପନ କରନ୍ତି, ଏବଂ ସହବାସ ସମୟରେ ଏକାଠି ରହନ୍ତି ଏବଂ ଯୌନ ଉତ୍ତେଜିତ ସମୟ ୮ ଦିନ ରହିଥାଏ। ଏହି ସମୟରେ ୪/୫ ଥର ଶାରୀରିକ ମିଳନ ହୋଇଥାଏ। ସେମାନଙ୍କ ଆୟୁକାଳ ୧୮ରୁ ୨୦ ବର୍ଷ। ଜୀବନକାଳରେ ୭/୮ ଛେକ ଛୁଆ ଦିଅନ୍ତି।

ଚିତାବାଘମାନେ ସାବଧାନ, ଚତୁର ଓ ଧୂର୍ତ୍ତ, ପ୍ରବୃତ୍ତିରେ ଚୌର, ଲୁଚିବା କୌଶଳଟି ବେଶ୍ ଜଣା। ଜଙ୍ଗଲରେ ରାତିରେ ତାର ଚକ୍ ଚକ୍ ନୀଳାଭ ଆଖିରେ ସର୍ଚ୍ଚଲାଇଟ୍ ପଡ଼ିଲେ ଆଖି ଚଟାପଟ୍ ବୁଜିଦିଏ ଏବଂ ଶିକାର ତାକୁ ଠାବ କରିବାକୁ କଷ୍ଟକର ହୋଇପଡ଼େ। ତୃଣଭୋଜୀ ପଶୁ, ମାଙ୍କଡ଼, ବଡ଼ ବଡ଼ ମୂଷା, ଗୋଧି, ଝିଙ୍କ, ବେଙ୍ଗ, କଙ୍କଡ଼ା, ମାଛ, ବଡ଼ ବଡ଼ ପକ୍ଷୀ ଆଦି ତାର ଆହାର । କୁହାଯାଏ କାରିବାର ଚିତାବାଘ କେବଳ ଟିଲାପିଆ ମାଛ ଖାଇ ବଞ୍ଚେ। କିନ୍ତୁ ଥରେ ମଣିଷ ମାଂସ ମୁହଁରେ ଲାଗିଲେ ସେ ଦିନବେଳେ ମଧ୍ୟ ମଣିଷ ଉଠାଇ ନିଏ ଏବଂ ଶିଶୁମାନଙ୍କ ପ୍ରତି ବିଶେଷ ଆକର୍ଷିତ ହୋଇଉଠେ। (ବି.ଦ୍ର.-ଜଙ୍ଗଲର ଜମାନବନ୍ଦୀ ପୃ.୧୫୨-୧୬୩, ଏବଂ ୱାଇଲ୍ଡ ମିରର ପୃ.୨୧୩-୨୨୬)। ଜିମ୍ କରବେଟ ସାହେବ ରୁଦ୍ର ପ୍ରୟାଗ ନରଖାଦକ ଚିତାକୁ ମାରିବା ପାଇଁ ଶତଚେଷ୍ଟା କରିଥିଲେ, କାରଣ ମହାବଳ ବାଘ ପରି ଚିତା ନୀତିନିୟମ ମାନେନାହିଁ। ଚିତା ମଧ୍ୟ ନିଜ ନିଜ ଭିତରେ ଲଢ଼େଇରେ ମୃତ୍ୟୁବରଣ କଲେ ବିଜୟୀ ଚିତା ତାର ମାଂସ ଖାଇଥାଏ। ମୋର ଜଙ୍ଗଲ ଭ୍ରମଣ କାଳରେ ଦେବ୍ରୀଗଡ଼ ବାରପାହାଡ଼ର ଶୀର୍ଷ ଘାଟି 'ଝାମ୍ପି'ରେ ଦୁଇ ଚିତାବାଘ ଲଢ଼େଇରେ ଦୁର୍ବଳ ଚିତାଟା ଗଭୀର

ଟୀକ୍ଷ୍ଣ ବାଙ୍ଫି (କୂପ) ଭିତରେ ଖସି ପଡ଼ିଥିଲା । ତାର ଉଦ୍ଧାର କାହାଣୀ ମୋ ଜଙ୍ଗଲ ଉପନ୍ୟାସ 'ବ୍ୟାଘ୍ର ନିନାଦ'ର ପ୍ରଧାନ ବିଷୟବସ୍ତୁ ।

ଚିତା ଜଣେ କୁଶଳୀ ଗଛ ଚଢ଼ାଳି । ଗଛ ଡାଳରେ ନିଜକୁ ଗୋପନ ରଖେ । ଅଳ୍ପ ଉଚ୍ଚା ଗଛରେ ରହି ତଳେ ଯାଆସ କରୁଥିବା ତୃଣଭୋଜୀ ପଶୁର ତଣ୍ଟିକୁ ତା ତୀକ୍ଷ୍ଣ ଦାନ୍ତରେ ଝାମ୍ପିନିଏ ଏବଂ ତାକୁ ଅକ୍ଳେଶରେ ଭୋଜନ କରେ । ମିଷ୍ଟର ଏସ.ଡାଉନି, ଯେ କି ଟାଙ୍ଗାନିଆର ଅବୈତନିକ ବନ ସଂରକ୍ଷକ ଥିଲେ, ବର୍ଣ୍ଣନା କରିଛନ୍ତି ଯେ, ୧୯୫୩ ମସିହାରେ ଚିତାବାଘ ଗୋଟିଏ ଖୁରା ଜାତୀୟ ମଧ୍ୟମ ପଶୁ (କୁଟ୍ରା)କୁ ଝାମ୍ପିନେଇ ଏକ ମଧ୍ୟମ ଉଚ୍ଚ ଗଛର ଡାଳରେ ରଖିଦେଇଥିଲା ଯାହା ଏକ ସିଂହୀର ଦୃଷ୍ଟିରେ ପଡ଼ିଲା । ଏଥୁଅନ୍ତେ ସିଂହୀ ଗଛ ଚଢ଼ିବାକୁ ଉଦ୍ୟତ ହେଲା । କିନ୍ତୁ ଚିତା ସଂଲଗ୍ନ ଏକ ବଡ଼ ଗଛକୁ ଶିକାରକୁ ଧରି ମାଙ୍କଡ଼ ଭଳି ଡେଇଁପଡ଼ିଲା ଯଦ୍ୱାରା ସିଂହୀ କିଂକର୍ତ୍ତବ୍ୟବିମୂଢ଼ ନିରାଶ ହୋଇ ଫେରିଗଲା । ଏହା ଚିତାବାଘର ସାହସ, ତତ୍ପରତା, କୌଶଳ ଓ ଚଞ୍ଚଳତାର ନିଦର୍ଶନ ନୁହେଁ କି ? ଯଥାର୍ଥରେ ଏହି ଜୀବଟି ଜଙ୍ଗଲର ରାଜକୁମାର । କିନ୍ତୁ ବିଡ଼ମ୍ବନାର ବିଷୟ ଯେ ସବୁ ବନ୍ୟଜନ୍ତୁଙ୍କ ପରି ଦ୍ରୁତ ଜଙ୍ଗଲ କ୍ଷୟ ଓ ଖାଦ୍ୟାଭାବ ଯୋଗୁଁ ଏମାନଙ୍କ ବଂଶ ମଧ୍ୟ ଅବକ୍ଷୟମୁଖୀ ।





# ବିଚିତ୍ରବର୍ଣ୍ଣା ସର୍ପ ସାମ୍ରାଜ୍ୟ

ରାମପୁର ବନାଞ୍ଚଳର ସ୍ଥାନୀୟ ବାସିନ୍ଦାମାନେ ଏକ ଅଜଗର ସାପ ଅଣ୍ଡା ଦେଉଥିବା ଦୃଶ୍ୟ ଦେଖି ବନ ବିଭାଗକୁ ଖବର ଦେଲେ। ସାପମାନଙ୍କ ସହିତ ମିତ ବସିଥିବା ଅବୈତନିକ ସର୍ପବିତ୍ ଶ୍ରଦ୍ଧେୟ ଶୁଭେନ୍ଦୁ ମଲ୍ଲିକ ପହଞ୍ଚି ସାପ ଦେଇଥିବା ୨୬ଟି ଅଣ୍ଡାକୁ କୃତ୍ରିମ ଉପାୟରେ ଛୁଆ ଫୁଟାଇବାର ବ୍ୟବସ୍ଥା କରିଥିଲେ। ଇତିମଧ୍ୟରେ ୩ଟି ଅଣ୍ଡା ଆବଶ୍ୟକ ଉଷ୍ମତା ଓ ଆର୍ଦ୍ରତା ଅଭାବରୁ ନଷ୍ଟ ହୋଇଯାଇଛି ଏବଂ ଅନ୍ୟ ଅଣ୍ଡାଗୁଡ଼ିକରୁ ସାପ ଛୁଆ ଜନ୍ମ ନେଇଛନ୍ତି ଏବଂ ସେମାନଙ୍କୁ ଜଙ୍ଗଲରେ ଛାଡ଼ିଦେବାର ବ୍ୟବସ୍ଥା ହୋଇଛି। ଭଲକଥା। ଏଭଳି ଘଟଣା ରାଜ୍ୟରେ ପ୍ରଥମ ବୋଲି ଦାବି କରାଯାଉଛି। ପୂର୍ବରୁ କୁଆଡ଼େ କେରଳରେ ଇନ୍‌କ୍ୟୁବେଟର ଦ୍ୱାରା କୃତ୍ରିମ ଉପାୟରେ ୨୭ ଅଣ୍ଡାରୁ ଗୋଟିଏ ଅଣ୍ଡା ଫୁଟାଯାଇଥିଲା। ଜନବସତି ଓ ବାସଗୃହମାନଙ୍କରୁ ଅନୁପ୍ରବେଶକାରୀ ମାରାତ୍ମକ ସାପମାନଙ୍କୁ ଧରି ସେମାନଙ୍କ ପ୍ରାକୃତିକ ବାସସ୍ଥଳୀରେ ନେଇ ଛାଡ଼ିବା ଏବଂ ସର୍ପକୁଳ ସଂଖ୍ୟା କ୍ରମଶଃ କମି ଆସୁଥିବା ବେଳେ ଶୁଭେନ୍ଦୁ ବାବୁଙ୍କ ସ୍ୱେଚ୍ଛାକୃତ ଉଦ୍ୟମ ପ୍ରଶଂସନୀୟ।

ମୋର ଅନୁଭୂତିର କଥା କହୁଛି। ଅତୀତରେ ମୋର ବନବୁଲା କାଳରେ ସାପ ଓ ସେମାନଙ୍କ ଅଣ୍ଡା ସଂସ୍ପର୍ଶରେ ଆସିଛି। ମାଈ ଅଜଗର ଓ ଅଧିକାଂଶ ସର୍ପିଣୀ ବସନ୍ତ ଶେଷ ଓ ଗ୍ରୀଷ୍ମଋତୁ ଆରମ୍ଭ ସମୟ ମଧ୍ୟରେ ଅଣ୍ଡା ଦେଇଥାନ୍ତି। ବର୍ଷାଦିନେ ସାପମାନେ ପ୍ରାୟତଃ ଅଣ୍ଡା ଦିଅନ୍ତି ନାହିଁ। ଅଜଗର ଥରକୁ ୨୦ରୁ ୫୦ ଏବଂ ନାଗସାପ ଥରକୁ ୧୦ରୁ ୩୦ ପର୍ଯ୍ୟନ୍ତ ଅଣ୍ଡା ଦେଇଥାଏ। ଅଜଗର ଫମ୍ପା ଗଣ୍ଡି କାଠ, ପଥର ଫାଙ୍କ କିମ୍ବା ଗୁମ୍ଫାରେ ଅଣ୍ଡା ଦେଉଥିଲା ବେଳେ, ନାଗସାପ ଅଳିଆ ଗଦା, ଉଈ ହୁଙ୍କା ଭିତରେ ଅଣ୍ଡାଦେବାକୁ ପସନ୍ଦ କରିଥାଏ। ଅଣ୍ଡାର ଆକୃତି ଓ ଓଜନ ସାପର ଆକାର ଓ ଓଜନ ଉପରେ ନିର୍ଭର କରିଥାଏ। ଅଣ୍ଡାମାନଙ୍କ ରଂଗରେ ମଧ୍ୟ ଭିନ୍ନତା ଥାଏ - କେତେକ ଧଳା, ପାଉଁଶିଆ ଓ ଆଉ

କତେକରେ ଧଳା କଳା ଛିଟ ଦାଗ ଥାଏ ଯେଉଁଥିରୁ ସାପର କିସମ ଜଣାପଡ଼େ। କେତେକ ସାପ ଅଣ୍ଡା ଦେଇ ସାରି ସ୍ଥାନ ଛାଡ଼ି ଚାଲିଯାଉଥିବା ବେଳେ ଆଉ କେତେକ ଅଣ୍ଡାକୁ ଚେକେଇ କରି ଉଷୁମାଇଥାନ୍ତି। ଏହି ସମୟରେ ସାପ ଦେହର ତାପମାତ୍ରା ବାହାର ଅପେକ୍ଷା ୧୦୦ ଡିଗ୍ରୀ ଅଧିକ ହୋଇଥାଏ। ସବୁ ଅଣ୍ଡା ଉପରେ ଏକ ଅଠାଳିଆ ରସ ଥାଏ ଯଦ୍ୱାରା ଗୋଟିଏ ଅଣ୍ଡା ଅନ୍ୟ ଅଣ୍ଡା ସହିତ ଲାଗିରହିଥାଏ। ଅଣ୍ଡାଗୁଡ଼ିକ ଛୁଆ ଫୁଟିବା ପାଇଁ ହାରାହାରି ୨ ମାସ ସମୟ ଲାଗିଥାଏ।

ମୋ ଜୀବଦ୍ଦଶାରେ ୨ ଥର ସାପ ଅଣ୍ଡା ସଂଗ୍ରହ କରି ଛୁଆ ଫୁଟାଇବାର ସୁଯୋଗ ପାଇଛି। ପ୍ରଥମ ଥର ୧୯୭୩ ମସିହାରେ ହୀରାକୁଦ ଜଳ ଭଣ୍ଡାର ମଧ୍ୟରେ ଅବସ୍ଥିତ 'ଦେଶର କୁସର' ପାହାଡ଼ରୁ ୨୦ଟି ଅଜଗର ଅଣ୍ଡା ପାଇଥିଲୁ ଯେତେବେଳେ ମା' ସାପ ପାଖରେ ନ ଥିଲା କିମ୍ବା ବାହାରକୁ ଚରିବାକୁ ଚାଲିଯାଇଥିଲା। ଆଉଥରେ ୧୯୭୫ ମସିହାରେ ବଡ଼ରମ୍ଭା ଅଭୟାରଣ୍ୟରୁ ଶୁଖିଲା ବାଉଁଶ ଗଦା ଭିତରୁ ୧୦ଟି ନାଗସାପ ଅଣ୍ଡା ପାଇଥିଲୁ। ଅଣ୍ଡାଗୁଡ଼ିକ କେତେ ଦିନର ଜାଣିବା ସମ୍ଭବ ନ ଥିଲା। ମୋର ଜଙ୍ଗଲ ଗୁରୁ ପ୍ରେମ୍ ଥିଲେ ମୋ ଗାଇଡ୍। ଅଣ୍ଡାଗୁଡ଼ିକ କୃତ୍ରିମ ଉପାୟରେ ଛୁଆ ଫୁଟାଇବା ଥିଲା ଆମର ଲକ୍ଷ୍ୟ। ପରୀକ୍ଷାମୂଳକ ଭାବେ ଆମ ଦେଶୀ ଉପାୟକୁ ଆପଣେଇଲୁ। ଗୋଟିଏ ଅଧା ବାଲିପୂର୍ଣ୍ଣ ବାଉଁଶ ଟାଙ୍ଗଡ଼ାରେ ଅଣ୍ଡାଗୁଡ଼ିକ ଶୁଆଇ ରଖିଲୁ ଏବଂ ଅଣ୍ଡାର ଦୁଇ ତୃତୀୟାଂଶ ବାଲି ଭିତରେ ପୋତିରହିଲା। ତା ଉପରେ ଏକ ଇଞ୍ଚ ବହଳର ସରୁ ନଡ଼ା ବା ପାଳ ଘୋଡ଼ାଇ ଦିଆଗଲା। ତତ୍ପରେ ଏକ ସରୁ ତଉଲିଆକୁ ଏକ ଘଣ୍ଟା ଖରାରେ ଶୁଖାଇ ଟାଙ୍ଗଡ଼ାକୁ ଘୋଡ଼ାଇ ଦିଆଗଲା ଏବଂ ସବୁଦିନ ସକାଳେ ଅଣ୍ଡାସ୍ଥଳକୁ ପରୀକ୍ଷା କରାଗଲା। ଏହିପରି ଉପାୟରେ ଆମ୍ଭେ ୮ଟି ଅଜଗର ଛୁଆ ଏବଂ ୫ଟି ନାଗସାପ ଛୁଆ ଉତ୍ପନ୍ନ କରିପାରିଥିଲୁ ଏବଂ ୫/୭ ଦିନ ପରେ ପୁଣି ସେଗୁଡ଼ିକ ନେଇ ଯଥା ଜଙ୍ଗଲରେ ଛାଡ଼ିଥିଲୁ। ସେମାନେ ସ୍ତନ୍ୟପାୟୀ ଜୀବ ନୁହନ୍ତି। ମା' ଉପରେ ନିର୍ଭର କରନ୍ତି ନାହିଁ। ଜନ୍ମ ପରେ ପରେ କ୍ରିୟାଶୀଳ ହୋଇଉଠନ୍ତି; ପୋକ ଜୋକ, କୀଟ ପତଙ୍ଗ ଖାଇ ବଞ୍ଚନ୍ତି। ଆମ ପରୀକ୍ଷା ଥିଲା ଏକ ଜିଜ୍ଞାସା, ଆତ୍ମାନନ୍ଦର ଖୋରାକ। କିଏ ଜାଣିଥିଲା ପରମେଶ୍ୱର ମୋ ହାତରୁ ବନ୍ଧୁକ ଛଡ଼ାଇ ନେଇ କଲମ ଧରାଇ ଦେବେ!

ତେବେ କେତେକ କ୍ୱଚିତ୍ ସାପ ଅଛନ୍ତି ଯେଉଁମାନେ ସିଧାସଳଖ ଛୁଆ ଜନ୍ମ କରନ୍ତି। ଏହି ଜାତୀୟ ସାପ ବା ସରୀସୃପକୁ ଓଭୋଭିପାରସ ବୋଲାଯାଏ। ଏମାନଙ୍କ ପୁରୁଷ ଓ ସ୍ତ୍ରୀର ମିଳନରେ ପ୍ରଥମେ ଅଣ୍ଡା ତିଆରି ହୋଇଥାଏ ମା' ଗର୍ଭରେ। ସେ ଅଣ୍ଡା ମା' ଗର୍ଭରୁ ପଦାକୁ ବାହାରି ନ ଆସି ତାରି ଭିତରେ ଉଷୁମ ହୋଇଥାଏ ଓ ଛୁଆଗୁଡ଼ିକ ଫୁଟିଲେ ପଦାକୁ ଚାଲିଆସନ୍ତି। ଯେହେତୁ ସେମାନେ ଅଣ୍ଡାରୁ ଜାତ ସେମାନଙ୍କୁ 'ଅଣ୍ଡଜ' ବୋଲାଯାଏ। ଯେଉଁ ପ୍ରାଣୀମାନେ ଗର୍ଭଧାରଣ କରି ସିଧାସଳଖ ଛୁଆ ଦିଅନ୍ତି ସେମାନଙ୍କୁ ଜନ୍ମଜ କୁହାଯାଏ।

ବିଶେଷଜ୍ଞମାନେ ମତ ଦିଅନ୍ତି, କୌଣସି ଜୀବ ବିଷହୀନ ନୁହନ୍ତି। ଏପରିକି ମଣିଷ କାହାକୁ ଦାନ୍ତରେ କାମୁଡ଼ି ଦେଲେ ବିଷାକ୍ତ ହୋଇଥାଏ। ବିରାଡ଼ି, ମୂଷା, ମାଙ୍କଡ଼ ଆଦି କେତେକ ଜୀବ ମଣିଷକୁ କାମୁଡ଼ିଲେ ମଣିଷ ମଧ୍ୟ ମୃତ୍ୟୁମୁଖରେ ପଡ଼ିଥାଏ। ପ୍ରତ୍ୟେକ ଜୀବନ ନିଜ ନିଜ ଆତ୍ମରକ୍ଷା ଓ ଆକ୍ରମଣ ତଥା ପ୍ରତି ଆକ୍ରମଣ ସକାଶେ ପ୍ରକୃତି ପ୍ରଦାନ କରିଛି ଅସ୍ତ୍ର। କାହାର ଅସ୍ତ୍ର ମାରାତ୍ମକ,

ପ୍ରାଣଘାତୀ ଓ ଖୁବ୍ ଉତ୍କଟ ତ ଆଉ କାହାର ସାମାନ୍ୟ, ନଗଣ୍ୟ ଓ କେବଳ ଆତ୍ମରକ୍ଷା ପାଇଁ ଉଦ୍ଦିଷ୍ଟ। କେବଳ ଦାନ୍ତ ଥିଲେ ଯେ ବିଷଧର ସାପ ତାହା ନୁହେଁ। ଯେଉଁ ସାପର ବିଷଗ୍ରନ୍ଥୀ ଓ ବିଷସ୍ଥଳୀ ଅଛି, ସେ ମାତ୍ର ବିଷଧର ହୋଇଥାଏ। ଅଜଗର ସାପ ଏତେ ବୃହତ୍ ହେଲେ ମଧ ତାର ବିଷସ୍ଥଳୀ ଓ ବିଷଗ୍ରନ୍ଥୀ ନାହିଁ। ପ୍ରକୃତି-ସ୍ରଷ୍ଟା କାହାକୁ କ'ଣ ଦାନ ଦେଇଛି ଏବେ ବି ରହସ୍ୟମୟ ରହିଛି। ସାଧାରଣ ସାପର ବିଷ ବା ପାଟିର ଲାଳର ରଙ୍ଗ ପାଉଁଶିଆ ହୋଇଥାଏ ଯାହାର କୌଣସି ସ୍ୱାଦ ନ ଥାଏ। କିନ୍ତୁ ତମ୍ପ, ଗୋଖର ନାଗ ସାପର ବିଷ ଲଙ୍କା ପରି ରାଗଯୁକ୍ତ ଅଟେ।

ଆରବ ଦେଶରେ ଗୋଟିଏ ସାପୁଆ ଜାତି ବାସ କରୁଥିଲେ, ଯେଉଁମାନେ ଜାଣିଶୁଣି ସାପକୁ ତାଙ୍କ ଦେହରେ କାମୁଡ଼ିବାକୁ ଦେଉଥିଲେ। ଏହାଦ୍ୱାରା ବିଷର କୌଣସି ପ୍ରଭାବ ତାଙ୍କ ଉପରେ ପଡୁନଥିଲା। ଏହି ଜାତିର ପ୍ରତିଷ୍ଠାତା ଥିଲେ 'ସିଡ୍‌ନାଇଜର'। ଏକଦା ସେ ତାଙ୍କ ଅନୁଚରମାନଙ୍କ ସହିତ ମରୁଭୂମି ଦେଇ ଦୂରସ୍ଥାନକୁ ସାପ ଧରିବାକୁ ଯାଉଥିଲେ। କିଛି ସମୟ ପରେ ଅନୁଗତମାନଙ୍କୁ ଭୋକ ଲାଗିବାରୁ ସେମାନେ ଖାଇବା ପାଇଁ ଏକ ସଙ୍ଗରେ ଚିତ୍କାର କଲେ। ସେମାନଙ୍କ ପାଟି ଶୁଣି ସେ ବିରକ୍ତ ହୋଇ ତାଙ୍କ ଆରବୀ ଭାଷାରେ 'କୁଲସମୀ' ବୋଲି କହିଲେ ଯାହାର ଅର୍ଥ ହେଉଛି 'ବିଷ ଖାଅ'। ସେଇ ଦିନଠୁଁ ସେମାନେ ବିଷଧର ସାପକୁ ଧରି ଖାଇବାକୁ ଆରମ୍ଭ କଲେ ଯେଉଁଥିପାଇଁ ସେମାନଙ୍କ ସନ୍ତାନବର୍ଗ ସାପ ବିଷରୁ ମୁକ୍ତ। ମାତ୍ରା ପରିମାଣରେ ବିଷ ଖାଉଥିବା ଲୋକ ଏହାକୁ ପୁଷ୍ଟିକର, ବଳ ପ୍ରଦାୟକ, ହଜମ ସହାୟକ ବସ୍ତୁ ବୋଲି ବିଚାର କରନ୍ତି। ଅଫିମ ଆଉ କଣ ? ହୁଏତ ଏକ ପ୍ରକାର ବିଷ, ଶକ୍ତି ପ୍ରଦାୟକ, କିନ୍ତୁ ମାତ୍ରାଧିକ ଖାଇଲେ ପ୍ରାଣଘାତକ ହୋଇଥାଏ।

ପ୍ରତ୍ୟେକ ବିଷଧର ସାପର ଥଳୀରେ କିଛି ପରିମାଣରେ ବିଷ ଥାଏ, କିନ୍ତୁ ସାପ ଚୋଟ ମାରିଲା ପରେ ବିଷସ୍ଥଳୀ ଖାଲି ପଡ଼ିଯାଏ ଓ ପୁନଶ୍ଚ ବିଷ ସୃଷ୍ଟି ହେବା ପାଇଁ ସମୟ ଲାଗେ। ଏହି ସମୟରେ ସାପ କାମୁଡ଼ିଲେ ଦନ୍ତାଘାତ ଯୋଗୁଁ ଖଣ୍ଡିଆ ହୋଇଥାଏ ସତ, କିନ୍ତୁ ବିଷର ପ୍ରଭାବ ପଡ଼ି ନଥାଏ। ଏଣୁ ପ୍ରତ୍ୟେକ ସାପ କାମୁଡ଼ା ବ୍ୟକ୍ତି ଯେ ମରିଯାନ୍ତି ଭାବିବା ଭ୍ରମାତ୍ମକ। ଦାନ୍ତରେ ସାପ ଖାଦ୍ୟ ଚୋବାଇ ଖାଇ ନ ଥାଏ। ସେ ଶିକାରକୁ ସମ୍ପୂର୍ଣ୍ଣ ଭାବେ ଗିଳିଦିଏ। ବେଳେ ବେଳେ ତା'ଠୁଁ ବଡ଼ ଜନ୍ତୁକୁ ଗିଳିପାରେ। ସେତେବେଳେ ତାର ମୁହଁ ଖାଦ୍ୟନଳୀ ଓ ପାକସ୍ଥଳୀ ବେଲୁନ ପରି ଫୁଲିଯାଏ। କିନ୍ତୁ ନିଃଶ୍ୱାସ ପ୍ରଶ୍ୱାସ ନେବାରେ ଅସୁବିଧା ହୁଏ ନାହିଁ। ଏହିପରି ଅସ୍ୱାଭାବିକ ପରିସ୍ଥିତିରେ ସାପର ଶ୍ୱାସନଳୀ ପାଟିର ବାହାରକୁ ଚାଲିଆସିଥାଏ। ତେଣୁ ବାୟୁ ସିଧାସଳଖ ତାର ଫୁସ୍‌ଫୁସ୍‌କୁ ଚାଲିଯାଏ।

ଅଧୁନା ପୃଥିବୀରେ ପ୍ରାୟ ୧୮୦୦ ପ୍ରଜାତିର ସାପ ଅଛନ୍ତି ଏବଂ ସେଥି ମଧ୍ୟରୁ ୧୫୦୦ ଜାତିର ସାପ ଭାରତରେ ଦେଖାଯାଆନ୍ତି। ତନ୍ମଧ୍ୟରୁ ମାତ୍ର ୭୪ ଜାତିର ସାପ ବିଷଧର। ଆମ ପୁରାଣ ମତରେ ଦକ୍ଷପ୍ରଜାପତିଙ୍କ କନ୍ୟା ଏବଂ କଶ୍ୟପ ମୁନିଙ୍କ ଏକତମା ପତ୍ନୀ କଦ୍ରୁଙ୍କ ଗର୍ଭରୁ ସାପମାନେ ଜାତ ହୋଇଥିଲେ। ନାଗରାଜ ବାସୁକୀ ସହସ୍ର ଫେଣାଧାରୀ, ପୃଥିବୀକୁ ଟେକି ଧରିଛନ୍ତି। ଅୟୁତ ଫେଣାଧାରୀ ଅନନ୍ତ ଭଗବାନ ବିଷ୍ଣୁଙ୍କର ଶଯ୍ୟାରୂପେ କ୍ଷୀର ସାଗରରେ ଭାସମାନ। ଭାଷାକୋଷ ଅନୁଯାୟୀ ରାଜକବି କୃଷ୍ଣ ସିଂହ ମହାଭାରତ ଆଦିପର୍ବରେ ସର୍ପବଂଶ ଓ ସେମାନଙ୍କ ଭିନ୍ନ ଭିନ୍ନ ନାମ ଯଥା ତକ୍ଷକ, କର୍କୋଟ,

ମଣିନାଗ, କାଳକେୟ, ପିଙ୍ଗଳ, ପୁଷ୍ପଦଂଷ୍ଟ୍ର, ଶଙ୍ଖଶିର, ପିଞ୍ଜରକ, ନହୁଷ, ଦଧିମୁଖ, ପିଣ୍ଡଳ, ହିଳକ ଆଦି ୭୪ ପ୍ରକାର ବିଷଧର ସାପଙ୍କ ବର୍ଣ୍ଣନା ରହିଛି । ଭାରତରେ ଏତେ ସଂଖ୍ୟକ ସାପ ବାସକରୁଥିବାରୁ ଭାରତକୁ 'ସାପର ଦେଶ' ବୋଲି ବୋଲାଯାଏ ଏବଂ ସେଥିପାଇଁ କେଳା ନାମକ ଏକ ଜାତି ସୃଷ୍ଟି ହୋଇଥିଲା ଯେଉଁମାନେ ସାପଖେଳକୁ ଜୀବିକା କରି ଜୀବନ ଅତିବାହିତ କରୁଥିଲେ । କିନ୍ତୁ କ୍ରମଶଃ ସାପମାନଙ୍କ ସଂଖ୍ୟା କମି ଆସିବାରୁ ଏବଂ ସାପ ଧରିବା ଓ ମାରିବା ସମ୍ବନ୍ଧରେ କଟକଣା ଜାରି ହେବାରୁ କେଳାମାନେ ଜୀବିକା ହରାଇଲେ । ତେବେ ଅନେକ ସାପ ଧରାଳି ଉତ୍ତୀର୍ଣ୍ଣ ହେଲେଣି ଏବଂ ସାପ ଆଉ ଭୟଙ୍କର ଜୀବଭାବେ ପରିଗଣିତ ହେଉନାହିଁ । ଅନେକ ଲୋକ ସଉକ ସରାଗରେ ସାପ ପୋଷୁଛନ୍ତି । ଆଉ କେତେ ସେମାନଙ୍କ ବିଷ ସଂଗ୍ରହ କରି ବ୍ୟବସାୟ କରୁଛନ୍ତି; ଔଷଧରେ ବ୍ୟବହାର କରୁଛନ୍ତି ।

ଜୀବ କ୍ରମବିକାଶ ଧାରାରେ ଏଇ ସାପ-ସରୀସୃପମାନେ ଅଧୁନା ସ୍ତନ୍ୟପାୟୀ ଜୀବମାନଙ୍କର ଯେ ପୂର୍ବଜ ବଂଶଧର ଜୈବ ବିଜ୍ଞାନୀମାନେ 'ବିଷମଦନ୍ତୀ ସାପ-ସରୀସୃପ'ର ଦେହାବଶେଷରୁ ଜାଣିପାରିଛନ୍ତି । ଏହାର ମୁହଁରେ ମନୁଷ୍ୟ ପରି ଚାରି ପ୍ରକାର ଦାନ୍ତ ଓ ଗାଲରେ ହାଡ଼ ଥିବା ଜଣାଯାଏ । ଏହାର ଆଗ ଓ ପଛଗୋଡ଼ର ଗଠନ ସ୍ତନ୍ୟପାୟୀ ଜୀବଙ୍କ ପାଦ ପରି ଅଟେ । ସିଂହ ଓ ବାଘଙ୍କ ଶାରୀରିକ ଗଠନ ସହିତ ଏମାନଙ୍କ କାନ୍ଧ ଓ ଦେହର ମଧ୍ୟଭାଗ ହାଡ଼ର ସାମଞ୍ଜସ୍ୟ ରହିଛି ଯାହା ପ୍ରମାଣ କରୁଛି କି ସ୍ତନ୍ୟପାୟୀ ଜୀବଙ୍କ ପୂର୍ବପୁରୁଷ ଏହି ସରୀସୃପମାନଙ୍କ ପରି ଥିଲେ । ସୃଷ୍ଟିର ଜୀବୋତ୍ପତ୍ତି ଧାରାରେ ସାପର ଏହି ଶିବ ଓ ଅଶିବ ରୂପ ମଣିଷ ସମାଜରେ ଉଭୟ ଶ୍ରଦ୍ଧା ଓ ଭୟର କାରଣ ହୋଇଛି । ସେଥିପାଇଁ ଆମ ସମାଜରେ ସର୍ପ କେଉଁଠି ପୂଜିତ ତ ଆଉ କେଉଁଠି ସର୍ପ କ୍ରୁର ବୋଲି ଘୃଣିତ ଓ ବର୍ଜିତ ।

◆





ରାଧାମୋହନ ମହାପାତ୍ରଙ୍କ ସହିତ ଆଳାପ ସମୟରେ ସୁନୀତି ମୁଣ୍ଡ୍

# ଓଡ଼ିଆ ଉପନ୍ୟାସ ସାହିତ୍ୟର ସିଦ୍ଧହସ୍ତ କଥାକାର ଶ୍ରୀ ରାଧାମୋହନ ମହାପାତ୍ର

-ଔପନ୍ୟାସିକ ରାଧାମୋହନ ମହାପାତ୍ରଙ୍କ ସହିତ ମୁହାଁମୁହିଁ କଥାବାର୍ତ୍ତା-

**(ଏକ ମାରାଥନ୍ ଆଳାପ)**

**ସାକ୍ଷାତ : ଶ୍ରୀ ବଂଶୀଧର ରାଉତ**

ଅସୀମ ଆଡ଼କୁ ମୋର ଦୃଷ୍ଟି । ନୂତନ ସୃଷ୍ଟି ପ୍ରକ୍ରିୟା ପାଇଁ ମୁଁ ଶତତ ବ୍ୟାକୁଳ । ଏହାର ଆଦ୍ୟନାଦର ଓଁକାର ଧ୍ୱନି ମୁଁ ପ୍ରତି ମୂହୁର୍ତ୍ତରେ ଶୁଣୁଛି, କିନ୍ତୁ ଏହାର ଅନ୍ତରୂପ ମୁଁ ଦେଖିପାରିବାର ସୌଭାଗ୍ୟ ଅର୍ଜନ କରି ପାରିନି । ମୁଁ ଦେଖି ପାରୁଛି ପୃଥିବୀର ରୂପଚର୍ଯ୍ୟାକୁ । ମୋର ଦୃଷ୍ଟିପଥ ଅଟକି ପାରୁନି ଏଠି । ଖୋଜୁଛି ସେହି ଅନ୍ତିମ ପର୍ବର ମହାମହିମ ରୂପର ଶ୍ରୀସତ୍ତାକୁ । ଶେଷ ବିନ୍ଦୁର ପ୍ରୟାସ କରୁ କରୁ ମୁଁ ଏଠି ଅଟିକ ଯାଇଛି । ଆଉ ମୋ ଅନ୍ତରାତ୍ମାର ବ୍ୟକ୍ତିସତ୍ତାକୁ ମୂଳ ପିଣ୍ଡ କରି ଲେଖି ଚାଲିଛି । ଏମିତି ଲେଖି ଚାଲିଥିବି । ମୁଁ ଆଜି ଯାଏଁ କ'ଣ ଲେଖିଲିଣି, କି ଏବେ କ'ଣ ଲେଖୁଛି ନିଜେବି ଜାଣିନି, ମାତ୍ର ଏମିତି ପ୍ରଗଳଭ୍ ହୋଇ ଲେଖିବା ମୋର ଅଭ୍ୟାସରେ ପଡ଼ି ଗଲାଣି ।

ମୋର ଲେଖକ ଜୀବନ ବନ୍ଧୁକ ଗୁଳିରୁ ଆରମ୍ଭ । ଶିକାରୀଠୁ ମୁଁ ପାଇଛି ସାହିତ୍ୟ ସତ୍ତା । ମୋର ଚାରିପାଖରେ ଘଟଣାମାନେ ମୋ ଭିତରର ଲେଖକ ମଣିଷଟିକୁ ଅହରହ ଜାଗ୍ରତ କରନ୍ତି । ମୁଁ ଆଚ୍ଛନ୍ନ ହୋଇପଡ଼େ ସେମାନଙ୍କ ନୀରବ ଆଲିଙ୍ଗନରେ, ଗଭୀର ଅନୁଭବରେ ମୁଁ ଚେଇଁ ଉଠେ । ଜୀବନ ପାଏ ମୋର କଲମ । ମୁଁ ହଜି ଯାଏ ମୋ ଅଜାଣତରେ ସାହିତ୍ୟିକର ସତ୍ତାରେ । ବିମଳ ଭାବରେ ମୋ ଜାଙ୍ଗଲିକ ମଧୁରାନୁଭୂତି ମୋ ସାହିତ୍ୟିକ ଜୀବନର ବ୍ୟକ୍ତିସତ୍ତାକୁ ସଂଜୀବିତ କରିଦିଏ ।

ଏ ସବୁ ରାଧାମୋହନଙ୍କ ମନକଥା ।

ପିଲା ଦିନେ ମଧୁର ମୂର୍ଚ୍ଛନାରେ ବିଭୋର ହୋଇ ସେ ଫୁଙ୍କୁ ଥିଲେ ବଇଁଶୀ । ବଇଁଶୀ ତାଙ୍କର ମିତ । ବନ୍ଧୁକ ତାଙ୍କର ସଙ୍ଗାତ ଆଉ ଏବେ କଲମ ତାଙ୍କ ଜୀବନ ସ୍ପନ୍ଦନ ।

ଜୀବନର ମମତ୍ୱବୋଧରେ ଚିର ଆଚ୍ଛନ୍ନ ରାଧାମୋହନ ମହାପାତ୍ର ସାଧନା କ୍ଷେତ୍ରରେ ବିନମ୍ର, ବିଶ୍ୱସ୍ତ ଓ ବିଶ୍ୱାସୀ । ତାଙ୍କର ସାରସ୍ୱତ ସାମର୍ଥ୍ୟ ସୁସ୍ପଷ୍ଟ । ତାଙ୍କର ସ୍ରଷ୍ଟା ହୃଦୟରେ ଅସୀମ ମମତା,

ସମଭାବାପନ୍ନ ମାନସିକତା ଓ ପରୋପକାରୀ ଆତ୍ମୀୟତା । ମର୍ଯ୍ୟାଦାସମ୍ପନ୍ନ ଆସନରେ ଅଧିକାରୀ ହୋଇ ମଧ୍ୟ ସେ ଖୁବ୍ ପ୍ରିୟଭାଜନ । ତାଙ୍କର ବାକ୍ ଚାତୁରୀ ରସାଳ ମାତ୍ର ସଂକ୍ଷିପ୍ତ । ସତେ ଯେମିତି ବଚନରେ ମୋହନୀ ଶକ୍ତି !

ତାଙ୍କର ସୃଷ୍ଟିମାନେ ଛଳ ଛଳ, କଳାତ୍ମକ ବିଭବରେ ବିମଣ୍ଡିତ । ବର୍ଣ୍ଣନାରେ ଅସୀମ ନୈପୁଣ୍ୟ, କାହାଣୀରେ, ସୁନ୍ଦର ଉପସ୍ଥାପନା, ଚରିତ୍ର ଚିତ୍ରଣରେ ଅପୂର୍ବ କଳାକୁଶଳୀର ଭାବ ଓ ସୁରମ୍ୟ ଶବ୍ଦ ସଂଯୋଜନା । ମନୋଜ୍ଞ ପରିବେଶ, କଳ୍ପନା ସହିତ ଘଟଣାର ବର୍ଣ୍ଣନା ଚାତୁରୀରେ କୋଣାର୍କର କାରୁକାର୍ଯ୍ୟ, ଗଭୀର ମନସ୍ତତ୍ୱ, ଜୀବନ ଦର୍ଶନରେ ମୂଲ୍ୟବୋଧର ସୂଚନା ।

**ଶିକାରୀଠୁ ଲେଖକ । ବନ୍ଧୁକ ଗୁଳିଠୁ ଫୁଲର ପରଶ । ବଇଁଶୀ ବାଦନଠୁ ସାହିତ୍ୟର ଅମୃତ ସଂଧାନୀ ରାଧାମୋହନ ମହାପାତ୍ର ଉପନ୍ୟାସ ଓ ଗଳ୍ପ ରଚନାରେ ଜଣେ ସୁଦକ୍ଷ କଥାକାର । ସୃଷ୍ଟି ପାଇଁ ସେ ଉତ୍ସର୍ଗୀକୃତ ।**

ସେ ନୀରବରେ ଲେଖି ଚାଲିଛନ୍ତି, ତାଙ୍କର ଏହି ଯାତ୍ରାର ଶେଷ ନାହିଁ । ସେ କୌଣସି ବାଧାବନ୍ଧନକୁ ଗୁରୁତ୍ୱ ଦିଅନ୍ତି ନାହିଁ । ଲେଖିବା ତାଙ୍କର ଆତ୍ମାର ପରିଭାଷା ।

**ଏଥର ଆସନ୍ତୁ ଶୁଣିବା ତାଙ୍କଠୁ କିଛି...**

***ବଂଶୀଧର ରାଉତ:*** *ଉପନ୍ୟାସ ରଚନା ଭିନ୍ନ ଏକ କଳା ଓ ଭାବୋଦ୍ଦୀପକ ପ୍ରକ୍ରିୟା ହେଲେ ମଧ ଦୁଃସାଧ । ଆପଣ ଏପରି ଏକ ସାଧନାରେ ମନୋନିବେଶ କଲାବେଳେ କିପରି ମାନସିକ ପ୍ରସ୍ତୁତି କରିଥିଲେ, ସେ ବିଷୟରେ କିଛି କୁହନ୍ତୁ ।*

**ରାଧାମୋହନ ମହାପାତ୍ର:** ଉପନ୍ୟାସ ରଚନା ଦୁଃସାଧ ହେଲେ ମଧ ଏକାଗ୍ରତା, ନିଷ୍ଠା ଓ ପ୍ରତିବଦ୍ଧତା ଥିଲେ 'ପଙ୍ଗୁ ଲଙ୍ଘୟେତ ଗିରି' ଆଦୌ ଅସମ୍ଭବ ନୁହେଁ । ମନର ଝୁଙ୍କ୍ ସହିତ ଯୋଗ ଉପସ୍ଥିତ ହେଲେ ଉଦ୍ୟମ ଫଳବତୀ ହୁଏ । ସବୁ ଜିନିଷର ଗୋଟାଏ ସମୟ ଥାଏ, ଉପଯୁକ୍ତ ସମୟ ଉପସ୍ଥିତ ନହେବା ପର୍ଯ୍ୟନ୍ତ ବୋଧହୁଏ କିଛି ହୁଏ ନାହିଁ । ମୋର ମନେ ଅଛି, ମୋ ପ୍ରଥମ ଉପନ୍ୟାସକୁ ପ୍ରକାଶ କରିବାକୁ ଅନେକ ପ୍ରକାଶକଙ୍କ ଦ୍ୱାରସ୍ଥ ହୋଇଛି, ଗୋଡ଼ ଭାଙ୍ଗି ଛିଡ଼ା ହୋଇଛି ଭିକ୍ଷାପାତ୍ର ଧରି, ଶେଷକୁ ନିରାଶ ହୋଇ ନିଜେ ଛପାଇବାକୁ ବାଧ ହୋଇଛି । ଏଥିରେ ଶୁଭେଚ୍ଛୁ ବନ୍ଧୁମାନେ ସାହାଯ୍ୟ କରିଛନ୍ତି । ମୋ ମତରେ ପ୍ରକାଶନଟା ବଡ଼ କଥା ନୁହେଁ, ବଡ଼ କଥା ସୃଷ୍ଟି । ସାରସ୍ୱତ ସୃଷ୍ଟି ପାଇଁ ମାନସିକ ପ୍ରସ୍ତୁତି ନିହାତି ଦରକାର ।

***ବଂଶୀଧର ରାଉତ:*** *ଏଥି ପାଇଁ କାହାଠୁଁ ପ୍ରେରଣା ପାଇଥିଲେ ?*

**ରାଧାମୋହନ ମହାପାତ୍ର:** ଇଚ୍ଛା ଉଚ୍ଛ୍ୱାସକୁ ଅଗ୍ରଗାମୀ କରାଇବାକୁ ହେଲେ ପ୍ରେରଣା ଅନିବାର୍ଯ୍ୟ ହୋଇପଡ଼େ । ପ୍ରେରଣା ଯାନର ଜାଳେଣି ସଦୃଶ । ମୋ ଲେଖନୀର ପ୍ରେରଣାଦାତ୍ରୀ ମୋ ଧର୍ମପତ୍ନୀ । ମୁଁ ଯଦି ଯାନ ହୁଏ, ସେ ଜାଳେଣି । ତାଙ୍କର ସାହାଯ୍ୟ, ସହଯୋଗ ଓ ପରାମର୍ଶରେ ଗପଗୁଡ଼ିକ

ଗଢ଼ିବା, ବଢ଼ାଇବା ଓ ଛିଡ଼ା କରାଇବା ସମ୍ଭବ ହୋଇଥାଏ । 'ଝରେ ଶ୍ରାବଣ ଝୁରେ ଫଗୁଣ'ର ଉତ୍ସର୍ଗ ପଢ଼ିଲେ ବୁଝି ପାରିବେ ।

***ବଂଶୀଧର ରାଉତ:** ପ୍ରଥମ ରଚିତ ଉପନ୍ୟାସର କାଳ ଓ ପରିବେଶ ବିଷୟରେ କିଛି କହନ୍ତୁତ ?*

**ରାଧାମୋହନ ମହାପାତ୍ର:** ଗ୍ରାମୀଣ ଜୀବନ ଓ ନଗର ସଭ୍ୟତାର ସଂଘାତରେ ସୃଷ୍ଟି ପ୍ରଥମ ପ୍ରଭାତର କଥାବସ୍ତୁ। ମୋର ଜନ୍ମ ପଲ୍ଲୀରେ, ଉଚ୍ଚଶିକ୍ଷା ସହରରେ । ପଲ୍ଲୀ ପରିବେଶ ଓ ସହର ଜଗତର ମିଶ୍ରଣ ପ୍ରକ୍ରିୟାରେ ଗଢ଼ି ଉଠିଛି ଗପଟି । ମୋ ମତରେ ଗାଁରେ ରହିଛି ସରଳ ଜୀବନ; ସହରରେ ଗରଳ। ସହରୀ ସଭ୍ୟତାର ପ୍ରଭାବରେ ପଲ୍ଲୀଜୀବନ ବିଡ଼ମ୍ବିତ। ତେବେ ଗରଳ ସରଳତାକୁ ସମ୍ପୂର୍ଣ୍ଣ ରୂପେ ଗିଳି ନପାରେ । ସରଳତାର ଖିଅଟିଏ କେଉଁଠି ଲୁଚି ରହିବ, ପୁଣି ସ୍ୱତଃ ଜାଗରିତ ହୋଇ ସଫଳତାର ସଂଜୀବନୀ ମନ୍ତ୍ର ଉଚ୍ଚାରଣ କରିବ। କହିବାର କଥା, ସହରର ପରିବେଶ ସୀମିତ, ସେଠାରେ କୃତ୍ରିମତା ବାସକରେ । କିନ୍ତୁ ପଲ୍ଲୀ ପରିବେଶ ବ୍ୟାପକ, ବିସ୍ତୃତ, ଲେଖକ ପାଇଁ ଅନେକ ଖୋରାକ ଦିଏ। ମୋ ମତରେ ଯେଉଁ ଜନପଦଗୁଡ଼ିକ ପ୍ରକୃତି ଠାରୁ ଦୂରେ. ସେଠାରେ ଜୀବନ ଉଚିତ ଭାବେ ବିକଶିତ ହୋଇପାରେ ନାହିଁ । ସମୁଦ୍ର ଉପକୂଳଠାରୁ ଝରଣାକୂଳ, ପାର୍ବତ୍ୟ ଗିରିମୂଳ ପର୍ଯ୍ୟନ୍ତ ଯେଉଁ ବିସ୍ତୃତି ତାହା କ'ଣ ସହରରେ ସମ୍ଭବ ? ସହରର ଶିଶୁକୁ ପଲ୍ଲୀ କଅଣ ଜଣା ନାହିଁ, ପଲ୍ଲୀର ଧାନକ୍ଷେତ, ତୋଟାମାଳ ସମ୍ବନ୍ଧରେ ସେ ଅଜ୍ଞ । ଢ଼ିଙ୍କି, ଘଣା, ତେଣ୍ଡା, ଚକି, ବଟୁଆ ଆଦି ଗାଉଁଲୀ ଦ୍ରବ୍ୟ ସମ୍ବନ୍ଧରେ ସେ ଜ୍ଞାନ ପାଇବ କାହୁଁ ? ସେ ବିଜୁଳି, କୋଠା, ଟିଭି ଆଦି ଆଧୁନିକ ସରଞ୍ଜାମ ଭିତରେ ଶିକ୍ଷା ସମାପ୍ତ କରେ । ତା'ର ପରବର୍ତ୍ତୀ ଜୀବନ ପୂର୍ଣ୍ଣତାପ୍ରାପ୍ତ ହେବ କିପରି ? ଏଣୁ ଗାଁର ଡାକକୁ ଭୁଲିବାର କଥା ନୁହେଁ । ଗ୍ରାମ୍ୟ ଜୀବନ ଓ ପ୍ରକୃତିର ଅସୀମତା ଭିତରୁ ଲେଖନୀର ସମୀମତା ଭିତରେ କିଛି ଉପାଦାନ ସାଇତି ରଖାଇବା ସଫଳ ଲେଖକର ପ୍ରୟାସ । ଏହି ଅଭିପ୍ରାୟରେ ମୋର ଲେଖନୀ ପ୍ରୟାସୀ । ଅଧୁନା ଗ୍ରାମ ଓ ନଗର ସଭ୍ୟତା ସଙ୍ଘାତର ଏକ ଆହ୍ୱାନରେ ଉପନ୍ୟାସ 'ପ୍ରଥମ ପ୍ରଭାତ' ଶେଷ ହୋଇଛି । ସେଥିରେ ସମୟ ପରିବର୍ତ୍ତନର ଛାପ ରହିଛି । ଉପନ୍ୟାସର ଅନ୍ତଃସ୍ୱରକୁ ଲକ୍ଷ୍ୟକଲେ ଶୁଣି ପାରିବେ ସବୁ ।

***ବଂଶୀଧର ରାଉତ:** ଆପଣଙ୍କ ଉପନ୍ୟାସର ଭାଷା ସରଳ ହେଲେ ମଧ୍ୟ ଭାବ ସୁସ୍ପଷ୍ଟ ଏବଂ ସାବଲୀଳ କାହାଣୀର ଗତିଶୀଳତାରେ ଏହାର ପ୍ରାଣ ପ୍ରଚୁର୍ଯ୍ୟରେ କୌଣସି ବ୍ୟାଘାତ ସୃଷ୍ଟିକରୁ ନାହିଁ । ଏହି ସୂକ୍ଷ୍ମକଳାରେ ଆପଣଙ୍କ ମୌଳିକତା ସୁସ୍ପଷ୍ଟ । ଉକ୍ତ ନବନୀତ ପ୍ରକ୍ରିୟା ବିଷୟରେ କିଛି କହନ୍ତୁ ।*

**ରାଧାମୋହନ ମହାପାତ୍ର:** ଉକ୍ତ କଳା ବା ପ୍ରକ୍ରିୟାଟି ମୋର ଆପେଆପେ ଗଢ଼ି ହୋଇଯାଇଛି, କା'ର କଥା ବା କାହାଣୀକୁ ମୁଁ ଜୋର ଦିଏ ନାହିଁ । କଥା କହିଲା ବେଳେ ଯେତିକି ଶବ୍ଦ ଆବଶ୍ୟକ ତାକୁ ବ୍ୟବହାର କରେ । ସବୁଜ ଶାଗ କିଆରୀରୁ ଅନାବନା ଘାସ ଓପାଡ଼ି ଫୋପାଡ଼ିଲା ପରି, କାହାଣୀ ଭିତରୁ ଅନାବନା ଶବ୍ଦତକ ତଡ଼ିଦିଏ, ଯାହା ଏକାନ୍ତ ଆବଶ୍ୟକ ତାକୁ ଅଗ୍ରାଧିକାର ଭିତ୍ତିରେ ସ୍ଥାନ

ଦିଏ। ଏଥିରେ ମୋର ବା ବିଶେଷ ବିଶେଷତ୍ୱ କ'ଣ ? ସବୁ ଲେଖକ ହୁଏତ ଏପରି କରିଥାନ୍ତି ବା କରିବା ଉଚିତ । ତେବେ ଶୈଳୀ, ଉପସ୍ଥାପନା କଳା ଓ ଲେଖକୀୟ ଢଙ୍ଗ ଲେଖକର ନିଜସ୍ୱ କଥା । ଗୋଟିଏ କଥାକୁ ବିଭିନ୍ନ ଉପାୟରେ କୁହାଯାଇ ପାରେ, ପ୍ରକାଶ କରାଯାଇପାର । ଧରାଯାଉ ଲେଖକ ଲୋଭୀ ନକହି, ଲୋକଟି କାର୍ପଣ୍ୟର କୃଷ୍ଣମୁଖାଟିଏ ପିନ୍ଧିଛି କହିଲେ ଭଲ ଶୁଭୁଛି, ପଢ଼ିବାକୁ ମଧ ଭଲ ଲାଗୁଛି, ଲେଖିବାର ସାବଲୀଳତା ଅନୁଭବ ହେଉଛି। ଏଣୁ ଲେଖକର ନିଜସ୍ୱ ଅନ୍ତର୍ଭେଦୀ ଦୃଷ୍ଟି ଓ ପରିପ୍ରକାଶ ଶକ୍ତି ଉପରେ ଲେଖାର ସଫଳତା ନିର୍ଭର କରେ ।

***ବଂଶୀଧର ରାଉତ: ଉପନ୍ୟାସର ସରଳ ଭାଷା, କାହାଣୀ ପ୍ରକାଶରେ କିପରି ସହାୟକ ହୁଏ ?***

**ରାଧାମୋହନ ମହାପାତ୍ର:** କାହାଣୀ ପ୍ରକାଶରେ ଭାଷାର ଭୂମିକା ମୁଖ୍ୟ । ଏଣୁ ଭାଷା ନିଶ୍ଚିତ ଭାବେ ସରଳ, ତରଳ ଓ ସାବଲୀଳ ହେବା ଆବଶ୍ୟକ । ଭାବକୁ ଫୁଟାଇବାକୁ ହେଲେ ଭାଷାହିଁ ମାଧମ। ଭାବ ପ୍ରକାଶ ବେଳେ ଉପଯୁକ୍ତ ଶବ୍ଦ ପ୍ରୟୋଗ ନ କଲେ, ପାଠକୀୟ ବୁଝା ଅଭାବ ରହିଯିବ, ଲେଖକର ଭାବନା ହୁଏତ ଅବ୍ୟକ୍ତ ରହିଯିବ । ଏଣୁ ଭାଷା ଓ ଶବ୍ଦ ପ୍ରତି ଯଥେଷ୍ଟ ଯତ୍ନବାନ ହେବାକୁ ପଡ଼ିଥାଏ । ମୁଁ ଲକ୍ଷ୍ୟ କରିଛି, ବହୁ ଖ୍ୟାତନାମା ପ୍ରତିଷ୍ଠିତ ଲେଖକ ନିଜେ ଭାବି ନିଅନ୍ତି ଯେ ସେ କଥାଟି କହିଦେଲେ ବା ଠିକ୍ ଭାବେ ପ୍ରକାଶ କରିଦେଲେ, କିନ୍ତୁ ପ୍ରକୃତରେ ଅଧା ଭାବନା ଢ଼ୋକି ଦେଲେ ଏବଂ ପାଠକ ବୁଝି ପାରିଲା ବୋଲି ଭାବିନେଲେ । କିନ୍ତୁ ଅଭାବଟିକୁ ନିଜେ ବୁଝି ପାରିଲେ ନାହିଁ ।

ଏମିତି ଅନେକ ଦୁର୍ବୋଧ ଲେଖା ନଜରକୁ ଆସିଛି । ଲେଖା ସୁବୋଧ ହେଲେ ଅସୁବିଧା କ'ଣ ମୁଁ ବୁଝି ପାରେ ନାହିଁ, ଦୁର୍ବୋଧ କଥାକୁ ସୁବୋଧ୍ୟ ଭାଷାରେ ବୁଝେଇ ଦେଲେ ଲେଖନୀୟ ବାହାଦୂରୀ ଆଦୌ ହ୍ରାସ ପାଇବ ନାହିଁ, ବରଂ ବକ୍ତବ୍ୟର ସ୍ୱଷ୍ଟତା ଓ ପ୍ରାଞ୍ଜଳତା ବୃଦ୍ଧି ପାଇବ ।

ଭାଷାକୁ ଟିକିଏ ସୁନ୍ଦର ଭାବେ କହିବାକୁ ହେଲେ ଉପମା ଅଳଙ୍କାର ଦରକାର ପଡ଼େ । ଅଳଙ୍କାରର ଅନ୍ୟ ନାମ ଭୂଷଣ । ଭୂଷଣ ଦ୍ରବକ, ଦୃଶ୍ୟକୁ ସୁନ୍ଦର କରାଏ, ଉପମା ଶ୍ରବଣକୁ ମଧୁର କରାଏ। କିନ୍ତୁ ଯିଏ ଆଜନ୍ମ ସୁନ୍ଦରୀ, ତା ପାଇଁ ଭୂଷଣ ଆବଶ୍ୟକ ପଡ଼େନି । ଅର୍ଥାତ୍ କାହାଣୀର ସୁନ୍ଦରପଣ କାହାଣୀରେ ହିଁ ନିହିତ । କଥାବସ୍ତୁର ଚମତ୍କାରିତା ନଥିଲେ, ଘଟଣାର ନାଟକୀୟତା ନଥିଲେ, କେବଳ ଶବ୍ଦମାନଙ୍କର ଶୋଭାଯାତ୍ରାରେ ଗପ ଗଢ଼ିବା ଅସମ୍ଭବ । ଶବ୍ଦାଡମ୍ବରରେ ଫମ୍ପା କାହାଣୀ ମାତ୍ର ଗଢ଼ା ଯାଇପାରେ । ଏଣୁ ଗପ ବା ଉପନ୍ୟାସରେ ଶବ୍ଦ ଗୌଣ, କାହାଣୀ ମୁଖ୍ୟ। ମେଢ଼ ଅପେକ୍ଷା ମୂର୍ତ୍ତିର ମୂଲ୍ୟ ଓ ମାନ ବହୁ ଅଧିକ । ଯେଉଁଠି ମେଢ଼ ମୂର୍ତ୍ତିକୁ ବଳି ପଡ଼େ, ସେଠି କଳା ପାଟବତା କ୍ଷୁଣ୍ଣ ହୁଏ ଠିକ୍ ଯେପରି ମୂଳକୁ ଛାଡ଼ି ଚୂଳକୁ ଧରିଲେ ଅବସ୍ଥା ଯାହା ହୁଏ ।

***ବଂଶୀଧର ରାଉତ: କାହାଣୀ ପ୍ରଭାବରେ ଜୀବନାନୁଭୂତିର ପ୍ରକ୍ରିୟା ସମର୍ଥ ହୁଏକି ?***

**ରାଧାମୋହନ ମହାପାତ୍ର:** ଅନୁଭୂତି ବା ଜ୍ଞାନ ନଥାଇ କେବଳ କଳ୍ପନାକୁ ପୁଞ୍ଜିକରି କାହାଣୀ ଲେଖିଲେ ସଫଳ ରଚନା କୁହାଯିବ ନାହିଁ । ଅନେକାଂଶରେ କାହାଣୀରେ ଅନୁଭୂତିର ବା ନିଜସ୍ୱ

ଦୃଷ୍ଟିଭଙ୍ଗୀର ଛାପ ରହିଥାଏ । ଗପ କଳ୍ପନା ହୋଇପାରେ, କିନ୍ତୁ ତାହା ବାସ୍ତବତାର କଳ୍ପନା ହେବା ଉଚିତ । ଏଣୁ ବିଶ୍ୱବିଖ୍ୟାତ କଥାକାର ହେମିଂଓ୍ୱେ କହନ୍ତି, "write the truest that you know" । କଳ୍ପନାର କଥାଟି ଏପରି କୁହ ଯାହା ବାସ୍ତବ । ଅବଶ୍ୟ ଉଦ୍ଭଟ ଅବାସ୍ତବ ଗପ ଲେଖା ଯାଇପାରେ, କିନ୍ତୁ ତାହା ପାଠକ ମନକୁ ସର୍ବଦା ବାନ୍ଧି ରଖି ପାରେ ନାହିଁ, ତାହା ଅଳୀକ, କ୍ଷଣିକ ଆନନ୍ଦ ପାଇଁ । ଏଣୁ ମୁଁ ଲେଖାରେ ବାସ୍ତବ ଘଟଣା ଉପରେ ଜୋର ଦିଏ । ଆପଣ କହି ପାରନ୍ତି ମୁଁ ଗପ ଲେଖେ ନାହିଁ, ଘଟଣା ଲେଖେ । ତାହା ସତ୍ୟ । ଘଟଣାର ଗପ କେଡ଼େ ସୁନ୍ଦର, ମାର୍ମିକ ଓ ହୃଦୟସ୍ପର୍ଶୀ ସେଇ ଘଟଣା ଭିତରୁ ଗପ ଖୋଜ, ତା ମାଧ୍ୟମରେ ଯଦି କିଛି ବାର୍ତ୍ତା ବା ସନ୍ଦେଶ ଥାଏ, ଦିଅ । ସମାଜରେ ଘଟଣାର ଅଭାବ ନାହିଁ; ପ୍ରତି ମୂହୁର୍ତ୍ତରେ ଘଟଣାର ବିସ୍ଫୋରଣ ଘଟୁଛି । ଲେଖକର ଚତୁର୍ଦ୍ଦିଗରେ ଘଟୁଥିବା ଘଟଣା ପ୍ରତି ତୀର୍ଯ୍ୟକ ଦୃଷ୍ଟିଭଙ୍ଗୀ ଓ ସଚେତନତା ସୃଜନଶୀଳତାର ଏକୁଡ଼ିଶାଳ । ଏଣୁ ଅନୁଭବ ଓ ଅନଭୂତି ଲେଖକର ମୁଖ୍ୟ ସମ୍ପଦ, ଉପାଦାନ । ଅନୁଭୂତିର ଇଲାକା ଯେତିକି ବ୍ୟାପକ ହେବ, ରଚନାର ପରିସର ସେତିକି ଗଭୀର ଓ ମନଛୁଁଆ ହୋଇ ପାରିବ । ବିନା ଅନୁଭୂତି ଓ ଅନୁଭବରେ ଲେଖିବା ମୋ ପାଇଁ ବ୍ୟର୍ଥ ପ୍ରୟାସ ।

***ବଂଶୀଧର ରାଉତ:*** *ଉପନ୍ୟାସର ପ୍ରାଣପ୍ରଚୁର୍ଯ୍ୟର ଭାବାବେଶ ରଚନା କ୍ଷେତ୍ରରେ ସାହାଯ୍ୟ କରି ପାରେକି ?*

**ରାଧାମୋହନ ମହାପାତ୍ର:** ପ୍ରାଣ ପ୍ରାଚୁର୍ଯ୍ୟର ଭାବାବେଶ ନଥିଲେ ରଚନାର ମୂଲ୍ୟ କେବଳ ଫମ୍ପା ଆଓ୍ୱାଜ୍ । ଫମ୍ପା ମାଠିଆର ଶବ୍ଦ ବେଶୀ ହୁଏ, କିନ୍ତୁ ମାଠିଆଟି ସାମାନ୍ୟ ଆଘାତରେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇପାରେ, ଫଟା ମାଠିଆ ଆଉ ବୋବେଇ ପାରେନା । ଭାବାବେଶର ଓଜନରେ ରଚନା ଗରୀୟାନ ହେବା ଉଚିତ୍ ।

***ବଂଶୀଧର ରାଉତ:*** *ଆପଣ ଉପନ୍ୟାସ ସହିତ ଗଳ୍ପ ବି ଲେଖନ୍ତି । ଆପଣ କ'ଣ ଏହି ଉଭୟ ଦିଗକୁ ସମୃଦ୍ଧ କରିବାକୁ ପ୍ରୟାସୀ ?*

**ରାଧାମୋହନ ମହାପାତ୍ର:** ଉଭୟ ପାଇଁ ।

***ବଂଶୀଧର ରାଉତ:*** *ଆପଣଙ୍କ ଦୃଷ୍ଟିରେ ଉପନ୍ୟାସର ସଂଜ୍ଞା କ'ଣ ?*

**ରାଧାମୋହନ ମହାପାତ୍ର:** ଜୀବନ ଧାରାର ଅର୍ଥ ଯାହା ।

***ବଂଶୀଧର ରାଉତ:*** *ଆପଣ ଗଳ୍ପର ସଂଜ୍ଞାନିରୂପଣ କରନ୍ତୁ ତ ?*

**ରାଧାମୋହନ ମହାପାତ୍ର:** ଉପନ୍ୟାସ ଗୋଟିଏ ଗଛ, ଗଳ୍ପ ତାର ଡାଳ, କବିତା ତା'ର ଫୁଲ ।

***ବଂଶୀଧର ରାଉତ:*** *ଗଳ୍ପ ଓ ଉପନ୍ୟାସ ନଦୀ ଓ ସମୁଦ୍ର କି ?*

**ରାଧାମୋହନ ମହାପାତ୍ର:** ହଁ, ତେବେ ସମୁଦ୍ରରୁ କ୍ଷାରୀୟ ଅଂଶତକ କାଢ଼ି ନିଅନ୍ତୁ ।

***ବଂଶୀଧର ରାଉତ:*** *ଆପଣଙ୍କ ଲେଖକ ଜୀବନ ସହିତ ପାରିବାରିକ ଜୀବନର କେବେ ସଂଘାତ ହୋଇଛି କି ?*

**ରାଧାମୋହନ ମହାପାତ୍ର:** ସଂଘାତ ହୋଇନି କେବେ; ସଂଯୋଗ, ସଂହତି ।

***ବଂଶୀଧର ରାଉତ:*** *କିପରି ?*

**ରାଧାମୋହନ ମହାପାତ୍ର:** ପତ୍ନୀଙ୍କଠାରୁ ସହଯୋଗ, ସମ୍ପୂର୍ଣ୍ଣ ସହଯୋଗ ।

***ବଂଶୀଧର ରାଉତ:*** *ଆପଣଙ୍କ ଅନୁଭୂତି ?*

**ରାଧାମୋହନ ମହାପାତ୍ର:** ସଂଘାତର ଅନୁଭୂତିତ ଆଦୌ ନାହିଁ । ସବୁବେଳେ ସବୁ କର୍ମରେ ସହଯୋଗର ହାତ ଲମ୍ବି ଆସିଛି । ପାଣ୍ଡୁଲିପିକୁ ପରିଷ୍କାର ଭାବେ ଉତାରିବା ଧର୍ମପତ୍ନୀଙ୍କ ଦାୟିତ୍ୱ । କେବଳ ସେତିକି ନୁହେଁ, ପ୍ରେସ୍‌ରେ ପ୍ରୁଫ୍ ଦେଖିବାଠାରୁ ଆରମ୍ଭକରି ପ୍ରକାଶନ ଓ ଉନ୍ମୋଚନ ପର୍ଯ୍ୟନ୍ତ ସବୁ ନିଜେ ଦେଖନ୍ତି । 'ପ୍ରତିଭାନୀ' ପ୍ରକାଶନୀର ପ୍ରକୃତ ସ୍ୱତ୍ତ୍ୱାଧାରିଣୀ ସେ ।

***ବଂଶୀଧର ରାଉତ:*** *ଏହି ସଂଘାତ ଜଣେ ସାହିତ୍ୟିକ ପାଇଁ ଆବଶ୍ୟକ ନା ପ୍ରତିବନ୍ଧକ ?*

**ରାଧାମୋହନ ମହାପାତ୍ର:** ସେ ଭଳି ଅନଭୂତି ଅଭାବରୁ କୌଣସି ମତ ଦେଇପାରୁନି । ତେବେ ଲେଖକର ମାନସିକ ପ୍ରସ୍ତୁତି ଉପରେ ଲେଖା ନିର୍ଭର କରେ । କେତେକ ଲେଖକ ଗଣ୍ଡଗୋଳ ଓ ହୁତାଶନ ଭିତରେ ଲେଖି ପାରନ୍ତି; ଆଉ କେତେକ ଶାନ୍ତ, ସ୍ନିଗ୍ଧ ପରିବେଶକୁ ପସନ୍ଦ କରନ୍ତି । କୋଳାହଳକୁ ମୁଁ ପସନ୍ଦ କରେ ନାହିଁ, ନିରବତା ମୋର ରୁଚି । ସବୁବେଳେ ଇଚ୍ଛାକରେ ବାଙ୍ମୟ ନିରବତା ।

***ବଂଶୀଧର ରାଉତ:*** *ଜଣେ ଲେଖକର ସ୍ୱରୂପ କେମିତି ହେବା ଉଚିତ ?*

**ରାଧାମୋହନ ମହାପାତ୍ର:** ନିଜ ଛବିଟି ଯେମିତି । ସେ ଛବିଟି କାହାର ଗୋଡ଼ାଣିଆ ନହେବା ଉଚିତ୍ ।

***ବଂଶୀଧର ରାଉତ:*** *ସାମାଜିକ ସ୍ଥିତିରେ ଲେଖକର ଭୂମିକା କିଭଳି ହେବା ବାଞ୍ଛନୀୟ ? କିଛି ଅନୁଭୂତି କହନ୍ତୁ ।*

**ରାଧାମୋହନ ମହାପାତ୍ର:** ଜଣେ ଆଦର୍ଶ ଶିକ୍ଷକ ଭଳି । ଜଣେ ଦିଗ୍‌ଦର୍ଶକର ଭୂମିକା । ଲେଖକ ମନେ ରଖିବା ଉଚିତ୍ ଯେ ତା ହାତରେ ଗୋଟିଏ ମସୀ ଅଛି ଯାହା ଅସୀଠାରୁ ବଳିୟାନ୍ । ସେ ଆତ୍ମବିଶ୍ୱାସ ହରାଇବା ଉଚିତ ନୁହେଁ । କେତେଗୁଡ଼ିଏ ସମସ୍ୟା ନେଇ ଗପ ଲେଖିଛି । ବହୁ ବଧାଇ ପତ୍ର ପାଠକମାନଙ୍କଠୁଁ ପାଇଛି । ଶ୍ରମ ସାର୍ଥକତା ଅନୁଭବ କରିଛି । ଏବେ ଗଣଧର୍ଷଣ ଉପରେ ଗପଟିଏ ଲେଖିଥିଲି । ଗପର ନାମ "ସବୁ ଶେଷ ପରେ" । ସେପ୍ଟେମ୍ବର ୯୪ 'ଏକବିଂଶ ଶତାବ୍ଦୀ'ରେ ପ୍ରକାଶିତ ହୋଇଥିଲା । ଅନେକ ପାଠକ ଚିଠି ମାଧ୍ୟମରେ ଜଣାଇଲେ ଯେ ଗପଟି ବହୁଳ ଭାବେ ବିଭିନ୍ନ ପତ୍ର ପତ୍ରିକା ଓ ସମ୍ବାଦ ପତ୍ରମାନଙ୍କରେ ପ୍ରକାଶିତ ହେବା ଉଚିତ୍ । ଆଉ ଗୋଟିଏ ଅନୁଭୂତି କହୁଛି । ଗତ କୁମାର ପୂର୍ଣ୍ଣିମା ଦିନ ପୁରୀ ଯାଉଥିଲି । ଶ୍ରୀ ମନ୍ଦିରରେ ପଣ୍ଡାଙ୍କ ହାବୁଡରେ ପଡିଲି । ସେମାନଙ୍କ ଶୋଷଣର ଶିକାର ହେଲି, ଅନେକ ଯୁକ୍ତି ଲାଗିଲା, ଅନେକ ପୁଣ୍ୟାର୍ଥୀ ଜମିଗଲେ । କହି

ଆସିଲି, ମୁଁ ଲେଖାଲେଖି କରେ, ଅନ୍ୟାୟ, ଶୋଷଣ ଓ ଦୁର୍ବ୍ୟବହାର ବିରୁଦ୍ଧରେ ଲେଖା ମାଧ୍ୟମରେ ସ୍ୱର ଉତ୍ତୋଳନ କରିବି । ସମ୍ବାଦ ତା ୩୦।୧୦।୯୪(ରବିବାର) ଓ ସ୍ୱରାଜ୍ୟ ତା ୧।୧୦।୯୪ରେ ବିପୁଳ ଭାବେ ଯଥାକ୍ରମେ 'ତୁ ବୁଝିବୁ ଜଗନ୍ନାଥ', ଶ୍ରୀମନ୍ଦିର ସେବା ଓ ସେବାୟତ' ଶିରୋନାମାରେ ପ୍ରକାଶିତ ହୋଇଥିଲା । ଜନସଚେତନତା ବୃଦ୍ଧି କରାଇବା ଲେଖକର ଧର୍ମ ଓ ଧ୍ୟେୟ, ନୋହିଲେ ଲେଖକ ପଦବାଚ୍ୟ ହେବନାହିଁ । ସମସ୍ୟା ଭିତରେ ନିଜେ ଏକ ଚରିତ୍ର ହୋଇପାରିଲେ ଲେଖନୀ ସୁନ୍ଦର ହେବ ନିଶ୍ଚୟ । ଧରନ୍ତୁ, ପ୍ରତ୍ୟେକ ଲୋକ ଚାନ୍ଦାବାଲାଙ୍କ ହାବୁଡ଼ରେ ପଡ଼ିଛନ୍ତି, ଜୁଲମ ସହିଛନ୍ତି- ସମସ୍ତଙ୍କର ତିକ୍ତ ଅନୁଭୂତି ରହିଛି । ଚାନ୍ଦା ଦେବାକୁ ବା କାହାକୁ ଭଲ ଲାଗେ ? ଅନେକ ଇଜ୍ଜତକୁ ଜଗି, ଭୟକରି ଦାଦାଗିରି କରୁଥିବା ଗୁଣ୍ଡା ହୁଣ୍ଡା ଯୁବକମାନଙ୍କୁ ଚୁପ୍ ଚାପ୍ ଚାନ୍ଦାଟଙ୍କା ଗଣି ଦିଅନ୍ତି, ଦେବାକୁ ବାଧ୍ୟ ହୁଅନ୍ତି । କିଏ ଝାମେଲାକୁ ପଶୁଛି ? ଏହା ଏକ ସାମାଜିକ ସମସ୍ୟା । ସୁନ୍ଦର ସୁନ୍ଦର ଗପ ଲେଖାଯାଇ ପାରେ । ମୁଁ ମଧ୍ୟ ଲେଖିଛି । ଗପର ନାମ 'ଆହତ ସଂଳାପ' । ସେହିପରି ଅନ୍ଧ ବିଶ୍ୱାସ, ଡାଆଣୀ, ଆଳସ୍ୟ, ଦାରିଦ୍ର୍ୟ, ନିରକ୍ଷରତା ଓ ଈର୍ଷା ଆଦି ସାମାଜିକ ବ୍ୟାଧି ବିଷୟରେ ଅନେକ ଗପ ଲେଖିଛି । ପ୍ରଶଂସା ପତ୍ର ମଧ୍ୟ ପାଇଛି । ଉପନ୍ୟାସ 'ଜଙ୍ଗଲର ଜମାନବନ୍ଦୀ' ଓ 'ବ୍ୟାଘ୍ର ନିନାଦ' ସମାଜର ତଥାକଥିତ ଅନ୍ଧବିଶ୍ୱାସ ଓ ବଦ୍ଧମୂଳ ଧାରଣା ଉପରେ ପ୍ରଚଣ୍ଡ ଆକ୍ରମଣ । ବାରପାହାଡ଼ ବନାଦେଶର ଏକ ସୁରମ୍ୟ ଝରଣା(ଝାମ୍ପି)ରୁ ଜଳ ପାନକଲେ ମୃତ୍ୟୁ ହେବ ବୋଲି ଜନଧାରଣା ରହିଆସୁଥିଲା କାଳକାଳରୁ । ମୁଁ କିଛି ନମାନି ପ୍ରଥମେ ସେଥିରୁ ଜଳ ଆଣି ପିଇଲି ଏବଂ କ୍ରମଶଃ ଲୋକ ଧାରଣା ବଦଳିବାକୁ ଲାଗିଲା(ବ୍ୟାଘ୍ର ନିନାଦରେ ବର୍ଣ୍ଣିତ) । ସେଇପରି ଆମପାଣି ଘାଟୀର(କଳାହାଣ୍ଡି ଜିଲ୍ଲା) ପାଦଦେଶରେ ଏକ ପରିତ୍ୟକ୍ତ ଚାଳଘରେ ଏକାକୀ ବାସକଲି । ପରେ ଜାଣିଲି ଯେ ସେ ଘରେ ଜଣେ ପଠାଣ ଯୁବତୀ ଅଳ୍ପଦିନ ପୂର୍ବେ ମୃତ୍ୟୁବରଣ କରିଛି, ଏବଂ ତା'ର ଏକ ଶିଶୁପୁତ୍ରକୁ ଖୋଜୁଛି ରାତି କାଳରେ, ତା'ର କାନ୍ଦଣା ଲୋକମାନେ ଶୁଣିଛନ୍ତି । ଏକଥା ଜାଣି ମଧ୍ୟ ମୁଁ ସେଇ ଘରେ ବାସ କରିବାକୁ ଲାଗିଲି ଏବଂ କ୍ରମଶଃ ଲୋକଙ୍କ ଧାରଣା ବଦଳିବାକୁ ଲାଗିଲା । ଭୂତ, ପ୍ରେତ, ଡାଆଣୀ ଆଦି ଅଶରୀରୀ ଆତ୍ମା ପ୍ରତି ମୋର ଆଦୌ ବିଶ୍ୱାସ ନାହିଁ(ଜଙ୍ଗଲର ଜମାନବନ୍ଦୀରେ ବହୁଳ ବର୍ଣ୍ଣିତ) । 'ଅଭିଯୋଗ' ଶୀର୍ଷକ ଏକ ବଡ ଗଳ୍ପ ଡାଆଣୀ ଉପରେ ପର୍ଯ୍ୟବସିତ । ଗଳ୍ପର ବାର୍ତ୍ତା, ଉପସ୍ଥାପନା ନାଟକୀୟତାରେ ଆକୃଷ୍ଟ ହୋଇ ଚଳଚ୍ଚିତ୍ର ନିର୍ଦ୍ଦେଶକ ତଥା ଅଭିନେତା ସାଧୁ ମେହେର ମୋ ସହିତ ସମ୍ବନ୍ଧ ଯୋଡ଼ିଛନ୍ତି । ଏଇ ଗପଟି ପ୍ରଥମେ ଆମକୁ ନିକଟତର କରିଛି । 'ଶବ ଶିକାର' ଗପଟି ଟେଲି ଫିଲ୍ମ ହୋଇ ସାରିଛି । ସୁମନ୍ତ ଦେ ଏହାର ନିର୍ଦ୍ଦେଶକ । କାଳିସୀ ଉପରେ ଲିଖିତ 'ଉଗ୍ରତାରା' ଗପ ଝଙ୍କାରରେ ପ୍ରକାଶିତ ହୋଇଥିଲା ଏବଂ ବହୁ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ଗଳ୍ପଗୁଡିକ ଏ ପର୍ଯ୍ୟନ୍ତ ସଂକଳିତ ହୋଇ ପାରିନାହିଁ । ନିକଟ ଭବିଷ୍ୟତରେ ଯୋଜନା ରଖିଛି ।

**ବଂଶୀଧର ରାଉତ:** *ସାଧାରଣ ଜୀବନଯାପନ କରୁଥିବା ମଣିଷ ଯଦି ଜଣେ ଲେଖକ ହୋଇଯାଏ, ତେବେ ତା'ର ଜୀବନଯାତ୍ରା କିପରି ପ୍ରବାହିତ ହୁଏ ?*

**ରାଧାମୋହନ ମହାପାତ୍ର:** ଜୀବନଯାତ୍ରାରେ ଉନ୍ନତି ପରିଲକ୍ଷିତ ହେବ ନିଶ୍ଚୟ, ମନରେ ପ୍ରତ୍ୟୟ ଜାତ ହେବ, ଆତ୍ମବିଶ୍ୱାସ ଜାଗି ଉଠିବ । ସାଧାରଣ ଜୀବନରୁ ଅସାଧାରଣତା ସୃଷ୍ଟି ହୋଇପାରେ । ବିନା ପଙ୍କରେ କ'ଣ ପଦ୍ମ ପ୍ରସ୍ଫୁଟିତ ହୋଇ ପାରିବ ? ତେଣୁ ଲେଖକ ହେବାକୁ ହେଲେ ସାଧାରଣ ଜୀବନରୁ ଉପାଦାନ ସଂଗ୍ରହ କରି ସୃଷ୍ଟି କରିବାକୁ ପଡିବ ତା'ର ସାରସ୍ୱତ ସାମ୍ରାଜ୍ୟ । କୃଷକ ସମ୍ବନ୍ଧରେ

## କିଞ୍ଚିତ ପ୍ରଶ୍ନ

***ପ୍ରିୟ ଖାଦ୍ୟ:*** *ଓଡିଆ ବରା, ପଖାଳ, ଶୁଖୁଆ, ଶାଗ, ଆଳୁବାଇଗଣ ଭର୍ତ୍ତା ଓ ବରକୋଳି ଆଚାର*

***ପ୍ରିୟ ରଙ୍ଗ:*** *ସବୁଜ ଏବଂ ଗୋଲାପି*

***ପ୍ରିୟ ପୋଷାକ:*** *ହାଲୁକା ସଫା ପ୍ୟାଣ୍ଟ ସାର୍ଟ(ବାହାର ପାଇଁ)*

***ଘରୋଇ ପୋଷାକ:*** *ଲୁଗାକୁ ଲୁଙ୍ଗି ଭଳି ପିନ୍ଧିବା ଓ ତା ସହିତ ସଫା ଗଞ୍ଜି*

***ପ୍ରିୟ ବ୍ୟକ୍ତି:*** *ଉତ୍କଳ ଗୌରବ ମଧୁସୂଦନ ଦାସ*

***ପ୍ରିୟ ଲେଖକ:*** *କାହ୍ନୁଚରଣ ମହାନ୍ତି*

***ପ୍ରିୟ କବି:*** *କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ*

***ପ୍ରିୟ ନାରୀ:*** *ପୌରାଣିକ ନାରୀ-ସୀତା, ଆଧୁନିକ ଯୁଗର ନାରୀ-ଇନ୍ଦିରା ଗାନ୍ଧୀ*

***ପ୍ରିୟ ସ୍ୱପ୍ନ:*** *ଗୁଡାଏ ଚୁପ୍ ଚାପ୍ ଲେଖିବା, ବହିମାନଙ୍କ ସଂଖ୍ୟା ବଢାଇବା, ଓଡ଼ିଆ କଥା ସାହିତ୍ୟ ଓ ଉପନ୍ୟାସକୁ ଅଧିକ ଲୋକପ୍ରିୟ କରାଇବା, 'ଉଚ୍ଚ ହେବା ପାଇଁ କର ଯେବେ ଆଶା, ଉଚ୍ଚ କର ଆଗେ ନିଜ ମାତୃଭାଷା'।*

***କ'ଣ ଭଲପଆନ୍ତି:*** *ସତକୁ। ଟିକିଏ ସେଥିରେ ବ୍ୟତିକ୍ରମ ହେଲେ ରକ୍ତ ତାତିଯାଏ, ଉତ୍‌କ୍ଷିପ୍ତ ହୋଇପଡେ। ବେଳେବେଳେ ଫୁଲ ଭଳି କୋମଳ ତ କେତେବେଳେ ବଜ୍ରଭଳି ଟାଣ। ପିଲାଦିନୁ ବୋଉ ଶିଖାଇଛି ସତ କହି ପଛେ ମଲେ ମରିବି, ସତ କହିବାକୁ କିଆଁ ଡରିବି। ପ୍ରିୟଂ ବଦେତ୍, ଅପ୍ରିୟମ୍ ସତଂ ମା ବଦେତ୍। କିନ୍ତୁ ଅପ୍ରିୟ ସତ୍ୟ କହି ଜୀବନରେ ବହୁ ଅସୁବିଧାର ସମ୍ମୁଖୀନ ହୋଇଛି। ପରିଣାମ ଭୋଗିଛି କିନ୍ତୁ ସ୍ୱାଗତ କରିଛି। ସତ୍ୟ ପ୍ରିୟ ହେଉ ବା ଅପ୍ରିୟ, ସତ୍ୟ ଏକ।*

ଲେଖିବାକୁ ହେଲେ ନିଜକୁ କୃଷକ ସ୍ତରକୁ ନେଇ ଯିବାକୁ ହେବ । ଧରନ୍ତୁ ମୁଁ କୁଷ୍ଠରୋଗୀଙ୍କ ଜୀବନୀ ଉପରେ ଉପନ୍ୟାସ 'ଜୀଅନ୍ତା ଶବ' ଲେଖିଛି । କୁଷ୍ଠରୋଗୀ ସମାଜ ସମ୍ବନ୍ଧରେ ନିଜକୁ ସମ୍ପୂର୍ଣ୍ଣ ରୂପେ ମିଶାଇ ନେଲେ(ଶାରୀରିକ ନୁହେଁ, ମାନସିକ ସ୍ତରରେ), ଭାବନାର ଉପଯୁକ୍ତ ରୂପାନ୍ତର ହେବ ଲେଖନୀରେ । ଜ୍ଞାନ ନଥାଇ ଲେଖିଲେ ବା କହିଲେ ତାହା ଅଜ୍ଞାନୀର ଆୱାଜ ଭଳି ଲାଗିବ । ଦଦରା ସ୍ୱର ଶୁଣିବ କିଏ ? ଏଣୁ ସାଧାରଣ ଜୀବନରେ ବିଶ୍ୱାସ କରୁଥିବା ମଣିଷ ଯଦି ଲେଖକ ହୋଇଯାଏ ତା'ର ଲେଖା ନିଶ୍ଚିତ ଭାବେ ସଫଳ ହେବ ଏବଂ ତା' ଜୀବନଧାରା ମଧ୍ୟ ଶୃଙ୍ଖଳିତ ହେବ । ଆତ୍ମ ସନ୍ତୋଷର ମନ୍ଦାକିନୀ ଧାରା ତା' ଚଲାପଥରେ ପ୍ରବାହିତ ହେବ ।

***ବଂଶୀଧର ରାଉତ:*** *ଆପଣ ସାଧାରଣ ଜୀବନ ଯାପନରେ ବିଶ୍ୱାସ କରନ୍ତି କି ?*

**ରାଧାମୋହନ ମହାପାତ୍ର:** ହଁ, ମୁଁ ସେଇ କାଟର ଲୋକ ।

***ବଂଶୀଧର ରାଉତ:*** *ଲେଖକ ମଣିଷଟିଏ । ମଣିଷର ଭାବାବେଶ ଓ ଲେଖକର ଭାବାବେଗ ମଧ୍ୟରେ ସଂପୃକ୍ତି ଅଛି କି ?*

**ରାଧାମୋହନ ମହାପାତ୍ର:** ଲେଖକ ମଣିଷଟିଏ, କିନ୍ତୁ ସବୁ ମଣିଷ ଲେଖକ ନୁହନ୍ତି । ସାଧାରଣ ମଣିଷଠୁଁ ଲେଖକ ଟିକିଏ ଭିନ୍ନ । ତା'ର ଦୃଷ୍ଟିଶକ୍ତି, ଶ୍ରବଣ ଶକ୍ତି, ଚର୍ବଣ ଶକ୍ତି ଭିନ୍ନ, ସେଥିପାଇଁ ସେ ଅସାଧାରଣ । ଏଣୁ ସାଧାରଣ ଲୋକର ଭାବାବେଶ ଅପେକ୍ଷା ଲେଖକର ଭାବାବେଶ ଭିନ୍ନ ହୁଏ । ଗ୍ରହଣ ଶକ୍ତି, ଅନ୍ତର୍ଭେଦୀ ଦୃଷ୍ଟି ଓ ପରିପ୍ରକାଶ ଶକ୍ତି ଏ ତିନୋଟି ଗୁଣ ଲେଖକ ପାଇଁ ଅନିର୍ବାର୍ଯ୍ୟ ହୋଇପଡେ । ଏଣୁ ସାଧାରଣ ବ୍ୟକ୍ତି ଲେଖକ ସ୍ଥାନରେ ବସି ଲେଖିଲା ବେଳେ ସେ ଅନନ୍ୟ ହୋଇଯାଏ । ସେ ହୋଇଯାଏ କବିରେବ ବ୍ରହ୍ମା । ତା'ର ଲେଖାହୁଏ ନାନୁକରଣୀୟ ।

***ବଂଶୀଧର ରାଉତ:*** *ଆପଣଙ୍କର 'ସତ୍ୟମ୍ ଏବ' ଉପନ୍ୟାସଟି ଏକ ଭିନ୍ନ ସ୍ୱାଦର ଉପନ୍ୟାସ । ବ୍ୟକ୍ତି ଚେତନାର ପରିପ୍ରକାଶ । ତ୍ୟାଗର ଏକ ଅଭିନବ ଦସ୍ତାବିଜ । ମାନବିକ ଆବେଗର ଉଚ୍ଛ୍ୱାସ । ସାମାଜିକ ପଟ୍ଟଭୂମି ସହିତ ପାରିବାରିକ ଜ୍ୱାଳା ଓ ଜୀବନର ନିଛକ ସଂଘାତ । ମନେହୁଏ ଏହି ଉପନ୍ୟାସଟିରେ ଆପଣଙ୍କ ଅନୁଭୂତି ସ୍ୱଚ୍ଛଳ । ଏଥିରେ ଆପଣଙ୍କ କିଛି ଟିପ୍ପଣୀ ଅଛି କି ?*

**ରାଧାମୋହନ ମହାପାତ୍ର:** ମଣିଷ ମଣିଷ ମଧ୍ୟରେ ସୁସମ୍ପର୍କ ପ୍ରତିଷ୍ଠା କରିବା 'ସତ୍ୟମ୍ ଏବ' ଉପନ୍ୟାସର ଅନ୍ତସ୍ୱର । ସାମାନ୍ୟ ସାମାନ୍ୟ କଥାରେ ଭୁଲ୍ ବୁଝାମଣା ହୋଇ ଖୁବ୍ ଉତ୍କଟ ଆକାର ଧାରଣ କରେ । ଏହା ସବୁ ଲୋକର ଅନୁଭୂତି, ମୋର ମଧ୍ୟ । ପ୍ରତ୍ୟେକ ବ୍ୟକ୍ତିର ଭଲ ଗୁଣ ଅଛି, ଖରାପ ଗୁଣ ମଧ୍ୟ ଅଛି, କେବଳ ମାତ୍ରାରେ ପାର୍ଥକ୍ୟ । ମନ୍ଦ ଗୁଣତକ ବାଦ୍ ଦେଇ, ଭଲ ଗୁଣତକ ଗ୍ରହଣ କରିନେଇ ପ୍ରଦୂଷଣ ଦୂର କରିପାରିଲେ ସଂସାରର କଲ୍ୟାଣ ହେବ । ସତ୍ୟ-ଶିବ-ସୁନ୍ଦର ସଂସାରର ପରିକଳ୍ପନା ସର୍ବଦା ସୃଜନଶୀଳ ଲେଖକର ମନ ରାଜ୍ୟରେ ବିରାଜି ଥାଏ । ଲେଖକ ସର୍ବଦା ସତ୍ୟକୁ ଶ୍ରଦ୍ଧା କରେ । ସତ୍ୟାଗ୍ରହୀ ବ୍ୟକ୍ତି ସାମୟିକ ଭାବେ କଷ୍ଟ ଭୋଗିପାରେ, କିନ୍ତୁ ପ୍ରକୃତ ସତ୍ୟ ଉନ୍ମୋଚିତ ହେବା ପରେ କଷ୍ଟ ଦୂର ହୋଇଯାଏ, ସାଫଲ୍ୟର ଆଲୋକରେ ସତ୍ୟାଗ୍ରହୀ ଉଜ୍ଜ୍ୱଳ ହୋଇଉଠେ ।

ସୃଷ୍ଟିର ପ୍ରାକ୍ କାଳରୁ ସତ୍ୟ ଓ ମିଥ୍ୟାର ସଂଘର୍ଷ । ଦେବ ଓ ଦାନବର କଳି ପୁରାଣ କାଳରୁ ବର୍ଣ୍ଣିତ । ଏଣୁ ସତ୍ୟ ଓ ମିଥ୍ୟାର ସମ୍ପର୍କ ଆଲୋକ ଓ ଅନ୍ଧାରର ସଂପର୍କ ଭଳି । ସତ୍ୟାଲୋକକୁ କେବେହେଲେ କଳାମେଘ ଘୋଡାଇ ରଖି ପାରେନା । ଦୀର୍ଘ ଗତିପଥରେ ଆଲୋକର ହିଁ ଆବଶ୍ୟକତା ପଡିଥାଏ । ଏଣୁ 'ସତ୍ୟମ୍ ଏବ' ସେଇ ଆଲୋକର ସନ୍ଧାନ କରିଛି । ଦୁଇ ଅନ୍ତରଙ୍ଗ ବନ୍ଧୁ ସର୍ବେଶ୍ୱର ଓ ଚକ୍ରପାଣିଙ୍କ ମନୋମାଳିନ୍ୟ ଓ କଳିତକରାଳ ହୁଏ ଏବଂ ସଙ୍ଘାତ । କିଏ ଭୁଲ କିଏ ଠିକ୍ କହିପାରିବ ? ସମୟ । ସେଥିପାଇଁ ଲୋଡା ଧୈର୍ଯ୍ୟ, ତ୍ୟାଗ ଓ ତିତିକ୍ଷା- ହୁଏତ ଜୀବନ ବ୍ୟାପି ଯାଇପାରେ । କିନ୍ତୁ ବିଳମ୍ବ ହେଲେ ମଧ ଫଳ 'ଭଲ' ହିଁ ମିଳିବ । ସତ୍ ଜୀବନ ଏକ ସାଧନା । ବୋଧହୁଏ ଏତିକି ଟିପ୍ପଣୀ ଯଥେଷ୍ଟ ହେବ ।

***ବଂଶୀଧର ରାଉତ:*** 'ଝରେ ଶ୍ରାବଣ ଝୁରେ ଫଗୁଣ' ଉପନ୍ୟାସଟି ପଢିଲେ ସିନେମା ଦେଖିଲା ଭଳି ଲାଗେ। କାହିଁକି ?

**ରାଧାମୋହନ ମହାପାତ୍ର:** ସିନେମାକୁ ପର୍ଦ୍ଦାରେ ଦେଖନ୍ତି, ଆବଶ୍ୟକ ହୁଏ ଯନ୍ତ୍ରପାତି, ସରଞ୍ଜାମ ଓ ଉପକରଣମାନ। ଅକ୍ଷର ମାଧମରେ ମନ ପର୍ଦ୍ଦାରେ ସିନେମାଟିଏ ଦେଖି ପାରିଲେ ଲେଖକର ଶ୍ରମ ସାର୍ଥକ ହୁଏ । ସେଇ ଭଳି ଅଭିପ୍ରାୟରେ 'ଝରେ ଶ୍ରାବଣ ଝୁରେ ଫଗୁଣ' ଲିଖିତ ।

***ବଂଶୀଧର ରାଉତ: ଏହି ଉପନ୍ୟାସର ଗତିଶୀଳତାରେ ଆପଣ ଯେ ଜଣେ ସିଦ୍ଧହସ୍ତ କଥାକାର ଏହା ସୁସ୍ପଷ୍ଟ । ତେବେ ଉପନ୍ୟାସଟିକୁ ଏତେ ଦୀର୍ଘ କରିବାର କାରଣ କ'ଣ ?***

**ରାଧାମୋହନ ମହାପାତ୍ର:** କାହାଣୀଟି ନିଶ୍ଚିତ ଭାବେ ଦୀର୍ଘ । ୪୨୨ ପୃଷ୍ଠାର ଉପନ୍ୟାସ । କିନ୍ତୁ ପାଠକ ଖାପଛଡା ବା ଅରୁଚି ବୋଧ କରିବନି କାରଣ ପରବର୍ତ୍ତୀ ଘଟଣା ପ୍ରତି ତା'ର ଉତ୍କଣ୍ଠା ବଢିବ । ତେବେ ପାଠକକୁ କେବଳ ଚଳଚ୍ଚିତ୍ରଟିଏ ଦେଖାଇବା ଲେଖକର ଉଦ୍ଦେଶ୍ୟ ନୁହେଁ । କାହାଣୀ ସହିତ କିଛି ଉପଦେଶ, କିଛି ଉଚିତ୍ ଓ ସମାଜ ପ୍ରତି କିଛି ଅନୁଯୋଗ ରହିଛି, ଯାହା ଚଳଚ୍ଚିତ୍ର ମାଧମରେ ସମ୍ଭବ ହୁଏ ନାହିଁ ।

***ବଂଶୀଧର ରାଉତ: ଏହି ଉପନ୍ୟାସର ମୂଳ ଉଦ୍ଦେଶ୍ୟଟି କେତେଦୂର ସାର୍ଥକ କୁହନ୍ତୁ ତ ?***

**ରାଧାମୋହନ ମହାପାତ୍ର:** ଏଥିରେ ହିନ୍ଦୁ ନାରୀର ମହାନତା ପ୍ରମାଣିତ ହୋଇଛି । ହିନ୍ଦୁ ସ୍ୱାମୀ-ସ୍ତ୍ରୀ ସଂପର୍କ, ଅନୁରାଗ କେବଳ ଇହକାଳରେ ନୁହେଁ, ପରକାଳରେ ମଧ । ହିନ୍ଦୁ ନାରୀର ସତୀତ୍ୱ ବଡ଼ ପବିତ୍ର, ବୋଧହୁଏ ପୃଥିବୀର କୌଣସି ସମାଜରେ ଏପରି ପବିତ୍ରତା ଦେଖାଯାଏ ନାହିଁ । ନାରୀ ସତୀତ୍ୱକୁ ସମ୍ମାନ ଦେଖାଇ ଈଶ୍ୱର ମଧ୍ୟ ଧରାଧାମକୁ ଓହ୍ଲାଇ ଆସନ୍ତି । ସାବିତ୍ରୀ ଓ ମହାସତୀ ଅନୁସୂୟା ଉପାଖ୍ୟାନ ହିନ୍ଦୁ ପରିବାରର ଘରେ ଘରେ ଜଣାଶୁଣା । ଏବେ ମଧ୍ୟ ଆଧୁନିକ ସମାଜରେ ନାରୀର ସ୍ୱାମୀ ପ୍ରତି ଆନୁଗତ୍ୟ ଓ ସ୍ୱାମୀର ସ୍ତ୍ରୀ ପ୍ରତି ଅନୁରକ୍ତି ବିରଳ ହେଲେ ମଧ ଦୃଶ୍ୟମାନ । ସ୍ୱାମୀ-ସ୍ତ୍ରୀ ସୁସମ୍ପର୍କରେ ତିଷ୍ଠିତ ଓ ଘୂର୍ଣ୍ଣାୟମାନ ପରିସ୍ଥିତି ଓ ଘଟଣା ଉପରେ ପର୍ଯ୍ୟବସିତ 'ଝରେ ଶ୍ରାବଣ ଝୁରେ

ଫଗୁଣ' ଉପନ୍ୟାସ । ଏଥିରେ ମଧ୍ୟ ନଗ୍ରାଞ୍ଚଳ ଓ ମଫସଲ ରାଜ୍ୟର ଛବି ପ୍ରାଞ୍ଜଳ ଭାବେ ପ୍ରକଟିତ ହୋଇ ପାରିଛି ବୋଲି ମୋର ବିଶ୍ୱାସ ।

***ବଂଶୀଧର ରାଉତ:** ଶୁଣାଯାଏ, ଏହି ଉପନ୍ୟାସଟିକୁ ନେଇ ଓଡ଼ିଶାର ଜନୈକ ପ୍ରଥିତଯଶା ନିର୍ଦ୍ଦେଶକ ଚଳଚ୍ଚିତ୍ର କରିବାକୁ ଚାହୁଁଥିଲେ । ଏହା ସତ୍ୟ କି ?*

**ରାଧାମୋହନ ମହାପାତ୍ର:** ହଁ । ତେବେ ଆଜିକାଲି ମୂଲ୍ୟବୋଧ ହୀନ, କାହାଣୀ ବିହୀନ ହେଞ୍ଜେଡା ଚଳଚ୍ଚିତ୍ରର ବଜାର ହୋଇଥିବାରୁ ପ୍ରଯୋଜକ-ନିର୍ଦ୍ଦେଶକ ମହାଶୟ ଟିକିଏ ପଛେଇ ଯାଇଛନ୍ତି । ସମୟକୁ ବୋଧେ ଅପେକ୍ଷା କରିଛନ୍ତି । ସେ ପ୍ରଥିତଯଶା ନିର୍ଦ୍ଦେଶକ ହେଉଛନ୍ତି ଆମ ସାଧୁ ମେହର । ତାଙ୍କର ଜୀବନାଦର୍ଶନ ଓ ଦୃଷ୍ଟିଭଙ୍ଗୀ ମୋ ଲେଖା ଓ ରୁଚି ସହିତ ବହୁତ ମେଳ ଖାଉଛି । ସେ ମଧ୍ୟ 'ପ୍ରଥମ ପ୍ରଭାତ'କୁ ଚଳଚ୍ଚିତ୍ର କରିବାକୁ ମୋଠୁଁ ଅନୁମତି-ଚୁକ୍ତି ନେଇଛନ୍ତି । ମୋଠୁଁ ମଧ୍ୟ ୧୩ଟି ନିର୍ବାଚିତ/ମନୋନୀତ ଗଳ୍ପ ନେଇଛନ୍ତି ଟିଭି ସିରିଆଲରେ ଭର୍ତ୍ତି କରିବା ପାଇଁ କେଉଁ ଏକ ବ୍ୟବସାୟୀ କମ୍ପାନୀ ଆନୁକୂଲ୍ୟରେ । ବୋଧହୁଏ ଏ ସବୁର ପ୍ରକୃଷ୍ଟ ସମୟ ଆସିନାହିଁ । ଏବେ ସିନେମା ନ ହେଲେ ମଧ୍ୟ କେବେ ହେବ । 'ବିପୁଳ ଚ ପୃଥ୍ୱୀ ନିରବଧି କାଳ'ରେ ବିଶ୍ୱାସୀ ମୁଁ । ସୃଷ୍ଟି କରିଯାଅ ଯେତେ ପାର, ପ୍ରଚାରମୁଖୀ ହୁଅ ନାହିଁ । ଧରା ଧରି ଯୁଗର ଗୋଡାଣିଆ ହୁଅ ନାହିଁ, ଯୁଗ ତୁମ ପଛରେ ଗୋଡାଇବ ଯଦି ତୁମ ଲେଖନୀର ଶକ୍ତି ଥାଏ । ଆତ୍ମ ବିଶ୍ୱାସରେ ଲେଖକ ଅଟଳ ରହିବା ଉଚିତ୍ । ସେତକ ଯଦି ଲେଖକର ନାହିଁ, ଖାଲି ପ୍ରଚାରର ଫମ୍ପା ସ୍ୱର ମେଲାଇ ମୁଁ ତତ୍ତ୍ୱର ମୁଖା ପିନ୍ଧି ଲେଖକ କାଳଜୟୀ ହୋଇପାରେ ନାହିଁ । ବରଂ ଆତ୍ମ ପ୍ରଚାର ଲେଖକର ଏକ ଆତ୍ମଘାତୀ କାର୍ଯ୍ୟ । ଛଳନାରେ ଅଭିନୟ ହୋଇପାରେ କିନ୍ତୁ ତାହା ଜନମାନସରେ ବେଶୀ ଦିନ ରହି ପାରେ ନାହିଁ, ଇନ୍ଦ୍ରଧନୁର ରଙ୍ଗ ଭଳି ହୁଏତ କ୍ଷଣିକ ।

***ବଂଶୀଧର ରାଉତ:** ତମସା ତୀର୍ଥ ଉପନ୍ୟାସରେ ଆପଣ ଜଣେ ଯୁଗଦ୍ରଷ୍ଟାର ଆସନ ବି ଦାବି କରନ୍ତି । ସମାଜର ସମ୍ଭ୍ରାନ୍ତ ପରିବାର ପ୍ରତି ଏକ ଚେତାବନୀ । ଏଥିରେ ଶିକ୍ଷା ଓ ପରାମର୍ଶର ସ୍ୱର ନିହିତ । ନଷ୍ଟ ଚରିତ୍ର କୁ ସୁଧାରି ନେଇ ଶ୍ରେଷ୍ଠ ଚରିତ୍ରରେ ଗଢି ତୋଳିଛନ୍ତି । ଉପନ୍ୟାସର ପୃଷ୍ଠଭୂମି ସମ୍ବନ୍ଧରେ କିଛି କହିବେ କି ?*

**ରାଧାମୋହନ ମହାପାତ୍ର:** ଆମ ସମାଜରେ ବିବାହ ଏକ ଯୌନ ଖେଳନା ନୁହେଁ । ଆମ ପରିବାର କେବଳ ସନ୍ତାନ ଉତ୍ପାଦନର କେନ୍ଦ୍ର ନୁହେଁ । ବଂଶ ବୃଦ୍ଧି ଛଡା ଦାମ୍ପତ୍ୟ ଜୀବନର ଅନ୍ୟ ଏକ ଉଦ୍ଦେଶ୍ୟ ଅଛି । ଏକ ପାରମାର୍ଥିକ ସ୍ୱର ସ୍ୱାମୀ-ସ୍ତ୍ରୀ ସଂପର୍କରେ ନିହିତ । ଏଇ ସ୍ୱର ସଙ୍ଗମର ବ୍ୟତିକ୍ରମ ବା ବିଚ୍ୟୁତି ଘଟିଲେ ଜୀବନ ବିଡ଼ମ୍ବିତ ହୁଏ, ତାରଛିଣ୍ଡା ସୀତାରର ବିଦୀର୍ଣ୍ଣ ସ୍ୱର ଭଳି ପାରିବାରିକ ଜୀବନ ଯନ୍ତ୍ରଣାମୟ ହୋଇଉଠେ । ସଂସାର ହୋଇଯାଏ ଜ୍ୱାଳାମୁଖୀ । ଏହି ପରିପ୍ରେକ୍ଷୀ ଓ ପୃଷ୍ଠଭୂମିରେ ଉପନ୍ୟାସଟି ରଚିତ ହୋଇଅଛି ।

ମଣିଷ ଭୁଲ୍ କରିଥାଏ । ଅନୁଶୋଚନା ଜଳରେ ଭୁଲକୁ ସଫା କରାଯାଇପାରେ । ସଂଶୋଧନ ଉନ୍ନତିର ଲକ୍ଷଣ । ମହର୍ଷି ବାଲ୍ମୀକି ଦସ୍ୟୁ ରତ୍ନାକରର ଏକ ସଂଶୋଧିତ ସଂସ୍କରଣ । ସଂସ୍କାର ହିଁ ସମାଜ ଓ ସୃଷ୍ଟି ପ୍ରତି କଲ୍ୟାଣକର । ଭୁଲରୁ ଭେଲ୍ ଆଡକୁ ଗତି ଅପେକ୍ଷା ଭୁଲରୁ ଭଲ ଆଡକୁ ସ୍ୱାଗତଯୋଗ୍ୟ ।

***ବଂଶୀଧର ରାଉତ: ଓଡ଼ିଆ ଭାଷାରେ ଶିକାର ଉପନ୍ୟାସ ବିରଳ ହୋଇଥିଲେ ମଧ ଆପଣ କିଛି ଶିକାର ଗଳ୍ପ ଓ ଦୁଇଟି ଶିକାର ଉପନ୍ୟାସ ଲେଖି ଅଭାବ ଦୂର କରିପାରିଛନ୍ତି । ତେବେ ଉପନ୍ୟାସ ରଚନା ପାଇଁ ଅନେକ ଦିଗଥିଲେ ସୁଦ୍ଧା ଆପଣ ଏଇ ଶିକାର ଦିଗଟିକୁ ଆପଣେଇ ନେବାରେ କି ତାତ୍ପର୍ଯ୍ୟ ଅଛି ?***

**ରାଧାମୋହନ ମହାପାତ୍ର:** ପ୍ରତ୍ୟକ୍ଷ ଅନୁଭୂତି ସମ୍ୱଳିତ ଉପନ୍ୟାସ ଦ୍ୱୟ 'ଜଙ୍ଗଲର ଜମାନବନ୍ଦୀ' 'ବ୍ୟାଘ୍ର ନିନାଦ' । ସେଇପରି ଅନେକ ଶିକାର କାହାଣୀ ରଚିତ - ରାଜ ଅତିଥି, ନିଶାଚର, ଚନ୍ଦ୍ରଲୋକରେ ଚକୁଆ ଶିକାର, ବାଘ ସଂଗେ ମୁହାମୁହିଁ, ଅରଣ୍ୟର ଅଜଗର ଇତ୍ୟାଦି । ଆଉ କେତୋଟି ଶିକାର ଗଳ୍ପ ଲେଖାଯାଇଛି । ଆସନ୍ତା ବର୍ଷ ଅରଣ୍ୟ ଅତିଥି(ଅଙ୍ଗେ ଅଙ୍ଗେ ଅନୁଭୂତି)କୁ ଏକ ଉପନ୍ୟାସ ଆକାରରେ ଉନ୍ମୋଚିତ ହେଉଛି । କାହିଁକି ଶିକାର ଦିଗଟିକୁ ଲେଖାରେ ଆପଣେଇ ନେଲି 'ଜଙ୍ଗଲର ଜମାନବନ୍ଦୀ' ଉପକ୍ରମଣିକରେ ବର୍ଣ୍ଣିତ । ଆଉ ଥରେ ଦୋହରାଇ ଦେଉଛି- **"ଯାହା ଲେଖୁଛି, ସତ୍ୟ ଲେଖୁଛି । ଯେଉଁ ବେଳର ଘଟଣା ଲେଖୁଛି, ସେତେବେଳେ ମୁଁ ଲେଖକ ନଥିଲି, ଥିଲି ବନ୍ଧୁକଧରା ଶିକାର ଅନ୍ୱେଷୀ ଜଣେ ଉଦ୍ଦାମ ବନଚାରୀ । ଘଞ୍ଚ ଅରଣ୍ୟ ଭିତରେ ପାଦରେ ଘୂରିବା ମୋର ଥିଲା ପ୍ରବଳ ଝୁଙ୍କ । ସେତେବେଳେ ବନ ବନାନୀର ଘନ ଗହଳ ଭିତରେ ଦିନ ରାତିର ତଫାତ୍ ବୁଝୁ ନଥିଲି । ବନାକର୍ଷଣ ମୋତେ ବାନ୍ଧି ରଖିଥିଲା, ଅରଣ୍ୟ ଚାରଣ ମୋର ପ୍ରିୟାଦପିପ୍ରିୟ ଥିଲା । କିନ୍ତୁ ଘଟଣାର ପ୍ରବହମାନ ପ୍ରକ୍ରିୟା ଓ ପରିସ୍ଥିତିର ପରିବର୍ତ୍ତନରେ ପରମେଶ୍ୱର ମୋ ହାତରୁ ବନ୍ଧୁକ ଛଡାଇ ନେଇ କଲମଟିଏ ଧରାଇ ଦିଅନ୍ତି; ଜଙ୍ଗଲକୁ ଆଖି ଆଗରୁ ଦୂରେଇ ନେଇ ଥୋଇ ଦିଅନ୍ତି କାଗଜର ବିସ୍ତୀର୍ଣ୍ଣ ବନାନୀଟିଏ, କଲମକୁ ସେଥିରେ ପରୀକ୍ଷା କରିବାକୁ ଯୋଗାଇ ଦିଅନ୍ତି ଲେଖନୀର କଳା-କାରସାଦୀ ଶବ୍ଦଗୋଳା । ଜାଣେନା ମୋ ପରୀକ୍ଷାଗାରରେ ମୁଁ କେତେଦୂର ସଫଳ । ତଥାପି ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ମୋ ପରୀକ୍ଷାଗାରରେ ନିମଜ୍ଜିତ ରହିବି ବୋଲି ସଂକଳ୍ପ କରିଛି । ଉତ୍ତିର୍ଣ୍ଣତାର ଆଶା ରଖିନି, ବିଫଳତାର ଗ୍ଲାନି ମନକୁ ସ୍ପର୍ଶ କରିନାହିଁ, ଗୋଟାଏ ଆନ୍ତରିକ ଆକର୍ଷଣରେ ଯେମିତି ସମ୍ମୋହିତ..."**

ମୋ ଜୀବନରେ ଶିକାରୀରୁ ଲେଖକ ହେବା ଏକ ଦୈବୀ ଯୋଗ, ଏକ ଈଶ୍ୱର ଆର୍ଶୀବାଦ । ଏହା ବୋଧେ ଇଚ୍ଛାମୟଙ୍କ ନିର୍ଦ୍ଦେଶ । ନିଜ ଅନୁଭୂତି କଥା କହୁଛି । ବାଲେଶ୍ୱରରକୁ ବଦଳି ହୁଏ

| ପ୍ରଶ୍ନୋତ୍ତର |
|---|
| (କ) ବଡ କ'ଣ ? |
| : ନିଜକୁ ଛୋଟେଇ ନେବା । |
| (ଖ) ସୁଖ କଣ ? |
| : ଦୁଃଖ ବେଳରେ ହସିବା । |
| (ଗ) ସତ୍ୟ କ'ଣ ? |
| : ଇନ୍ଦ୍ରିୟର ଅନୁଭବ । |
| (ଘ) ଶେଷ କେଉଁଠି ? |
| : ଆରମ୍ଭ ଯେଉଁଠୁ ହୋଇଥାଏ । |
| (ଙ) ଛଳନାର ଅର୍ଥ ? |
| : ବିନା ଗର୍ଭ ଯନ୍ତ୍ରଣାରେ ଶିଶୁ ହାସଲ କରିବାର ଲାଳସା । |
| (ଚ) ସଂସାରର ଲକ୍ଷ୍ୟ ? |
| : କ୍ରିଡାବିତ୍‌ର କ୍ରିଡା କୌଶଳତା ହାସଲ କରିବା । |
| (ଛ) ସନ୍ନ୍ୟାସର ସନ୍ଦେଶ ? |
| : ଖଟ, ଖାଅ । ଠକ ନାହିଁ । |
| (ଜ) ସାମାଜିକତାର ସାହିତ୍ୟବୋଧ କ'ଣ ? |
| : ଅଲଗା ରହି ଏକତ୍ୱବୋଧ । |
| (ଝ) ଭଲ ପାଇବାର ମାନେ ? |
| : କିଛି ନିଜ ପାଇଁ ନେଇଯିବାର ଇଚ୍ଛା । |
| (ଞ) ଠକାମି କାହାକୁ କୁହାଯାଏ ? |
| : ପ୍ରତିଶ୍ରୁତିର ବିପରୀତ । |
| (ଟ) ସଫଳତାର ତାତ୍ତ୍ୱିକ ମୂଲ୍ୟ ? |
| : ବିଫଳତାର କାରଣ ଗୁଡିକର ମୂଲ୍ୟାଙ୍କନ ଆଙ୍କିବା । |

ସମ୍ବଲପୁରରୁ । ବାଲେଶ୍ୱରରେ ଶିକାର ସୁଯୋଗ ନଥାଏ । ଶିକାରୀ ବନ୍ଧୁ ପ୍ରେମ୍ ସାଗର ତିୱାରୀ ଦୂରେଇ ଯାଇଥା'ନ୍ତି ଏବଂ ବନ୍ଧୁକ ଗୁଳିଗୋଳା ସବୁ ଘରର କୋଣରେ ଅବ୍ୟବହାର୍ଯ୍ୟ ପଦାର୍ଥ ଭାବେ ଡେରା ହୋଇଥାନ୍ତି । ମାତ୍ର ଗୋଟିଏ ମାସ ପରେ ଦେଖେ, ଗୋଟାଏ ଉଈ ହୁଙ୍କା ଦୁଇଟି ବନ୍ଧୁକ ଓ କାଟ୍ରିଜ୍‌ପୂର୍ଣ୍ଣ ବେଲ୍‌ଟ୍‌ଟିକୁ ସଂପୂର୍ଣ୍ଣ ଭାବେ ଗ୍ରାସ କରିଦେଇଛି । ସେଇ ଦିନଠୁଁ ଏକ ବିକାର ଜାଗ୍ରତ ହେଲା ମନରେ । 'ଜୀବେ ଦୟା ଶିବେ ଭକ୍ତି'ର ଜୁଆର ମନକୁ କବଳିତ କଲା । ମା' ନିଷାଦର ଆହ୍ୱାନ ମନ ଭିତରେ ଧ୍ୱନିତ ହେଲା ବାରମ୍ବାର । ବିଧିର ନିର୍ଦ୍ଦେଶ ଅନୁଯାୟୀ ବନ୍ଧୁକ ଛାଡିଲି, କଲମ ଧରିଲି । ବେଶ୍ ଲେଖାଗୁଡିକ ଆତ୍ମତୃପ୍ତି ଦେଉଛନ୍ତି ।

'ଅରଣ୍ୟ ଅତିଥି' ଉପନ୍ୟାସ ମଣିଷ ଓ ପଶୁର ସଂପର୍କ ଉପରେ ଲିଖିତ । ସ୍ନେହ ହିଂସ୍ରତାକୁ ଜୟ କରିପାରେ- ଉପନ୍ୟାସର ବାର୍ତ୍ତା, ଗପର ସଫଳତା ସମ୍ବନ୍ଧରେ ମୁଁ କିଛି ମତ ନ ଦେଇ ଆପଣ କହିବା ଭଲ ।

***ବଂଶୀଧର ରାଉତ:*** *'ଜଙ୍ଗଲର ଜମାନବନ୍ଦୀ' ଆପଣଙ୍କର ଏକ ବହୁ ଚର୍ଚ୍ଚିତ ଉପନ୍ୟାସ । ଏହି ଉପନ୍ୟାସ ରଚନା ପାଇଁ ଆପଣଙ୍କ ଶିକାରୀ ନିଶା ସୁସ୍ପଷ୍ଟ । ତେବେ ଏହା ଏକ କାଳଜୟୀ ଉପନ୍ୟାସ ହୋଇପାରିବ କି ?*

**ରାଧାମୋହନ ମହାପାତ୍ର:** ଯେଉଁ ଲେଖାରେ ଜୀବନବୋଧ, ତାହା କାଳଜୟୀ । ଏହା ଏକ ସାମାଜିକ ଉପନ୍ୟାସ ନୁହେଁ, ଜଙ୍ଗଲ ସମ୍ବନ୍ଧୀୟ । ହିଂସ୍ର ଜନ୍ତୁ, ଶାନ୍ତ ଜନ୍ତୁ, ଆଦିବାସୀ ଜୀବନ ସଂପର୍କରେ ଲିଖିତ ଏବଂ ମୋ ନିଜ ଅଭିଜ୍ଞତାରୁ ସଂଗୃହିତ । ଏଥିରେ ମୁଁ ହେଉଛି ପୁସ୍ତକର ନାୟକ । ମୋ ନିଜ କଥା କାଳଜୟୀ ହେବ କିପରି ? କେବଳ ରୋମାଞ୍ଚମୟ ଘଟଣା ଓ ଆଦିବାସୀ ସରଳ ଜୀବନ ପୁସ୍ତକରେ ବର୍ଣ୍ଣିତ । ପାଠକକୁ ଭଲ ଲାଗିଲେ ଯଥେଷ୍ଟ । ଏହାକୁ କାଳଜୟୀ କରିବାକୁ କଲମ ଧରି ନଥିଲି । କେବଳ ସୁଖପାଠ୍ୟ ଏହାର ଆଭିମୁଖ୍ୟ ।

***ବଂଶୀଧର ରାଉତ:*** *ବ୍ୟାଘ୍ର ନିନାଦ ଉପନ୍ୟାସଟିର ସୃଷ୍ଟି ସମ୍ପର୍କରେ କିଛି କହନ୍ତୁ ।*

**ରାଧାମୋହନ ମହାପାତ୍ର:** 'ବ୍ୟାଘ୍ର ନିନାଦ' ଆଉ ଏକ ଉଭରଣ । ବାର ପାହାଡ ବନ ଭ୍ରମଣ ବେଳେ ଦେଖିଲି ଗୋଟେ ଚିତାବାଘ ଲଢା ଲଢି ପରେ ଜଳପ୍ରପାତର ଖାତ ଭିତରେ ପଡ଼ିଛି । ବହୁ କଷ୍ଟରେ ତାକୁ ଉଦ୍ଧାର କରାଇଲି ଏବଂ ଦେଖିଲି ତା ଅଣ୍ଟା ଭାଙ୍ଗି ଯାଇଛି । ତାକୁ ଚିକିତ୍ସା କରିବା ଅବସରରେ ତା'ର ହିଂସ୍ର ପ୍ରକୃତି ଦୂର ହୋଇଗଲା ଏବଂ ପୁଣି ତାକୁ ଜଙ୍ଗଲରେ ଛାଡି ଦିଆଗଲା । ସେ ଦୁଇମାସ ମଧ୍ୟରେ ଏମିତି ମଣିଷମାନଙ୍କ ସଂସ୍ପର୍ଶରେ ଆସି ଯିବାରୁ ମଣିଷକୁ ମିତ୍ର ଭାବି ଆଉ କୁଆଡେ ଗଲାନାହିଁ । ଶେଷରେ କୌଣସି ଜଣେ ବ୍ୟାଧର ଗୁଳି ଚୋଟରେ ସୁଧାର ବାଘଟା ପ୍ରାଣ ହାରିଲା। ଏଇ ବିଷୟ ବସ୍ତୁ ଉପରେ ପର୍ଯ୍ୟବସିତ ଶିକାର କାହାଣୀ 'ବ୍ୟାଘ୍ର ନିନାଦ' ଯେଉଁ ଅଞ୍ଚଳରେ ଘଟଣାଟି ଘଟିଥିଲା, ଅତୀତରେ ତାହା ବୀର ସୁରେନ୍ଦ୍ର ସାଏଙ୍କ ଅନୁନ୍ମୋଚିତ କିଛି ବୀରତ୍ୱର କାହାଣୀ ଏବଂ ସମ୍ବଲପୁରର ଇତିହାସ କଥା କିଞ୍ଚିତ୍ ବର୍ଣ୍ଣିତ ହୋଇଛି ବ୍ୟାଘ୍ର ନିନାଦରେ । ସୁରେନ୍ଦ୍ର ସାଏଙ୍କୁ ବାରପାହାଡର ବ୍ୟାଘ୍ର ଭାବେ ମୁଁ ଅଭିହିତ କରିଛି। ସ୍ୱାଧୀନତା ସଂଗ୍ରାମର ସେ ଅନ୍ୟତମ ଶ୍ରେଷ୍ଠ ବୀର ବୋଲି ମତ ଦେଇଛି । ଇତିହାସ ତାଙ୍କୁ ଯଥେଷ୍ଟ ସମ୍ମାନ ଦେଇ ନାହିଁ- ମୋର କ୍ଷୋଭ । ବ୍ୟାଘ୍ର ନିନାଦରେ ସୁରେନ୍ଦ୍ରଙ୍କୁ ଯଥେଷ୍ଟ ସମ୍ମାନ ଦେଇଥିବାରୁ ମୁଁ ସନ୍ତୁଷ୍ଟ ।

***ବଂଶୀଧର ରାଉତ:*** *ହିଂସ୍ର ବନ୍ୟ ଜନ୍ତୁମାନଙ୍କୁ ନେଇ ଉପନ୍ୟାସ ଲେଖିବାର କଳା ସ୍ୱତନ୍ତ୍ର । ତେବେ ଏହି ଉପନ୍ୟାସ ରଚନା ପାଇଁ ସେଇ ମାନଙ୍କ ଜୀବନ ଚରିତ୍ର ଓ ଜୀବନ ଯାତ୍ରାକୁ ହୃଦୟଙ୍ଗମ କରିବାରେ କେତେଦୂର ସମର୍ଥ ଦୟାକରି କହନ୍ତୁ ।*

**ରାଧାମୋହନ ମହାପାତ୍ର:** ଜଙ୍ଗଲର ଜନ୍ତୁମାନଙ୍କୁ ପ୍ରତ୍ୟକ୍ଷ କରିବାର ସୁଯୋଗ ଖୁବ୍ କମ୍ ମିଳେ । ଏଥିପାଇଁ ଯଥେଷ୍ଟ ସାହସ ଦରକାର । ଦେଶ କ୍ରମଶଃ ଜନବହୁଳ ଓ ବନବିରଳ ହୋଇପଡ଼ୁଛି । ପୂର୍ବର ଘନ ଜଙ୍ଗଲ ଆଉ ନାହିଁ; ତଦନୁଯାୟୀ ଜୀବମାନଙ୍କ ସଂଖ୍ୟା କ୍ଷୟ ହେବାରେ ଲାଗିଛି । ଏପରିସ୍ଥଳେ ଜଙ୍ଗଲ ବୁଲି ଜନ୍ତୁଟିଏ ଦେଖିବା ସୌଭାଗ୍ୟର ବିଷୟ। କ୍ଷୟିଷ୍ଣୁ ବାଘ କ୍ୱଚିତ୍ ଅଛନ୍ତି, ନିର୍ଦ୍ଦିଷ୍ଟ ଅଭୟାରଣ୍ୟରେ ଠାଏ ଠାଏ ଦେଖାଯା'ନ୍ତି (ସିମିଳିପାହାଡ଼, ସୁନାବେଡ଼ା, ଚିକରପଡ଼ା)। ଅତୀତର ମୋର ବନାକର୍ଷଣ ପ୍ରକୃତି ମୋତେ ବଣ୍ୟଜନ୍ତୁଙ୍କ ନିକଟତର କରିଛି । ବଣ୍ୟ ପଶୁଙ୍କୁ ସାମନା କରିଛି। ପଶୁମାନଙ୍କ ସମ୍ବନ୍ଧରେ ଜାଣିବାକୁ ହେଲେ ନିଜର ଅନୁସନ୍ଧିତ୍ସା ହିଁ ପିପାସା ପୂରଣ କରିବ । ମହାରୂପୀ ପ୍ରକୃତି ଏକ ବିଶାଳ ଗ୍ରନ୍ଥାଗାର। ଅରଣ୍ୟ କୋଳ, ଝରଣା କୂଳ, ବୃକ୍ଷ ମୂଳ, ପର୍ବତ ଚୂଳରେ ଏତେ ଉପାଦାନ ଭରି ରହିଛି ଯେ ଜୀବନସାରା ଅଧ୍ୟୟନ କରିବସିଲେ ତାହା ଶେଷ ହେବ ନାହିଁ । ଯେତେ ଦେଖୁଥିବ, ସେତେ ପଢୁଥିବ, ଯେତେ ଖୋଜୁଥିବ, ତଥ୍ୟ ଆହୁରି ଅଜଣା ରହିଯିବ । ଜୀବନକାଳ ମଧ୍ୟରେ ବେଳାଭୂମିର ବାଲି ବିନ୍ଦୁଟିଏ ଭଳି ଜ୍ଞାନ ଆହରଣ କରି ହେବ କି ନାହିଁ ସନ୍ଦେହ । ଜଙ୍ଗଲ ସମ୍ବନ୍ଧରେ ଓ ତହିଁର ଜୀବଜନ୍ତୁ ସମୂହର ହାବଭାବ, ଚାଲିଚଳନ, ପ୍ରକୃତି ପ୍ରବୃତ୍ତି ସମ୍ବନ୍ଧରେ ମୋର ଜ୍ଞାନ କାଣିଚାଏ ମାତ୍ର । ତାକୁଇ ସମ୍ବଳ କରି ମୁଁ ଯାହା ଲେଖିଛି । ଯେଉଁମାନେ କହନ୍ତି ଯେ ଥରେ ଦୁଇଥର ବନ ବୁଲି ଆସିଲେ ସେମାନେ ସବୁ ଜାଣିଗଲେ, ତାହା କେବଳ ମିଥ୍ୟା, ବାହାସ୍ଫୋଟ ଓ ବୋକାମି ହୋଇପାରେ ।

***ବଂଶୀଧର ରାଉତ:** ଆପଣଙ୍କ ପିଲାଦିନ ବିଷୟରେ କିଛି କୁହନ୍ତୁ ?*

**ରାଧାମୋହନ ମହାପାତ୍ର:** କିଛି ନୁହେଁ, ସମୁଦାୟ କହିଛି । ଜଙ୍ଗଲର ଜମାନବନ୍ଦୀ ଓ ବ୍ୟାଘ୍ର ନିନାଦରେ ଲିପିବଦ୍ଧ । ମୋ ବାଲ୍ୟଜୀବନ ସମ୍ବନ୍ଧରେ ସବିଶେଷ ବିବରଣୀ ପାଇପାରିବେ ସେଇ ଦୁଇଟି ଉପନ୍ୟାସରୁ । ତେବେ ସୌଜନ୍ୟ ଦୃଷ୍ଟିରୁ ଆଉଥରେ ଚୁମ୍ବକରେ କହି ଦେଉଛି । ବାଲ୍ୟକାଳରେ ପାଠ ଅପେକ୍ଷା ଶାଠରେ ବେଶୀ ମନଥିଲା । ଭୂତ ଡାଆଣୀଙ୍କ ପିଛା କରି ନିର୍ଭୀକତାର ବୀଜ ମନରେ ବୁଣି ହୋଇ ରହିଥିଲା । ଗାଉଁଲୀ ଅସ୍ତ୍ର କାଣ୍ଡଶର, ପେଟ୍ଟି(ଛିଟିକିଣି), କାଣ୍ଡିଆ, ବାଟୁଳିଖଡା, ଭାଲି, ଟେଣ୍ଡା, କୁରାଢ଼ି ଆଦି ବ୍ୟବହାର କରିବାରେ ପାରଙ୍ଗମ ଥିଲି । ଭବିଷ୍ୟତ ଆଗାମୀ ଜୀବନରେ ଏଇ ବାଲ୍ୟଗୁଣଗୁଡ଼ିକ ଠୁଳ ହୋଇ ଶିକାରୀର ସାହାସିକତା ଭାବେ ପ୍ରକଟିତ ହୋଇଥିଲା । ଶିଶୁ କାଳରେ ମଣିଷର ଗୁଣ ଜଣା ପଡ଼ିଯାଏ ଯେପରି ସକାଳ ଦିନର ରୂପରଙ୍ଗ ସୂଚାଇ ଦିଏ ।

***ବଂଶୀଧର ରାଉତ:** ଆପଣଙ୍କର ପ୍ରଥମ ଲେଖା କ'ଣ ? ଏହା କେବେ ଓ କେଉଁଠି ପ୍ରକାଶିତ ହୋଇଥିଲା ?*

**ରାଧାମୋହନ ମହାପାତ୍ର:** ୧୯୬୪ ସାଲରେ ଇଂରାଜୀ ଗପ 'In Retrosepection" my magazine of India(Bombay) ରେ ପ୍ରକାଶିତ ହୋଇଥିଲା । ପ୍ରଥମ ପ୍ରଭାତ ସଂପର୍କିତ ପ୍ରଶ୍ନର ଉତ୍ତରରେ କହିଛି । ଦେଖନ୍ତୁ ।

**ବଂଶୀଧର ରାଉତ:** *ଆପଣ ଜଣେ ଦାୟିତ୍ୱସଂପନ୍ନ ପଦସ୍ଥ ସରକାରୀ ଅଫିସର । ଏତେ ବ୍ୟସ୍ତତା ଭିତରେ ଆପଣଙ୍କ ସାହିତ୍ୟ ସାଧନାରେ କେବେ କିଛି ବ୍ୟାଘାତ ଘଟିଛି କି ?*

**ରାଧାମୋହନ ମହାପାତ୍ର:** ନା, ବରଂ ଏହା ଦ୍ୱାରା ମୋର ସମୟାନୁବର୍ତ୍ତିତା ଓ କାର୍ଯ୍ୟଦକ୍ଷତା ବୃଦ୍ଧି ପାଇଛି । ଅଫିସ କାର୍ଯ୍ୟ ନିଷ୍ଠାପର ଭାବେ ସମାପନ କରେ ଏବଂ ଅଫିସରୁ ଯେତେବେଳେ କ୍ଳାନ୍ତ ହୋଇ ଘରକୁ ଫେରେ ଯେତେ ଚଂଚଳ ସମ୍ଭବ ନିଜ ଲେଖା ପଢାରେ ବସିଯାଏ, ମଜିଯାଏ, କାର୍ଯ୍ୟାଳୟର କର୍ମକ୍ଲିଷ୍ଟତା ଦୂର ହୋଇଯାଏ, ମନ ଅନ୍ୟ ଏକ ଭିନ୍ନ ଜଗତ ଭିତରକୁ ପଶିଯାଏ । ସେ ଦୁନିଆର ସ୍ୱାଦ ଅବର୍ଣ୍ଣନୀୟ, ପ୍ରକାଶ କରି ପାରୁନି ଠିକ୍ ଭାବେ ବୋଧେ । ସବୁ ଅନୁଭବ କ'ଣ ପ୍ରକାଶ କରିହୁଏ ? ଏଣୁ ଅଫିସିର କାର୍ଯ୍ୟବ୍ୟସ୍ତତା ମୋ ସାହିତ୍ୟ ସାଧନାରେ କୌଣସି ବ୍ୟାଘାତ ସୃଷ୍ଟି କରିନାହିଁ । ବରଂ ଉଭୟେ ପରିପୂରକ ମୋ ପାଇଁ । ଦାନାପାଣି ପାଇଁ ଯେପରି କର୍ତ୍ତବ୍ୟ ନିଷ୍ଠା ଅପରିହାର୍ଯ୍ୟ, ସାଧନା ପାଇଁ ମଧ୍ୟ ଦାନାପାଣି ବା ଅନ୍ନସଂସ୍ଥାନର ଆବଶ୍ୟକତା ରହିଛି ।

**ବଂଶୀଧର ରାଉତ:** *ସାହିତ୍ୟ ସାଧନା ପାଇଁ ଆପଣ କି କି ପୁରସ୍କାର ପାଇଛନ୍ତି ?*

**ରାଧାମୋହନ ମହାପାତ୍ର:**
ଚିତ୍ର ଦର୍ପଣ ପୁରସ୍କାର, ୧୯୮୨
ରାଷ୍ଟ୍ରଦୂତ ପୁରସ୍କାର, ୧୯୮୪
ବାର୍ତ୍ତାଉର୍ମି ସମ୍ମାନ, ୧୯୮୫
ପ୍ରତିଶ୍ରୁତି ସମ୍ମାନ, ୧୯୮୬
ସାଂସ୍କୃତିକ ସମ୍ମାନ, ବାଙ୍କୀ, ୧୯୮୬
ସ୍ୱାକ୍ଷର ସାରସ୍ୱତ ସମ୍ମାନ- ୧୯୯୬
ଶ୍ୱେତା ସମ୍ମାନ, ପାରଳାଖେମୁଣ୍ଡି- ୧୯୯୪
ଚିରସଂଧାନ ସମ୍ମାନ (ଉପନ୍ୟାସ)- ୧୯୯୫
ମହଲ ସାରସ୍ୱତ ସମ୍ମାନ- ୧୯୯୫
ଚଲାପଥ ସମ୍ମାନ, ୧୯୯୩

**ବଂଶୀଧର ରାଉତ:** *ଆଜି କାଲି ପୁରସ୍କାରଗୁଡିକ ବିବାଦୀୟ । ଏଥିରେ ଆପଣଙ୍କ ମତ କ'ଣ ?*

**ରାଧାମୋହନ ମହାପାତ୍ର:** ଆପଣଙ୍କ ମତାମତ ଯଥାର୍ଥ । ପୁରସ୍କାର ଉତ୍ସାହସୂଚକ ନ ହୋଇ କୁହାର ସ୍ୱର ତୋଳୁଛି । ଏହାର କାରଣ ନିରପେକ୍ଷ ଭାବେ ବିଚାରକ ମଣ୍ଡଳୀ ଯୋଗ୍ୟତା ବିଚାର କରୁନାହାନ୍ତି । ଧରାଧରି, ପ୍ରୀୟାପ୍ରୀତି, ପ୍ରଭାବ, ଗୋଡ଼ାଣିଆ ଭାବ ପଦପଦବୀ ସ୍ପଷ୍ଟଭାବେ ଧରାପଡିଯାଉଛି । ଏଣୁ ପୁରସ୍କାର ବିଜେତାଙ୍କ ପ୍ରତି ଜନତା ମନରେ ଶ୍ରଦ୍ଧାଭାବ ଉପୁଜି ପାରୁନାହିଁ । ଲୁଚିଛି ନା ଗୋଡ଼ ଯୋଡିକ ଦିଶୁଛି ଢଙ୍ଗରେ ସବୁ ପଦାରେ ପଡିଯାଉଛି । ଅଧୁନା ଉଚ୍ଚସ୍ତରର ପୁରସ୍କାରର କେତୋଟି ଦୃଷ୍ଟାନ୍ତ ନିଅନ୍ତୁ ଏବଂ ଜନଧାରଣା କ'ଣ ? ବରଂ ପୂର୍ବରୁ ସେ ଯେତିକି ନାମାର୍ଜନ

କରିଥିଲେ, ସେତକ ନଷ୍ଟ ହୋଇଗଲା । ଜନମତ ହେଲା, ସେ ପୁରସ୍କାର ଖରିଦ କରିନେଲେ । କ୍ରମଶଃ ପୁରସ୍କାର ପ୍ରଦାନ ଅନୁଷ୍ଠାନଗୁଡ଼ିକ କଳୁଷିତ ହୋଇ ପଡ଼ୁଛନ୍ତି । ଧରାଧରି ଯୁଗରେ ପ୍ରୋତ୍ସାହୀ ଅନୁଷ୍ଠାନଗୁଡ଼ିକ ପ୍ରଦୂଷିତ । ଏସବୁ ପ୍ରଦୂଷଣ ରୋକିବାକୁ ହେଲେ ଅର୍ଥ ପୁରସ୍କାର ନିଷିଦ୍ଧ ହେବା ଉଚିତ୍ । ବିଜେତାଙ୍କୁ ଅର୍ଥ ନ ଦେଇ ସେଇ ମୂଲ୍ୟରେ ତାଙ୍କ ପୁସ୍ତକର ପୁନଃ ମୁଦ୍ରଣ କରି କମ୍ ମୂଲ୍ୟରେ ପାଠକ ପାଖେ ପହଞ୍ଚିବା ଉଚିତ । ପାଠକ ସେଗୁଡ଼ିକ ପଢ଼ି ପ୍ରକୃତ ମୂଲ୍ୟାୟନ କରିପାରିବ । ମନେ ରଖନ୍ତୁ, ପୂର୍ବସୂରୀ ସାହିତ୍ୟ ରଥୀମାନେ ପୁରସ୍କାର ପାଇଁ ସାହିତ୍ୟ ସୃଷ୍ଟି କରି ନଥିଲେ । ଆପଣ ଭାବି ପାରନ୍ତି ମୋର ବକ୍ତବ୍ୟ ଅଙ୍ଗୁର କୋଳି ଖଟା ଭଳି କାରଣ ଏ ପର୍ଯ୍ୟନ୍ତ ସେପରି ଆଖିଦୃଶିଆ ପୁରସ୍କାର ମୁଁ ପାଇନାହିଁ । ପୁରସ୍କାର ପ୍ରତି ଲାଳସା ମୋର ଆଦୌ ନାହିଁ । ପୁରସ୍କାର ପଛରେ ଗୋଡ଼ାଇ, ଆକୁ ଧରାଧରି, ତାକୁ ଖୋସାମତି ଆଦି ଅସାହିତ୍ୟିକ କାରବାରକୁ ମୁଁ ଘୃଣାକରେ । ମୋ ନିର୍ମଳ ରୁଚିକୁ କଳୁଷିତ କେବେ କରିବିନି । ସଚ୍ଚା ସାହିତ୍ୟିକ ପୁରସ୍କାର ପଛରେ ଗୋଡ଼ାଇବା ଅନୁଚିତ, ଆତ୍ମବିଶ୍ୱାସ ଓ ସୃଷ୍ଟିର ମହକତା ଥିଲେ ପୁରସ୍କାର ତା ପଛରେ ଆପେ ଆପେ ଗୋଡ଼ାଇବ। ଆପଣତ ମୋତେ ଆଗରୁ ବ୍ୟକ୍ତିଗତ ଭାବେ ଜାଣି ନଥିଲେ, କିପରି ଆସି ଆନ୍ତରିକତା ସହକାରେ ନିଷ୍ପାପର ଭାବେ ଦୀର୍ଘ ସାକ୍ଷାତକାର ନେଉଛନ୍ତି ? ଏହା ହିଁ ଯଥେଷ୍ଟ ପୁରସ୍କାର, ଯଥେଷ୍ଟ ପ୍ରୋତ୍ସାହନ । ମୁଁ ଜଣେ ସୌଖୀନ ଲେଖକ । ଭଲ ଲାଗେ ଲେଖେ, ଲେଖା ମୋର ପେଷା ନୁହେଁ, ନିଶା; ଲେଖେ, ନିଜେ ଛପାଏ, ବାଣ୍ଟେ, କାରଣ କମ୍ ବହି ମୁଁ ଛପାଇ ଥାଏ । ଆଗକୁ ୪ଟି ଗଳ୍ପ ସଂକଳନ ଓ ୪ଟି ଉପନ୍ୟାସ ଦୁଇବର୍ଷ ମଧ୍ୟରେ ପ୍ରକାଶ କରିବାର ଯୋଜନା । ବହି ବିକ୍ରୀର ପାଣିପାଗ ଓଡ଼ିଶାରେ ମାନ୍ଦା । କ୍ଷୋଭ କରିବାର କିଛି ନାହିଁ । ସାମୂହିକ ଚେଷ୍ଟାରେ ଅବସ୍ଥାର ଉନ୍ନତି କରାଯାଇ ପାରେ । ଆନ୍ତରିକତା ଲୋଡ଼ା । ଗୋଟିଏ ଅଭିଯାନର ସୂତ୍ର ବାହାର କରିଛି ଏକଲା ନୀତିରେ । ସମୟ ଅଭାବରୁ ସମ୍ପୂର୍ଣ୍ଣ ଭାବେ କାର୍ଯ୍ୟକାରୀ କରିନାହିଁ । ଓଡ଼ିଆମାନଙ୍କ ପାଇଁ ଚଉଦଟି ଆଚରଣ ସଂହିତା ବା ହିତୋପଦେଶ(ବିନା ପଇସା ଖର୍ଚ୍ଚରେ) ପ୍ରତି ଓଡ଼ିଆ ପାଖେ ପହଞ୍ଚାଇବାର ଯୋଜନା ରହିଛି । ଆଚରଣ ସଂହିତାଟି ପାଠ କରନ୍ତୁ । ବିଜ୍ଞାପନ ଆକାରରେ ମହଲରେ ପ୍ରକାଶ କରିପାରନ୍ତି । ସବୁ ସମ୍ବାଦପତ୍ର ଓ ପତ୍ରିକାରେ ଏହାକୁ ପ୍ରକାଶ କରିପାରିଲେ ଖୁସି ହେବି । ସହଯୋଗ କରନ୍ତୁ ।

***ବଂଶୀଧର ରାଉତ:** ଆପଣ ୧୩୧ ଛୋଟ ବଡ଼ ଗଳ୍ପର ସ୍ରଷ୍ଟା । ତେବେ ଗଳ୍ପ କଳା ଓ ଉପନ୍ୟାସ କଳା ସଂପର୍କରେ କିଛି କହନ୍ତୁ । କେଉଁଟିରେ ଆପଣ ସନ୍ତୁଷ୍ଟ ?*

**ରାଧାମୋହନ ମହାପାତ୍ର:** ଉଭୟରେ । ପୂର୍ବୋତ୍ତର ଦେଖନ୍ତୁ । ପୁଣି ଟିକିଏ ଭିନ୍ନ ଢଙ୍ଗରେ କହିଲେ, ଉପନ୍ୟାସ ଯଦି ଗୋଟିଏ ପେଟ୍ରୋମ୍ୟାକ୍ସ ଲାଇଟ୍ ହୁଏ, ଗଳ୍ପ ଗୋଟିଏ ଟର୍ଚ୍ଚ ଲାଇଟ୍ । ପେଟ୍ରୋମ୍ୟାକ୍ସରେ ଆଲୋକ ଚତୁର୍ଦ୍ଦିଗ ବିଚ୍ଛୁରିତ ହୁଏ, ଟର୍ଚ୍ଚର ଆଲୋକ ଗୋଟିଏ ବିନ୍ଦୁ ପ୍ରତି । ଗପରେ କେତୋଟି ରଙ୍ଗ ଫେଣ୍ଟି କାହାଣୀର କୋଠରୀଟିଏ ଛିଡ଼ା କରାଏ, ଉପନ୍ୟାସ ସବୁ ରଙ୍ଗକୁ ଫେଣ୍ଟି ମିଶାଇ ସୌଧ ସୃଷ୍ଟି କରେ ।

***ବଂଶୀଧର ରାଉତ:*** *ଆପଣ ବର୍ତ୍ତମାନ 'ଆବର୍ତ୍ତ' ପତ୍ରିକାର ଉପଦେଷ୍ଟା । ଆବର୍ତ୍ତ ବିଷୟରେ କୁହନ୍ତୁ ।*

**ରାଧାମୋହନ ମହାପାତ୍ର:** ଆବର୍ତ୍ତ ଏକ ସ୍ୱତନ୍ତ୍ର ମର୍ଯ୍ୟାଦାସମ୍ପନ୍ନ ସାହିତ୍ୟ ପତ୍ରିକା । ପ୍ରାୟ ସବୁ ପତ୍ରିକା ଭଳି ଢୋକେ ପିଇ ଦଣ୍ଡେ ଜିଇଁବା ନୀତିରେ ଆବର୍ତ୍ତ ଚାଲିଛି । ଅନେକ ଆର୍ଥିକ ସଂକଟ ନେଇ ଆବର୍ତ୍ତ ଗତି କରୁଛି । ନିୟମିତ ଭାବେ ପ୍ରକାଶ ପାଇପାରୁନି । କେମିତି ହେବ ଯେ ! ଅନ୍ନ ବିହୁନେ ହଂସ ହାନୀ, ଯୋଗ ସାଧିବୁ କାହା ଘେନିରେ ଆବର୍ତ୍ତ ସଂକଟିତ, ସନ୍ତୁଳିତ । ତେବେ ଯେତେବୋଟ ନାଆ ପେଲିବା ପାରିବା ନୀତିରେ ଆବର୍ତ୍ତ ଚାଲିଛି । ଅପମୃତ୍ୟୁ କାହାର ନ ହେଉ- ଏହି କାମନା ବଳବତ୍ତର ରହୁ ।

***ବଂଶୀଧର ରାଉତ:*** *ପତ୍ର ପତ୍ରିକା ସାହିତ୍ୟ ଜଗତକୁ ସମୃଦ୍ଧ କରେ କି ?*

**ରାଧାମୋହନ ମହାପାତ୍ର:** ନିଶ୍ଚିତ ଭାବେ । ଆହୁରି ବ୍ୟାପକ ଭାବେ ହେବା ଉଚିତ୍ । ଜନ ଚେତନା ଜାଗରିତ ହେବା ଉଚିତ୍ । ଏବେ ଦେଖୁଛି ଅନେକ ଗୁଡିଏ ସାହିତ୍ୟ ପତ୍ରିକା ବାହାରିଲାଣି । ଏହା ଏକ ଶୁଭ ସୂଚନା । ଯେଉଁ ପତ୍ରିକାଗୁଡିକ ଆଜି ପ୍ରତିଷ୍ଠିତ, ସେମାନ ଦିନେ ଏପରି ଆତ୍ମପ୍ରକାଶ କରିଥିଲେ । ଅନେକ ସମାଲୋଚକ କହନ୍ତି, ଅଳିଆ ଗଦାର ଉଚ୍ଚତା ବଢୁଛି । କିନ୍ତୁ ଦେଖିବେ, ସେଇ ଅଳିଆ ଗଦାର ଛତୁ  ଖୁବ୍ ସୁଆଦିଆ । ପୁଣି ଦିନେ ଲକ୍ଷ୍ୟ କରିବେ ଗଦା ଭିତରୁ ସୁନ୍ଦର ଗୁଲୁଗୁଲିଆ କଢ଼ କଅଁଳି ଉଠୁଛି, ଛନଛନିଆ ପତ୍ର ଡଙ୍କ ମେଲାଇ ଉପରକୁ ଉଠୁଛି । ସେଇ ଚାରାଗୁଡିକୁ ଉର୍ଦ୍ଧାୟିତ କରନ୍ତୁ, ତା ମୂଳରେ ଟିକିଏ ପାଣି ଦିଅନ୍ତୁ । ସେଥିରୁ ସୁନ୍ଦର ଫୁଲ ଓ ଫଳ ଉତ୍ପାଦିତ ହେବ, ସମାଜ ସମୃଦ୍ଧ ହେବ । ଯେଉଁ ଜାତିର ସାହିତ୍ୟ ଯେତେ ଉନ୍ନତ ସେ ଜାତି ସେତେ ସମୃଦ୍ଧ ।

***ବଂଶୀଧର ରାଉତ:*** *ଓଡ଼ିଆ ପତ୍ରିକାର ସ୍ୱାଭିମାନ ରକ୍ଷା କରିବାକୁ ଓଡ଼ିଶା ସରକାର ସମର୍ଥ କି ?*

**ରାଧାମୋହନ ମହାପାତ୍ର:** ସରକାରଙ୍କ ସମ୍ବନ୍ଧରେ ମତ ଦେବାକୁ ମନା । ଚାକିରୀରେ ଯୋଗଦେବା ଦିନଠୁଁ ସରକାର ଚୁକ୍ତି କରିନେଇଛନ୍ତି । ଚାକିରୀକାଳ ଶେଷ ପର୍ଯ୍ୟନ୍ତ ମତ ପ୍ରଦାନର ବିରତି ଘୋଷଣା। ତେବେ ଓଡ଼ିଶା ସରକାର ଓଡ଼ିଆ ଭାଷାକୁ ସରକାରୀ ଭାଷା ଭାବେ ଘୋଷଣା କରିଛନ୍ତି । କାର୍ଯ୍ୟକାରିତାରେ ମନ୍ଥରତା ପରିଲକ୍ଷିତ ହେଉଛି । ଆନ୍ତରିକତା ସହିତ ଘୋଷଣା କାର୍ଯ୍ୟକାରୀ କରିବା ଉଚିତ୍ ।

***ବଂଶୀଧର ରାଉତ:*** *ପତ୍ରିକା ପ୍ରକାଶନର ସାମର୍ଥ୍ୟ ନଥାଇ ଆଜି ଅନେକ ପତ୍ରିକା ସମ୍ପାଦକ ଖିଆଲରେ ବଶବର୍ତ୍ତୀ ହୋଇ ପତ୍ରିକା ପ୍ରକାଶ କରୁଛନ୍ତି । ଏହାର ଭବିଷ୍ୟତ କ'ଣ ?*

**ରାଧାମୋହନ ମହାପାତ୍ର:** ଅପମୃତ୍ୟୁ ନ ହେଉ ଆଗରୁ କହିଛି । ଆବଶ୍ୟ ଦୀର୍ଘତା ଉପରେ ସଫଳତା  ନିର୍ଭର କରେ ନାହିଁ । ଜୀବନ ସାର୍ଥକ ନୁହେଁ ଶତ, ବର୍ଷ ମାସ ଦିନ, ଜୀବନ ସଫଳ ହୁଏ ମୁହୂର୍ତ୍ତ ବିକାଶ । ବୃହତ୍ ଅଶ୍ୱଥ୍  ବୃକ୍ଷ ଅପେକ୍ଷା ତୁଳସୀବୃକ୍ଷର ମାନନୀୟତା, ମହନୀୟତା ବେଶୀ ।

***ବଂଶୀଧର ରାଉତ:*** *ସର୍ବୋପରି ଲେଖକଟି ମଣିଷ । ତେବେ ଜଣେ ସାହିତ୍ୟିକ କିଭଳି ମଣିଷ ହେବା ଦରକାର ?*

**ରାଧାମୋହନ ମହାପାତ୍ର:** ମଣିଷ ଭଳି ମଣିଷଟିଏ ହେବା । ମଣିଷର ସଂଜ୍ଞା ପଚାରି ପାରନ୍ତି । ପଶୁଦେହରୁ ହିଂସ୍ରତ୍ୱକୁ କାଢିନେଲେ ରହିଯାଏ ନିରୀହତା, ସେତକ ଯୋଡି ଦିଅନ୍ତୁ ମଣିଷର ଗୁଣ ସହିତ ଏବଂ ମଣିଷର ଦୁର୍ଗୁଣ, ଅହଂ, ଅସୂୟା, ଈର୍ଷା ଫେଡି ଦିଅନ୍ତୁ । ତା ପିଣ୍ଡରେ ସ୍ନେହ, ଶ୍ରଦ୍ଧା, ଶାଳୀନତା, ନମନୀୟତା ଯୋଗ କରନ୍ତୁ । ସେଥିରୁ ଏପରି ଫେଣ୍ଟା ଫେଣ୍ଟି ହୋଇ ଗୋଟାଏ ମିଶ୍ରିତ ଗୁଣ ବିକଶିତ ହେବ, ମାନବିକତାର ଗୁଣ, ସେଇ ମଣିଷର ଗୁଣ ଲେଖକର ହେବା ଉଚିତ୍ । ଦେବର ନିକଟତମ ହେବା ଉଚିତ । 'କବିରେବ ବ୍ରହ୍ମା' ପ୍ରତି ଆକୃଷ୍ଟ ହେବା ଉଚିତ୍ । ଲେଖକ ପାଇଁ ଏମିତି ଅନେକ ଉଚିତର ଲମ୍ବା ମାଳ । କିନ୍ତୁ କେତେକ ଲେଖକ, କବି (ମୁଁ ମଧ୍ୟ) ଉଚିତ୍ ଗୁଡିକୁ ପାଳନ କରୁଛନ୍ତି ?

***ବଂଶୀଧର ରାଉତ:** ଓଡ଼ିଶାର ପାଠକ ପାଠିକାଙ୍କୁ କିଛି ମେସେଜ୍ ଦିଅନ୍ତୁ ।*

**ରାଧାମୋହନ ମହାପାତ୍ର:** ଏମିତି ଅନେକ ବାର୍ତ୍ତା ଘୋଷଣା କରିଛି ମୋ ଲେଖା, ଗଳ୍ପ ଓ ଉପନ୍ୟାସ ମାଧ୍ୟମରେ ।

ଓଡ଼ିଆ ପ୍ରୀତି ପାଇଁ କେତୋଟି ନୀତି ଲିଫଲେଟ ଆକାରରେ ଘରେ ଘରେ, ବନ୍ଧୁ ସହୋଦରଙ୍କୁ ବାଣ୍ଟିଛି ଓ ବାଣ୍ଟୁଛି। ବିନା ବାର୍ତ୍ତାରେ ଲେଖାଟିଏ ଶୂନ୍ୟ ଡଙ୍ଗାଟିଏ ଭଳି, ଲକ୍ଷହୀନ ତାର ଗତି। ପାଠକର ମନୋରଞ୍ଜନ ଭିତରେ ଚେତନାଟିଏ ଜାଗ୍ରତ କରାଇବା ଲେଖକର କର୍ତ୍ତବ୍ୟ ଓ ସେଥିପାଇଁ ଲକ୍ଷ୍ୟ ରହିବା ଉଚିତ୍ ବୋଲି ମୁଁ ଭାବେ। ଏବେ ଗଣ ଧର୍ଷଣ ଉପରେ ମୋର ଏକ ଗଳ୍ପ ନାରୀ ଧର୍ଷଣ ସମ୍ବଳିତ 'ସବୁ ଶେଷ ପରେ' ପ୍ରକାଶ ପାଇଥିଲା ମାସିକ ପତ୍ରିକା 'ଏକ ବିଂଶ ଶତାବ୍ଦୀରେ (ସେପ୍ଟେମ୍ବର, ୧୯୯୪)। ଗଳ୍ପଟିକୁ ବହୁଳ ପ୍ରଚାରିତ ଏକ ଦୈନିକ ସମ୍ବାଦପତ୍ରକୁ ପୂର୍ବରୁ ପଠାଇଥିଲି। ଉଦ୍ଦେଶ୍ୟଥିଲା ଏ ଗପଟି ପ୍ରତ୍ୟେକ ଓଡିଆଙ୍କ ବିଶେଷ କରି ଯୁବପିଢ଼ୀଙ୍କ ପାଖେ ପହଞ୍ଚୁ। କିନ୍ତୁ ସମ୍ବାଦପତ୍ରର ଜଣେ ଦାୟିତ୍ୱବାନ ବ୍ୟକ୍ତି (ସଂପାଦକ ନୁହନ୍ତି) ଗପଟିକୁ ପ୍ରକାଶ କଲେନାହିଁ। ପରେ ଜଣେ ବନ୍ଧୁଙ୍କ ମାଧ୍ୟମରେ ଶୁଣିଲି ଗପଟି କୁଆଡେ ତାଙ୍କ ମନକୁ ପାଇଲାନାହିଁ (ସେ ଅବଶ୍ୟ ଗପ ଲେଖନ୍ତି)। ଅନୁଭବ କଲି, ଏପରି ବାର୍ତ୍ତା ବହନକାରୀ କୁଆଡେ ତାଙ୍କ ମନକୁ ଛୁଇଁଲା ନାହିଁ । ମୁଁ ତ ସହଜେ ଗପ ଲେଖେନାହିଁ। ଖୁବ୍ କ୍ୱଚିତ୍ ଗପ ଲେଖେ, ତାହା ଯଦି ହୃଦୟସ୍ପର୍ଶୀ ନହୋଇପାରିଲା କଲମ ଧରିବି କାହିଁକି ? ଏତିକି ବେଳକୁ ଏକବିଂଶ ଶତାବ୍ଦୀର ସଂପାଦକ ବିନୋଦ ବିହାରୀ ବିଶୋଇ ଉପସ୍ଥିତ ହୁଅନ୍ତି ଏବଂ ଗପଟିକୁ ନେଇଯାନ୍ତି ଏବଂ ମାତ୍ର ତିନି ଦିନ ମଧ୍ୟରେ 'ସବୁ ଶେଷ ପରେ' ଗପଟିକୁ ପ୍ରକାଶ କରି ମୋତେ ପତ୍ରିକାର କପିଟିଏ ପ୍ରଦାନ କରନ୍ତି। ମାତ୍ର ଏକ ମାସ ଭିତରେ ପାଠକମାନଙ୍କଠୁ ୫ଟି ବଧାଇପତ୍ର ପାଇ ମୁଁ ଅଭିଭୂତ ଓ ଉତ୍ସାହିତ ହୋଇପଡିଲି। ମୋର ଉଦ୍ଦେଶ୍ୟ ସଫଳ ହୋଇଛି ବୋଲି ଆତ୍ମସନ୍ତୋଷ ପାଇଲି। ମୁଁ ସନ୍ତୁଷ୍ଟ। ଆପଣ ଚିଠିଗୁଡିକୁ ପଢ଼ିପାରନ୍ତି। ବାର୍ତ୍ତାବିହୀନ ଗଳ୍ପକୁ ମୁଁ ପସନ୍ଦ କରେନାହିଁ।

୧. ନିଜେ ଜଣେ ସ୍ୱାଭିମାନୀ ଓଡ଼ିଆ ବୋଲି ଗର୍ବ କରନ୍ତୁ, ଆତ୍ମମର୍ଯ୍ୟାଦା ଅକ୍ଷୁଣ୍ଣ ରଖନ୍ତୁ ।

୨. ନିଜ ସଂସ୍କୃତି, ଐତିହ୍ୟ, ପରମ୍ପରା ପ୍ରତି ସଚେତନ ରହନ୍ତୁ ।

୩. ମାସକୁ ଅତି କମ୍‌ରେ ଖଣ୍ଡେ ଓଡିଆ ପତ୍ରିକା ଓ ଗୋଟିଏ ଓଡ଼ିଆ ବହି ଖରିଦ କରି ପଢିବାକୁ କୁଣ୍ଠାବୋଧ କରନ୍ତୁ ନାହିଁ ।

୪. ବିବାହ ବ୍ରତାଦିରେ ଓଡ଼ିଆ ପୁସ୍ତକ ଉପହାର ଦିଅନ୍ତୁ । ଏହାକୁ ଏକ ମର୍ଯ୍ୟାଦାପୂର୍ଣ୍ଣ ମହତ କାର୍ଯ୍ୟ ବୋଲି ଭାବନ୍ତୁ ।

୫. ସାହିତ୍ୟ ଆଲୋଚନା ଓ ସଭା ଆଦିରେ ଉତ୍ସାହର ସହିତ ଯୋଗ ଦିଅନ୍ତୁ । ନିଜକୁ ଜଣେ ମାତୃଭାଷା ପ୍ରେମୀ/କର୍ମୀ ଭାବେ ନିୟୋଜିତ କରନ୍ତୁ ।

୬. ସାହିତ୍ୟ ସଂସଦ ଓ ଅନୁଷ୍ଠାନମାନଙ୍କ ପ୍ରତି ସମ୍ବେଦନଶୀଳ ହୁଅନ୍ତୁ । ମନରୁ ଈର୍ଷା, ଅସୂୟା ଭାବ ସମ୍ପୂର୍ଣ୍ଣ ଭାବେ ଦୂର କରନ୍ତୁ ।

୭. ସାହିତ୍ୟ ମାଧ୍ୟମରେ ବ୍ୟକ୍ତିଗତ ଲାଭ ଲାଳସା ହାସଲ କରିବାକୁ ଇଚ୍ଛା କରନ୍ତୁ ନାହିଁ । ଯେଉଁ ମହାମନୀଷୀମାନେ ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଯାଇଛନ୍ତି, ସେମାନଙ୍କ ସାଧନା, ତ୍ୟାଗ, ତିତିକ୍ଷାକୁ ସ୍ମରଣ କରନ୍ତୁ ।

୮. ଓଡ଼ିଆ ଭାଷାରେ କଥାବାର୍ତ୍ତା ଓ ଆଲୋଚନା କରିବାକୁ ସୁଖ ମଣନ୍ତୁ । ଓଡ଼ିଆରେ ଯଦି ବିକଳ୍ପ ଶବ୍ଦଟିଏ ଅଛି ତାକୁ ବ୍ୟବହାର କରିବାକୁ ପଶ୍ଚାତ୍‌ପଦ ହୁଅନ୍ତୁ ନାହିଁ । ଯେଉଁ ବିଦେଶୀ, ପ୍ରତିବେଶୀ ଆଞ୍ଚଳିକ ଶବ୍ଦ ଆମ କଥୋପକଥନରେ ପ୍ରଚଳିତ, ତାକୁ ଭାଷା ଗର୍ଭକୁ ନେଇ ଭାଷା ଭଣ୍ଡାରକୁ ବର୍ଦ୍ଧିତ କରନ୍ତୁ ।

୯. ନାମ ଫଳକ ଓଡ଼ିଆରେ ଲେଖନ୍ତୁ । ଅନ୍ୟ ଭାଷା ଲିପିର ଫଳକ ତଳକୁ ଦେଇପାରନ୍ତି ।

୧୦. ଓଡ଼ିଶା ଭିତରେ ଚିଠିପତ୍ରର ଆଦାନ ପ୍ରଦାନ ପାଇଁ ଓଡ଼ିଆରେ ଠିକଣା ଲେଖନ୍ତୁ ।

୧୧. ପିଲାମାନଙ୍କୁ ଓଡ଼ିଆ ସ୍କୁଲରେ ଶିକ୍ଷା ଦିଅନ୍ତୁ । ସରସ୍ୱତୀ ବିଦ୍ୟାମନ୍ଦିର ଭଳି ଓଡ଼ିଆ ସ୍କୁଲର ପରିବେଶ ଓ ମାନ ଉନ୍ନତି ପାଇଁ ଆନ୍ତରିକତାର ସହିତ ଚେଷ୍ଟା କରନ୍ତୁ ।

୧୨. ଓଡ଼ିଶା ବାହାରକୁ ଯିବା ବେଳେ ସାଙ୍ଗରେ କିଛି ଓଡ଼ିଆ ବହି ଓ ପତ୍ରିକା ନେବାକୁ ଭୁଲନ୍ତୁ ନାହିଁ ।

୧୩. ନିମନ୍ତ୍ରଣ ପତ୍ର ଓଡ଼ିଆରେ ଲେଖନ୍ତୁ, ଅଧିକନ୍ତୁ ଅନ୍ୟ ଭାଷାରେ ଲେଖି ପାରନ୍ତି ।

୧୪. ଉତ୍ସବାନୁଷ୍ଠାନରେ ଓଡ଼ିଆ ସଙ୍ଗୀତକୁ ଅଗ୍ରାଧିକାର ଦିଅନ୍ତୁ ।

ନିବେଦକ: ରାଧାମୋହନ ମହାପାତ୍ର, 'ପ୍ରତିଭାନୀ' ୧୪୭, ବୁଦ୍ଧେଶ୍ୱରୀ,ଭୁବନେଶ୍ୱର-୬ ।

***ବଂଶୀଧର ରାଉତ: ସାହିତ୍ୟ ପାଇଁ ଆପଣଙ୍କ ଭବିଷ୍ୟତ ଯୋଜନାସବୁ କ'ଣ ?***

**ରାଧାମୋହନ ମହାପାତ୍ର:** ଆଉ କେତୋଟି ଉପନ୍ୟାସ- ରେଣୁକତୀରେ, ରକ୍ତର ରଙ୍ଗ, ସମୟର ଶରଶଯ୍ୟା, ଶୁଖିଲା ନଈର ସୁଅ ଓ ପତ୍ର ପତ୍ରିକାରେ ପ୍ରକାଶିତ ଗଳ୍ପ ଗୁଡିକ ସଂକଳନର ଯୋଜନା

ଆଗକୁ ରହିଛି, ପ୍ରକାଶନ ପ୍ରତିବନ୍ଧକ ନୁହେଁ, ପ୍ରତିବନ୍ଧକ ହେଉଛି ବିତରଣ ଓ ବଜାର । ଶ୍ରୋତା ବକ୍ତା କେହି ନାହିଁ, ରୋଦନ କରୁ କାହାପାଇଁ ? ଆଗରେ ଦର୍ଶକ ନଥିଲେ ମଞ୍ଚ ଉପରେ ନାଟକ ପ୍ରଦର୍ଶନର ଯଥାର୍ଥତା କ'ଣ ?

***ବଂଶୀଧର ରାଉତ:*** *ନିଜ ସଂପର୍କରେ କିଛି କହନ୍ତୁ ।*

**ରାଧାମୋହନ ମହାପାତ୍ର:** ପ୍ରାୟ ସବୁତ କହି ସାରିଛି । ଯାହା ରହିଗଲା କହିବାକୁ ଏଠି ଜାଗା ଅଣ୍ଟିବ ନାହିଁ । ତେବେ ସୌଜନ୍ୟ ଦୃଷ୍ଟିରୁ ଆଉ ଥରେ ଦୋହରାଇ ଦେଉଛି । ମୁଁ କିଛି ଲେଖିନାହିଁ, କିଛି ପଢିନାହିଁ, ଅଧିକାଂଶ ଲେଖା ଅଭିଜ୍ଞତାକୁ ପୁଞ୍ଜି କରି ଲେଖିଛି । ଅଧିକ ପଢି ନାହିଁ, ଗୁଡାଏ ଆଜେ ବାଜେ  ପଢିବାକୁ ଭଲ ଲାଗେ ନାହିଁ । ମନରେ ଭୟ ହୁଏ, କାଳେ ପଢୁ ପଢୁ କାହାର ଗୋଡାଣିଆ ହୋଇଯିବି ବା ପ୍ରଭାବିତ ହୋଇପଡିବି ! ଗୁଡାଏ ଚୁପ୍ ଚାପ୍ ଭାବିବାକୁ ସୁଖ ମଣେ । ନିରବତା, ବାଙ୍‌ମୟ ନିର୍ଜନତା ମୋତେ ସୃଷ୍ଟିର ସ୍ୱର ଶୁଣାଏ ।

***ବଂଶୀଧର ରାଉତ:*** *ଆପଣଙ୍କ ଲେଖକ ଜୀବନର ସ୍ୱପ୍ନ କ'ଣ ?*

**ରାଧାମୋହନ ମହାପାତ୍ର:** ଅସୀମ ଆଡକୁ ଦୃଷ୍ଟି- ନୂତନ ସୃଷ୍ଟି ଯେଉଁ ସୃଷ୍ଟି ଅଦ୍ୟାପି ହୋଇନାହିଁ । ଏହାର ଆଦ୍ୟ ଦିଶୁଛି । ଅନ୍ତ ଦିଶୁନାହିଁ । ଶେଷ ବିନ୍ଦୁରେ ପହଂଚିବା ପାଇଁ ଏକ ଅଭିଯାନ। ବିନ୍ଦୁଟି କିନ୍ତୁ ଅଦୃଶ୍ୟ ।

***ବଂଶୀଧର ରାଉତ:*** *ଓଡ଼ିଆ ଗଳ୍ପ ସାହିତ୍ୟରେ ଆପଣ କାହା ଗଳ୍ପରେ ଆଶାବାଦୀ ?*

**ରାଧାମୋହନ ମହାପାତ୍ର:** ମନୋଜ ଦାସ, ଅଖିଳ ମୋହନ ପଟ୍ଟନାୟକ, ଫକୀର ମୋହନ ଓ କାଳିନ୍ଦୀ ଚରଣ ପାଣିଗ୍ରାହୀ। 'ମାଂସର ବିଳାପ' ଭଳି ଗପ ହୁଏତ ପୃଥିବୀରେ ବିରଳ । ଏହି ଗଳ୍ପ ମୋତେ ବହୁତ ପ୍ରଭାବିତ କରିଛି। ବନ୍ଧୁକ ଛାଡି କଲମ ଧରିବାରେ ସାହାଯ୍ୟ କରିଛି।

***ବଂଶୀଧର ରାଉତ:*** ଓଡ଼ିଆ ଉପନ୍ୟାସ ରଚନା କ୍ଷେତ୍ରରେ ଆପଣ କେଉଁ ଔପନ୍ୟାସିକଙ୍କୁ ବେଶୀ ଶ୍ରଦ୍ଧା କରନ୍ତି ଓ କାହିଁକି ?

**ରାଧାମୋହନ ମହାପାତ୍ର:** ଅଡୁଆ ପ୍ରଶ୍ନ । ଉତ୍ତରରେ ହୁଏତ ପାତର ଅନ୍ତର ପ୍ରଶ୍ନ ଉଠିପାରେ । ତେବେ ସତ୍ୟ ପ୍ରକାଶରେ ଦ୍ୱିଧା ନାହିଁ ମୋର । କାହ୍ନୁଚରଣ ମହାନ୍ତିଙ୍କୁ ମୁଁ ଅଶେଷ ଶ୍ରଦ୍ଧା କରେ । ତାଙ୍କ ରଚନା ସବୁ ସ୍ତରର ପାଠକ ପାଇଁ, ଚାଷୀ ମୂଲିଆଠୁଁ ଆରମ୍ଭ କରି ସମାଜର ଶ୍ରେଷ୍ଠ ଶିକ୍ଷାବିତ୍‌ଙ୍କ ପର୍ଯ୍ୟନ୍ତ । ସମ୍ବେଦନଶୀଳତାରେ ପରିପୂର୍ଣ୍ଣ ତାଙ୍କ ରଚନା ସବୁ ସ୍ତରର ପାଠକ ପାଇଁ ଏକ ଅନନ୍ୟ ଉପହାର, ସର୍ବଜନାଦୃତ । ଲେଖା ସୁବୋଧ୍ୟ । ଲେଖନୀ ଦୁର୍ବୋଧ୍ୟ ହେଲେ ପଠନାଗ୍ରହ କମିଯାଏ, କସରତ୍ କରି ଯୋର ଜବରଦସ୍ତ ପାଠକ ତିଆରି କରି ବୁଝିବାକୁ ଚେଷ୍ଟା କରେ ନାହିଁ। ଗୋଟାଏ ନିର୍ଦ୍ଦିଷ୍ଟ ଗୋଷ୍ଠୀକୁ ଆଗରେ ରଖି ଲେଖି ବସିଲେ ତାହା ସାର୍ବଜନୀନତା ହରାଏ । ସେ ଲେଖା କେବେ କାଳଜୟୀ ହୋଇପାରେନା । ଲେଖା ସୁଖପାଠ୍ୟ ତଥା ମନୋରଂଜନମୁଖୀ ହେବା ଉଚିତ୍ ଅବଶ୍ୟ।

***ବଂଶୀଧର ରାଉତ: ଲେଖକମାନେ ମୁଡି- ଏହା କ'ଣ ସତ୍ୟ ?***

**ରାଧାମୋହନ ମହାପାତ୍ର:** ସତ୍ୟ । କେତେବେଳେ କ'ଣ ଗୋଟେ ମୁଣ୍ଡକୁ ଢୁକିଥିବ, ସେଇ କଥା ବାରମ୍ୱାର ଭାବୁଥିବେ, ଚିନ୍ତା କରୁଥିବେ, ହୁଏତ ଅନ୍ୟମନସ୍କ ରହୁଥିବେ, ମନଭିତରେ ଗୋଟେ ଘଟଣା ଖୋଜୁଥିବେ, ଶବ୍ଦ ସୌଧ ଗଢୁଥିବେ ବା ସମାଧାନ ସୂତ୍ର ଖୋଜୁଥିବେ, ସମସ୍ୟାର ସୂତ୍ର ନ ମିଳିଲା ପର୍ଯ୍ୟନ୍ତ ଅନ୍ୟମନସ୍କ ଇଲାକାରେ ଘୂରି ବୁଲୁଥିବେ, କୌଣସି ଖିଅ ନ ପାଇଲା ପର୍ଯ୍ୟନ୍ତ ମୁଣ୍ଡରେ ସେଇକଥା ଉଠୁଥିବ । ପାଇଲା ପରେ ଅନେକ ତୃପ୍ତି । ସେ ତୃପ୍ତି ଆର୍କମେଡିସ୍‌ଙ୍କ ୟୁରେକା ଭଳି ହୋଇପାରେ ।

***ବଂଶୀଧର ରାଉତ: ଆପଣଙ୍କ ପୂର୍ବରୁ ଆପଣଙ୍କ ବଂଶରେ କେହି ଲେଖକ/କବି/କଳାକାର/ ସଙ୍ଗୀତଜ୍ଞ/ଚିତ୍ରଶିଳ୍ପୀ ଥିଲେ କି ?***

**ରାଧାମୋହନ ମହାପାତ୍ର:** ବୋଧହୁଏ କେହି ନଥିଲେ । ମୋ ଜେଜେବାପା ଜମିଦାର-ବ୍ୟବସାୟୀ ଥିଲେ । ମୋ ବାପା ଜମିକଥା ବୁଝନ୍ତି, ବ୍ୟବସାୟର ଆୟୁ ଶେଷ ହୋଇଥାଏ । ବଡବାପା ବହୁତ ପଢି ରାୟବାହାଦୂର ହେଲେ । ମୁଁ ଜାଣିବାରେ ଆମ ବଂଶରେ ଲେଖକ, କଳାକାର ବା ଚିତ୍ରଶିଳ୍ପୀ କେହି ନଥିଲେ । ମୁଁ କିନ୍ତୁ ପିଲାଟି ଦିନରୁ ସଙ୍ଗୀତ ସହିତ ଜଡିତ ଥିଲି । ବଂଶୀ ଓ ହାର୍‌ମୋନିୟମ୍ ବଜାଇ ପାରୁଥିଲି ନିର୍ଭୁଲ ଭାବେ । ବାଙ୍କୀର ଦୋଳପୂର୍ଣ୍ଣିମା, ପଣାଯାତ୍ରା ଉପଲକ୍ଷେ ଯାତ୍ରାବାଲା ଆମ ଘରେ ଡେରା ପକାନ୍ତି (ବେଣୁରାମପୁର, ନଗେସପୁର, କାଂସ ପାର୍ଟି ଇତ୍ୟାଦି) । ଦିନରେ ଆମ ଘରେ ଯାତ୍ରାଦଳର ସଂଗୀତ ପ୍ରସ୍ତୁତି ପର୍ବ (ରିହରସାଲ୍) ହୁଏ । ମୁଁ ବସିଯାଏ ସେମାନଙ୍କ ସହିତ। କ୍ରମଶଃ ବଂଶୀ ଓ ହାର୍‌ମୋନିୟମ୍ ବଜାଇବା ଶିଖିଗଲି । ହାର୍‌ମୋନିୟମ୍ ବଡ ଯନ୍ତ୍ର ହୋଇଥିବାରୁ, କାଳକ୍ରମେ ବଂଶୀ ସହିତ ମିତ ବସିଲି । ସ୍କୁଲ ପାଠ ପଢା ସମୟ ପରେ ୪ ଟାରୁ ୬ଟା ପର୍ଯ୍ୟନ୍ତ ବଂଶୀଧରି ମହାନଦୀ ବାଲି ପଠାରେ ବଜାଏ । ଭଜନ, ଜଣାଣ, ଛାନ୍ଦ, ଓଡ଼ିଶୀ, ଚଉତିଶା, ଚମ୍ପୁ ଆଦି ସୁନ୍ଦର ଭାବେ ବଜାଇ ପାରୁଥିଲି । ପରବର୍ତ୍ତୀ କାଳରେ ବଂଶୀ ଓ ବନ୍ଧୁକ ମୋର ସାଥୀ ହୋଇରହିଲେ । ଜଙ୍ଗଲକୁ ବନ୍ଧୁକ ଧରି ଗଲାବେଳେ ବଂଶୀଟି ମଧ ଯାଇଥାଏ । କିନ୍ତୁ ସୁଯୋଗ ଅଭାବରୁ ବଂଶୀରେ ବେଶୀ ଶିକ୍ଷା କରି ପାରିଲି ନାହିଁ, କେବଳ କାମଚଳା ଶିକ୍ଷା ସଙ୍ଗୀତରେ ସୀମିତ ରହିଲା । ମୋର ବନ ସାଥୀ ପ୍ରେମ୍‌ସାଗର ମଧ ଜଣେ ସୌଖୀନ ତବଲା ବାଦକ । ତାଙ୍କର ତବଲା ତାଳ ସହିତ ମୋ ବଂଶୀସ୍ୱର ବେଶ୍ ଜମି ଉଠେ ନିବିଡ଼ ଅରଣ୍ୟ ଭିତରେ ।

ଚାକିରି କାଳରେ ଟ୍ରେଜେରୀ ଅଫିସର ବୃନ୍ଦାବନ ପାଣିଗ୍ରାହୀଙ୍କ ସଂସ୍ପର୍ଶରେ ଆସେ । ମୁଁ ଥାଏ ଅତିରିକ୍ତ ଟ୍ରେଜେରୀ ଅଫିସର ବାଲେଶ୍ୱରରେ । ବୃନ୍ଦାବନ ବାବୁ ଜଣେ ନାଟ୍ୟ ନିର୍ଦ୍ଦେଶକ, ଅଭିନେତା ଓ କଳାପ୍ରିୟ । ମୋତେ ଲେଖା ଦିଗକୁ ସଂପୂର୍ଣ୍ଣ ଟାଣି ନେଲେ; ଅଭିଜ୍ଞତାରୁ କାଢି ଲେଖିବାକୁ ପ୍ରେରଣା ଦେଲେ । ତାଙ୍କ ପ୍ରୋତ୍ସାହନରେ ମୋର ସୃଷ୍ଟି 'ପ୍ରଥମ ପ୍ରଭାତ' ! ମୋ ଜୀବନ ଗତି ସ୍ରୋତରେ ପରିବର୍ତ୍ତନର ମୋଡ ।

***ବଂଶୀଧର ରାଉତ:*** *ସଙ୍ଗୀତ, ଶିକାର ଓ ଲେଖକ; ଏ ତିନୋଟି ଯାକ ବିଦ୍ୟା ପରସ୍ପରଠୁ ଭିନ୍ନ । ଆପଣଙ୍କ କ୍ଷେତ୍ରରେ ଏହା ସମ୍ଭବ ହୋଇଛି କିପରି ?*

**ରାଧାମୋହନ ମହାପାତ୍ର:** ସବ୍ ଜାନତା ମଣିଷ କେଉଁଥିରେ ଟାଣୁଆ ନୁହେଁ ଭଳି ମୋର ଅବସ୍ଥା । କେଉଁ ଗୋଟିକରେ ପୂର୍ଣ୍ଣତା ପ୍ରାପ୍ତହୋଇନାହିଁ । ଶୀର୍ଷକୁ ଚଢିପାରିନାହିଁ । ଏମିତି ଅଧାପନ୍ତରିଆ ଜୀବନ, ସବୁଥିରେ ଅର୍ଦ୍ଧ । ସମ୍ପୂର୍ଣ୍ଣ ସଫଳତା ପାଇନାହିଁ ଏ ପର୍ଯ୍ୟନ୍ତ କେଉଁ ଗୋଟିକରେ । ମୁଁ ଯେପରି ଜଣେ ମଧ୍ୟବିତ୍ତ ମଣିଷ, ମୋର କଳା ଓ ଲେଖନୀ ମଧ୍ୟ ସେଇ ପରି ମଧ୍ୟମ ।

***ବଂଶୀଧର ରାଉତ:*** *ଆପଣ ଜଣେ ଓଡ଼ିଆ ଭାଷାର ଗଳ୍ପ ଲେଖକ ଓ ଉପନ୍ୟାସ ରଚୟିତା । ଓଡ଼ିଆ ଭାଷା ଓ ସାହିତ୍ୟ ବିଷୟରେ କିଛି କହନ୍ତୁ ।*

**ରାଧାମୋହନ ମହାପାତ୍ର:** ଓଡ଼ିଆ ଭାଷା ବହୁ ପୁରାତନ । ଅକ୍ଷର ଗୁଡ଼ିକ ନିଟୋଳ ଓ ଚକ୍ରାକାର । ଜଗନ୍ନାଥଙ୍କ ଆଖିର ଛାପ ସ୍ପଷ୍ଟ ରହିଛି ଅକ୍ଷର ଗୁଡ଼ିକରେ । ପୃଥିବୀର ଅନ୍ୟ କୌଣସି ଲିପି ଏପରି ନୁହେଁ, ଏଣୁ ଏହା ଅନନ୍ୟ । ଆମ ବଳିଷ୍ଠ ଭାଷା ଗର୍ଭରେ ଅନେକ ମନିଷୀମାନଙ୍କ ପଦଚିହ୍ନ ସୁସ୍ପଷ୍ଟ । ଆମ ମଧ୍ୟ ଯୁଗୀୟ ସାହିତ୍ୟ ସୃଷ୍ଟି ଓ କୀର୍ତ୍ତି ବିଶ୍ୱରେ ବିରଳ । ମଧ୍ୟଯୁଗରେ ସାହିତ୍ୟ ଜାଗରଣ ୧୫ଶ ଶତାବ୍ଦୀରୁ ୧୮ଶ ଶତାବ୍ଦୀ ପର୍ଯ୍ୟନ୍ତ ବ୍ୟାପି ରହିଥିଲା ଯାହାକି ଅନ୍ୟ କେଉଁ ଜାତିରେ ଭାଷାରେ ଏତେ ଦୀର୍ଘ ଜାଗରଣ କାଳ ନାହିଁ । ଉପେନ୍ଦ୍ର ଭଞ୍ଜଙ୍କ ଭଳି କବି ଆଉ ଏ ବିଶ୍ୱ ସୃଷ୍ଟି କରିବା ଅସମ୍ଭବ । ପଦର 'ବ' ଅକ୍ଷର ନେଇ ଭଞ୍ଜଙ୍କ ରଚିତ 'ବୈଦେହୀଶ ବିଳାସ' କାବ୍ୟ ଓଡ଼ିଆ ଭାଷାର ଶ୍ରେଷ୍ଠତ୍ୱ ପ୍ରମାଣ କରେ । ଗୋଟିଏ ଶବ୍ଦର ବିଭିନ୍ନ ଅର୍ଥ ଓ ସ୍ୱର ଅନ୍ୟ କେଉଁ ଭାଷାରେ ପରିଲକ୍ଷିତ ନୁହେଁ । ଆମ ଭାଷା ଭଣ୍ଡାର ଯେ କେତେ ସମୃଦ୍ଧ ଏଥିରୁ ଅନୁମେୟ । କିନ୍ତୁ ଆମର ସବୁଥାଇ ହୀନମନ୍ୟତା ଓ ଦାରିଦ୍ର୍ୟ ପ୍ରକଟିତ କରୁଛେ ଅନ୍ତରରେ ଏବଂ ବାହାରେ । କିନ୍ତୁ ଯାହାର କିଛି ନାହିଁ ବା ସାମାନ୍ୟ ଅଛି, ତାକୁ ଠିକ୍ ଭାବରେ ସୁଧରେ ଲଗାଇ ଲାଭବାନ୍ ହେଉଛନ୍ତି, ସେମାନେ ଫମ୍ପା ମାଠିଆ ବଜାଇ ବେଶ୍ ଶବ୍ଦ ଉତ୍ତୋଳନ କରୁଛନ୍ତି । ଏଣୁ ଆମର ଗଭୀର ଭାଷାପ୍ରୀତି ଓ ସ୍ୱାଭିମାନର ଆବଶ୍ୟକତା ପଡୁଛି, ହୁଏତ ଅପରିହାର୍ଯ୍ୟ ହୋଇପଡିଛି ଆଜି । ଏଣୁ 'ମାତୃଭାଷା ପ୍ରୀତି ହେଉ ମୋ ଜୀବନ ନୀତି'ରେ ନିମଜ୍ଜିତ ରହିବି ବୋଲି ସଂକଳ୍ପ କରିଛି ।

***ବଂଶୀଧର ରାଉତ:*** *ଓଡ଼ିଆ ସାହିତ୍ୟ ଅନ୍ୟ ପ୍ରାନ୍ତୀୟ ସାହିତ୍ୟ ସହିତ ସବୁ ଦିଗରେ ସମକକ୍ଷ କି ?*

**ରାଧାମୋହନ ମହାପାତ୍ର:** ଅବଶ୍ୟ ଅନ୍ୟ ପ୍ରାନ୍ତୀୟ ସାହିତ୍ୟରେ ମୋର ପ୍ରବେଶ ନାହିଁ । ସଠିକ୍ ମତ ଦେଇପାରିବି ନାହିଁ । ତେବେ ନିଜ ପିଲା ନିଜକୁ ସୁନ୍ଦର ଭଳି ମୋ ଭାଷା ମୋତେ ସୁନ୍ଦର, ବହୁତ ସୁନ୍ଦର । ଖବର କାଗଜରୁ ପଢି ଅନ୍ୟ ଭାଷା ସମ୍ବନ୍ଧରେ ଯାହାକିଛି ଜାଣିଛି, ମୋ ଭାଷା ନ୍ୟୂନ ନୁହେଁ, ହୁଏତ ବଳିଷ୍ଠ ସବୁ ଦିଗରେ । ସମାଲୋଚନା ଓ ପ୍ରବନ୍ଧ ସାହିତ୍ୟ ଉପରେ ଆଉ ଟିକେ ଦୃଷ୍ଟି ଆବଶ୍ୟକ ପଡୁଛି ।

***ବଂଶୀଧର ରାଉତ: ଓଡ଼ିଆ ସାହିତ୍ୟିକମାନଙ୍କ ବିଷୟରେ କିଛି କୁହନ୍ତୁ ।***

**ରାଧାମୋହନ ମହାପାତ୍ର:** ସାହିତ୍ୟ ମଞ୍ଚରେ ବହୁ ନବୀନ ଓ ପ୍ରବୀଣ ସ୍ରଷ୍ଟାମାନେ ଦୃଶ୍ୟମାନ । ଜଣଙ୍କର ନାଁ କହି ଆଉ ଜଣଙ୍କୁ ଉପେକ୍ଷା କଲେ ପକ୍ଷପାତିତା ହୋଇପାରେ । ଯେଉଁମାନଙ୍କୁ ଜାଣିଛି ଓ ଯେଉଁମାନେ ଅଜଣା ରହିଛନ୍ତି ବ୍ୟକ୍ତିଗତ ଭାବେ ମୁଁ ସେମାନଙ୍କୁ ଶ୍ରଦ୍ଧା ଜ୍ଞାପନ କରୁଛି, କାରଣ ସବୁ ନଦୀର ଗତି ସମୁଦ୍ରରେ ମିଳନ ପରି ସମସ୍ତଙ୍କର ଲକ୍ଷ୍ୟ ଓଡ଼ିଆ ସାହିତ୍ୟର ଜୟଗାନ କରିବା, ଭାଷାକୁ ସମୃଦ୍ଧ କରିବା । ଗୋଟିଏ ମୋର ନିଜସ୍ୱ ବାର୍ତ୍ତା ରହିଛି, କାହାର ଗୋଡାଣିଆ ନ ହୋଇ ନିଜସ୍ୱ ଲେଖା, ସୃଷ୍ଟି ଓ ସୃଜନରେ ନିଜେ ବଳୀୟାନ ହୁଅ । ଈର୍ଷା, ଅସୂୟା, କୁତ୍ସା ଆଦି ଗୁଡିକରୁ ମୁକ୍ତ ହୁଅ ।

***ବଂଶୀଧର ରାଉତ: ଲେଖକ ଜୀବନ ନଈଟିଏ ପରି । ଆପଣଙ୍କ ମତ କ'ଣ ?***

**ରାଧାମୋହନ ମହାପାତ୍ର:** କେତେକାଂଶରେ ସତ୍ୟ । ନଦୀ ଆବର୍ଜନା ଦେହରେ ବୋହି ନେଇ ସାଗରରେ ଲୀନ କରିଦିଏ ଓ ନିଜେ ଲିନ ହୋଇଯାଏ ମହାସାଗରରେ । ସୃଷ୍ଟିର ସାହାଯ୍ୟକାରିଣୀ ପ୍ରାକୃତିକ ଉପାଦାନ ନଦୀ । ପିଠିରେ ପିଲାମାନଙ୍କୁ ପାର କରାଏ, ଫସଲରେ ପାଣି ପଟୁ ଯୋଗାଇ ଜୀବଜଗତକୁ ଜୀବନ ଯୋଗାଏ । କିନ୍ତୁ ନଦୀର ନିଜସ୍ୱ ଥାଏ, ସେ ପୂର୍ଣ୍ଣଗର୍ଭା ହେବା ପାଇଁ ବୃଷ୍ଟି ଉପରେ ନିର୍ଭର କରେ । ବୃଷ୍ଟି କୃପା ନ କଲେ ନଦୀ ଶୁଖିଲା, ଖାଁ ଖାଁ, ନିସ୍ତରଙ୍ଗ । କିନ୍ତୁ ଲେଖକ ଜୀବନ ଶୁପ୍ତ ନଈଟିଏ ନୁହେଁ, ସେ ଶୁଷ୍କତା ବିରୁଦ୍ଧରେ ସଂଗ୍ରାମ କରେ, ରକ୍ତମୟ ରଣକ୍ଷେତ୍ରରେ ସଞ୍ଜୀବନୀ ମନ୍ତ୍ର ଉଚ୍ଚାରଣ କରେ । କେବଳ ଗଢିବା ତା ଜୀବନର ଲକ୍ଷ୍ୟ, ସ୍ୱପ୍ନ । ଭାଙ୍ଗିବା ତା ଜୀବନର ବୈପିରୀତ୍ୟ । ଲେଖକ ସୃଜନଶୀଳ, ଲେଖକ ସୃଷ୍ଟିଶୀଳ, ଲେଖକ ନବୀନ ବାର୍ତ୍ତାର ବାହକ ।

***ବଂଶୀଧର ରାଉତ: ମହଲ ଆପଣଙ୍କୁ କେମିତି ଲାଗେ ?***

**ରାଧାମୋହନ ମହାପାତ୍ର:** ଭଲ ଲାଗେ । ଚେହେରା ଓ ପୋଷାକରେ ମୁଁ ବିଶ୍ୱାସ କରେ ନାହିଁ । ଗୁଣରେ ଭରପୁର 'ମହଲ' ମୋତେ ଆକୃଷ୍ଟ କରିଥାଏ । ନବୀନ ଓ ପ୍ରବୀଣଙ୍କ ସମାରୋହ ମହଲ ପତ୍ରିକାଟି । ପ୍ରତ୍ୟେକ ସଂଖ୍ୟାରେ ଦେଖୁଛି ଗୋଟାଏ ନୂତନ ଢଙ୍ଗରେ ଲେଖା, ଗପ ହେଉ ବା କବିତା ।

***ବଂଶୀଧର ରାଉତ: ଆପଣଙ୍କ ଲେଖକୀୟ ସତ୍ତା ଈଶ୍ୱରଙ୍କୁ କେମିତି ଗ୍ରହଣ କରେ ?***

**ରାଧାମୋହନ ମହାପାତ୍ର:** ପ୍ରତ୍ୟେକ ସୃଷ୍ଟିର ଜଣେ କିଏ ସ୍ରଷ୍ଟା ନିଷ୍ଠୟ ରହିଛି । ସେଇ ସ୍ରଷ୍ଟାକୁ ଆମେ ଈଶ୍ୱର କହିଥାଉ- କିଏ କେଉଁ ଭାବରେ, ରୂପରେ ତାଙ୍କୁ ଗ୍ରହଣ କରେ । ପ୍ରତ୍ୟେକ ଘଟଣାର ଘଟସୂତ୍ରଧାରୀ ସେ ଈଶ୍ୱର । ଜୀବନ ଦଶାରେ ଏପରି ଗୁଡିଏ ଘଟଣା ଘଟିଚାଲେ ଯାହା ଉପରେ ମଣିଷର କର୍ତ୍ତୃତ୍ୱ ନଥାଏ । ଧରାଯାଉ ବିବାହ, ଜନ୍ମମୃତ୍ୟୁ ଇତ୍ୟାଦି । ଏସବୁ ଘଟଣାର ସ୍ରଷ୍ଟା କିଏ ? ଉଚିତ କର୍ମ କରି ସୁଫଳ ପାଇଁ ଈଶ୍ୱରଙ୍କ ଉପରେ ନିର୍ଭର କରିବାକୁ ପଡେ ।

***ବଂଶୀଧର ରାଉତ: ଆପଣ ଭୂତ ପ୍ରେତଙ୍କୁ ବିଶ୍ୱାସ କରନ୍ତି କି ?***

**ରାଧାମୋହନ ମହାପାତ୍ର:** ଆଦୌ ନୁହେଁ । ସେମାନଙ୍କ ସମ୍ବନ୍ଧରେ, ଅସ୍ତିତ୍ୱ ଉପରେ, ଅନ୍ଧ ବିଶ୍ୱାସ ଉପରେ ମୋର ଗଳ୍ପଗୁଚ୍ଛ ଓ ଉପନ୍ୟାସ ସମୂହ ଅନେକ ଆଲୋକପାତ କରିଛି । ଭୂତ ଗୋଟାଏ ମନର ଭାବନା, ଭ୍ରାନ୍ତ ଧାରଣା- ମୁଁ ବାରମ୍ବାର କହିଛି ମୋ ଲେଖନୀରେ ।

***ବଂଶୀଧର ରାଉତ:*** **ଆପଣଙ୍କ ଲେଖନୀରେ ସତ୍ୟତା ଆପଣଙ୍କ ପାରିବାରିକ ଜୀବନରେ କିଛି ଅନ୍ତରାୟ ସୃଷ୍ଟି କରେ କି ?**

**ରାଧାମୋହନ ମହାପାତ୍ର:** ବରଂ ପରିବାର ଓ ପରିବେଶର ପ୍ରଭାବ ମୋ ଲେଖନୀରେ ପଡ଼ିଛି । ପୁଣି ମୋ ଗପଗୁଡ଼ିକୁ ପିଲାମାନେ ମନଦେଇ ପଢନ୍ତି । ବାର୍ତ୍ତାଟିକୁ ଗ୍ରହଣ କରିନିଅନ୍ତି । ସେମାନଙ୍କ କାର୍ଯ୍ୟକଳାପ ଓ କାରବାର ମୋ ଆଦର୍ଶକୁ କ୍ଷୁଣ୍ଣ ନକଲା ଭଳି । ସନ୍ତୁଷ୍ଟ ମୁଁ । ମୋର କୌଣସି ଅନ୍ତରାୟ ନାହିଁ, ବରଂ ଆନ୍ତରିକତା ଅଛି ମୋ ପରିବାରର ।

***ବଂଶୀଧର ରାଉତ: ଆପଣ ପର ଜନ୍ମରେ ବିଶ୍ୱାସ କରନ୍ତି କି ?***

**ରାଧାମୋହନ ମହାପାତ୍ର:** କରେ ଏବଂ କରେ ନାହିଁ । ଏଭଳି ଦ୍ୱନ୍ଦ୍ୱ ଅବସ୍ଥାରେ ଅଛି । ବିଶ୍ୱାସ ଓ ଅବିଶ୍ୱାସର ସନ୍ଧିସ୍ଥଳରେ ମୋର ଅବସ୍ଥିତି । ନିର୍ଦ୍ଦିଷ୍ଟ ଉତ୍ତର ଅଦ୍ୟାପି ପାଇପାରିନି ।

***ବଂଶୀଧର ରାଉତ: ପର ଜୀବନରେ(ଯଦି ଥାଏ) କ'ଣ ହୋଇ ଜନ୍ମ ହେବାକୁ ଚାହାନ୍ତି ?***

**ରାଧାମୋହନ ମହାପାତ୍ର:** ଯଦି ଏପରି ଜନ୍ମ ଥାଏ, ମୋ ଜୀବନ ସଙ୍ଗିନୀକୁ ନେଇ ପୁଣିଥରେ ପରଜନ୍ମରେ ସଂସାର ଗଢିବାକୁ ଇଚ୍ଛାକରେ, ଠିକ୍ ଏ ଜୀବନର ସଂସାର ପରି ।

***ବଂଶୀଧର ରାଉତ:*** ଜଣେ ସାହିତ୍ୟିକ ହିସାବରେ ସେକ୍ସ(sex)କୁ ଆପଣ କିପରି ଭାବେ ଗ୍ରହଣ କରନ୍ତି ? ମଣିଷ ଜୀବନ ସହିତ ଯୌନ ଚେତନାର ସମ୍ପର୍କ କିପରି ହେବା ବାଞ୍ଛନୀୟ କହନ୍ତୁ ।

**ରାଧାମୋହନ ମହାପାତ୍ର:** ସେକ୍ସ ବା 'ଯୌନ' ଜୀବ ଜଗତର ମୂଳ ଉତ୍ସ । ଜଗତରୁ ଯୌନକୁ ଉଚ୍ଛେଦ କରିଦିଅନ୍ତୁ, ଦେଖିବେ ଏହା ଏକ ନିଷ୍ପ୍ରାଣ ପିଣ୍ଡଟିଏ ମାତ୍ର । ମଣିଷର ବିକାଶ ଇତିହାସରେ କ୍ରମଶଃ ସାମାଜିକ ଚେତନା ଓ ଶାଳୀନ ଚିନ୍ତାଧାରା ତଥା ସୌନ୍ଦର୍ଯ୍ୟବୋଧ ଯୌନ ଚରିତ୍ରକୁ ନିୟନ୍ତ୍ରଣ କରିଛି । ତେବେ ସେକ୍ସ ଶବ୍ଦଟିକୁ ଉଠେଇ ଦେଖିଲେ ଏହା ଏକ ଦର୍ଶନ ଚିନ୍ତାଧାରାର ଚେତନା ଦିଏ । ତାକୁ ନିଠେଇ ଦେଖିଲେ ଏହା ଏକ ଜୀବୋତ୍ପତ୍ତି ଓ ଯୌନୋନ୍ମତ୍ତର ପରିପ୍ରକାଶ । **ଯେଉଁଠି ନଗ୍ନତା ସୌନ୍ଦର୍ଯ୍ୟାତ୍ମକ ଆନନ୍ଦ ଦିଏ, ସେଠି ଏହା ଏକ କଳା; ଯେଉଁଠି ଏହା କାମୁକତା ଜଗାଏ, ସେଠି ଏହା ଅଶ୍ଳୀଳତା ବୋଲି ଆମେ କହିଥାଉଁ ।** କେବଳ ମଣିଷ ଜୀବନ କାହିଁକି, ଜୀବଜଗତ ସହିତ ଯୌନତା ଅଙ୍ଗାଙ୍ଗୀଭାବେ ଜଡ଼ିତ । ଯୌନ ଚେତନାର ସୌନ୍ଦର୍ଯ୍ୟାତ୍ମକ ବୋଧ ମଣିଷକୁ ଜଗତର ଅନ୍ୟ ପ୍ରାଣୀଙ୍କଠାରୁ ପୃଥକ୍ କରିଛି । ମଣିଷ ପୋଷାକ ପିନ୍ଧୁଛି କାହିଁକି ? ଏଠି ଏହି ଯୌନ ଚେତନା ହିଁ ଜଡ଼ିତ । ପୁତ୍ର ଶିଶୁ ଦେହକୁ ବୟସ ଛୁଇଁଲେ ଓ ସେ ଯୌବନପ୍ରାପ୍ତ ହେଲେ, ମା' ଆଖି ପାଇଁ ମଧ୍ୟ ପୋଷାକର ଆଭରଣ ଆବଶ୍ୟକ ପଡେ । ଏହା କେବଳ ଯୌନ ଚେତନା ଓ ସୌନ୍ଦର୍ଯ୍ୟ ଶାଳୀନତାର ପରିଚର୍ଯ୍ୟା, ଯାହାଯୋଗୁଁ ମଣିଷ ଅନ୍ୟ ପ୍ରାଣୀଙ୍କଠାରୁ ଭିନ୍ନ ହୋଇଥାଏ । ଯୌନ ଚେତନାକୁ ଏକ ସୌନ୍ଦର୍ଯ୍ୟବୋଧକ ଚିନ୍ତାଧାରାରେ ସମାଜର ଶୃଙ୍ଖଳା ଭିତରେ ବାନ୍ଧି ରଖିବା ପାଇଁ ଉନ୍ନତମାନବ ସଭ୍ୟତାର ପରାମର୍ଶ । ଯେଉଁଠି ଯୌନ ବିଶୃଙ୍ଖଳିତ ଏବଂ ଅନିୟନ୍ତ୍ରିତ ସେଠି ଯୌନକୁ ପାଶବିକତା(ପଶୁ ଚିନ୍ତାଧାରା)ବୋଲି କୁହାଯିବ । ଯେଉଁଠି ସାମାଜିକ ନିୟମରେ ଏହା ଶୃଙ୍ଖଳିତ, ଏହା ସୌନ୍ଦର୍ଯ୍ୟବୋଧକ । ମଣିଷର ବିକାଶ ଧାରାରେ sexର ସାମଗ୍ରିକ ମୂଲ୍ୟାଙ୍କନ ହେଉଛି ସାମାଜିକ ଶୃଙ୍ଖଳା ଭିତରେ ଯେଉଁ ସମାଜରେ ଯୌନ ଚେତନା ଯେତେ ଶୃଙ୍ଖଳିତ, ସେଠି

ଯୌନ ସୌନ୍ଦର୍ଯ୍ୟବୋଧ ଅଧିକ, କାରଣ ସୌନ୍ଦର୍ଯ୍ୟକୁ ଲୁଚାଇ ରଖିଲେ ଆକର୍ଷଣ ଅଧିକ ହୋଇଥାଏ, ତା'ର ସ୍ୱାଦ ମଧୁର । ଅତଏବ ଯୌନ ବା ସେକ୍‌ସକୁ ଏକ ପବିତ୍ର ଚିନ୍ତାଧାରା ଭାବେ ଗ୍ରହଣ କରାଯାଏ ବିଶେଷ କରି ଆମ ହିନ୍ଦୁ ଚେତନା ଓ ଚିନ୍ତାଧାରାରେ, ଏବଂ ଆମ ରକ୍ଷଣଶୀଳ ସମାଜ ପାଇଁ ଏହା ବିଧେୟ ମଧ ।

***ବଂଶୀଧର ରାଉତ:*** *ରାଧାମୋହନ ମହାପାତ୍ରଙ୍କ ପରିଚୟ ଦିଅନ୍ତୁ ।*

**ରାଧାମୋହନ ମହାପାତ୍ର:** ସେଭଳି ପରିଚୟ ମୋର କାହିଁ ? ଜଣେ ମାମୁଲି ସାଧାରଣ, ସାମାନ୍ୟ, କ୍ଷୁଦ୍ର ମଣିଷଟିଏ ଯିଏ ତା ମାତୃଭାଷାକୁ ଆଦରରେ ଶ୍ରଦ୍ଧା କରେ । ଗଭୀର ଭାବେ ତା'ର ସମୃଦ୍ଧି କାମନା କରେ ।



# ଶିକାରରୁ ବିକାର

**ସାକ୍ଷାତ- ଶେଷଦେବ ମିଶ୍ର**

***ପ୍ରଶ୍ନ: ଆପଣ ଜଣେ ପ୍ରଶାସକ । ଉପନ୍ୟାସ ରଚନା ପାଇଁ ଆପଣଙ୍କର ଝୁଙ୍କ ଉଠିଲା କାହିଁକି ?***

**ଉତ୍ତର-** ଏ ବିଷୟରେ ସମ୍ୟକ୍ ସୂଚନା ଦେଇଛି, ମୋର ପ୍ରଥମ ଉପନ୍ୟାସ ପ୍ରଥମ ପ୍ରଭାତର ନିଜ କଥାରେ । ଜୀବନ ଗତିପଥରେ ହଠାତ୍ ମୋଡ ବଦଳି ଯାଇଥାଏ, ପରିସ୍ଥିତି ଏବଂ ପରିବେଶର ପ୍ରଭାବରେ । ଛାତ୍ର ଜୀବନରୁ ପଢା ଓ ଲେଖା ଓ ବଂଶୀବାଦନ ପ୍ରତି ଏକ ଗଭୀର ଆକର୍ଷଣ ଥାଏ । ଶିକ୍ଷା ପରେ ଜୀବିକା ଉପାର୍ଜନ ପାଇଁ ଚାକିରିଟିଏ ମିଳିଯାଏ । କିନ୍ତୁ ମନ ଭିତରେ ଜୀବନ ପାଇଁ ଉଚ୍ଛ୍ୱାସ ଲୁଚି ରହିଥାଏ ଏବଂ ଲେଖନୀ ମାଧ୍ୟମରେ ତାହାର ପରିପ୍ରକାଶ ଘଟେ ପ୍ରଥମ ପ୍ରଭାତରେ ।

***ପ୍ରଶ୍ନ: ଆପଣ ୬ଟି ସଫଳ ଉପନ୍ୟାସର ନୀରବ ସ୍ରଷ୍ଟା । ନିକଟରେ ପ୍ରକାଶିତ 'ଜଙ୍ଗଲର ଜମାନବନ୍ଦୀ' ଏକ ଭିନ୍ନ ରୁଚିର ଉପନ୍ୟାସ ଭାବେ ଚହଳ ପକାଇଛି । କେଉଁ ଉପନ୍ୟାସଟି ଆପଣଙ୍କ ଦୃଷ୍ଟିରେ ଶ୍ରେଷ୍ଠ ବୋଲି ବିବେଚନା କରୁଛନ୍ତି ?***

**ଉତ୍ତର-** ମୁଁ ନିଜେ କହିବା ମୁସ୍କିଲ । ସ୍ରଷ୍ଟା ଆଖିରେ ତାର ସମସ୍ତ ସୃଷ୍ଟି ସୁନ୍ଦର, ଯେପରି ଜନନୀ ଆଖିରେ ସବୁ ସନ୍ତାନ ସୁନ୍ଦର ଓ ସମାନ । କିଏ ଗୋଟାଏ ଗୁଣରେ ଊଣା ଥିଲେ, ଅନ୍ୟଟି ଆଉ ଏକ ସ୍ୱତନ୍ତ୍ର ଗୁଣରେ ଗରୀୟାନ୍ । ନିମ୍ବ ଫଳ ନିମ୍ବଗଛ ପାଇଁ ପିତା ନୁହେଁ, ବରଂ ମଧୁର । ତେବେ ବହି ବିକ୍ରୟରୁ ଲୋକପ୍ରିୟତା ଅନୁମାନ କରାଯାଇପାରେ । ଏହି ଦୃଷ୍ଟିରୁ 'ଝରେ ଶ୍ରାବଣ ଝୁରେ ଫଗୁଣ' ଉପନ୍ୟାସଟି ସର୍ବଜନାଦୃତ ବୋଲି ଦାବି କରାଯାଏ ।

***ପ୍ରଶ୍ନ: ଆପଣ ଜଣେ ବଂଶୀବାଦକ ଓ କଳାପ୍ରିୟ- ଏହାର କାରଣ କ'ଣ ?***

**ଉତ୍ତର-** ବାଲ୍ୟକାଳରୁ 'ଭଲ' ପ୍ରତି ଆକର୍ଷଣ । ସଙ୍ଗୀତର ମୂର୍ଚ୍ଛନା ଚିତ୍ତକୁ ପୂତ କରାଏ । 'ଚିତ୍ତ' ଓ 'ପୂତ' ମଧ୍ୟରେ ସମନ୍ୱୟ ରକ୍ଷା କରିବା ମୋର ଅଭ୍ୟାସ । ମୁଁ ମୋର ହେତୁ ପାଇବାବେଳୁ ବଂଶୀଟିଏ ଧରିଥିଲି । କାଳକ୍ରମେ ତାହାର ମୋହରେ ପଡିଲି । ମୋତେ ତାହା ଖୁବ୍ ଭଲ ଲାଗିଲା; କିନ୍ତୁ ସାଧନାରୁ ଶୀର୍ଷବିନ୍ଦୁରେ ପ୍ରବେଶ କରିପାରିଲି ନାହିଁ ସୁଯୋଗର ଅଭାବରୁ । ବନ୍ଧୁକ ଆସିଥିଲା, କିନ୍ତୁ ଆପେ ଆପେ ଅନ୍ତର୍ହିତ ହୋଇଗଲା । ଅସରନ୍ତି ଅଭିଜ୍ଞତା ପରେ ଏବେ ବନ୍ଧୁକ ବଦଳରେ ହାତରେ ଧରିଛି ଲେଖନୀଟିଏ ।

***ପ୍ରଶ୍ନ: ଦେଶରେ ସମ୍ମାନ ପାଇଁ ଲବି ପର୍ଯ୍ୟନ୍ତ ଅର୍ଥବ୍ୟୟ ! ପ୍ରଶାସନିକ ସ୍ତରର ଲୋକେ ଖାଲି କବିତା ଲେଖୁଛନ୍ତି ଓ ସମ୍ମାନ ମଧ୍ୟ ପାଉଛନ୍ତି (!) । ଆଧୁନିକ କବିତା ପୁସ୍ତକରେ ଖାଲି ପ୍ରେମର ପ୍ରାବଲ୍ୟ । କିନ୍ତୁ ସମାଜକୁ ଶିକ୍ଷା ଦେବାଭଳି ଉପାଦାନ ସେଥିରେ ନାହିଁ । ଏ ସମ୍ପର୍କରେ ଆପଣଙ୍କର ମତ କ'ଣ ?***

**ଉତ୍ତର-** ନିଜସ୍ୱ ରୁଚି ଉପରେ ସୃଷ୍ଟି ନିର୍ଭରଶୀଳ । କେବଳ ପ୍ରେମକୁ ପାଥେୟ କରି ସୃଷ୍ଟି ସର୍ଜନା କଲେ, ତାହା ସ୍ୱୟଂସଂପୂର୍ଣ୍ଣ ହୁଏ ନାହିଁ । ପ୍ରେମ ସହିତ ପରାମର୍ଶ ମଧ୍ୟ ଆବଶ୍ୟକ । ସ୍ୱଚ୍ଛ ପ୍ରେମକୁ ସମ୍ମାନ ଦେବା ସ୍ରଷ୍ଟାର କର୍ତ୍ତବ୍ୟ ମଧ୍ୟ ।

***ପ୍ରଶ୍ନ: ନିକଟ ଅତୀତରେ ଆପଣଙ୍କୁ ସମ୍ମାନିତ କରାଗଲା । ସେଥିରେ କେବଳ ଆପଣ ସନ୍ତୁଷ୍ଟ ରହିବେ ନା ସର୍ବଭାରତୀୟ କିମ୍ବା ଆନ୍ତର୍ଜାତୀୟ ସମ୍ମାନର ଆଶାବାଦୀ ?***

**ଉତ୍ତର-** ସମ୍ମାନକୁ ଆଖି ଆଗରେ ରଖି ସୃଷ୍ଟି କରାଯାଏ ନାହିଁ । ସୃଷ୍ଟିର ଶକ୍ତି ଦ୍ୱାରା ସମ୍ମାନ ବା ସ୍ୱୀକୃତି ଆପେ ଆପେ ମିଳିଥାଏ । ସଫଳ ସୃଷ୍ଟି ସହିତ ସମ୍ମାନର କୌଣସି ସଂପର୍କ ନାହିଁ । ପାଠକର ସ୍ୱୀକୃତି ପତ୍ରଟିଏ ସର୍ବୋତ୍କୃଷ୍ଟ ସମ୍ମାନ । ଅଜଣା ପାଠକ ଠାରୁ ସ୍ୱୀକୃତି ପତ୍ରଟିଏ ପାଇଲେ କୋଟିନିଧି ପରି ଲାଗେ । ପତ୍ରଗୁଡିକ ଯତ୍ନରେ ସାଇତି ରଖିଛି ।

***ପ୍ରଶ୍ନ: ଆପଣଙ୍କୁ ଉପନ୍ୟାସ ରଚନା ପାଇଁ ପ୍ରେରଣା ଯୋଗାଇଲା କିଏ ?***

**ଉତ୍ତର-** 'ଝରେ ଶ୍ରାବଣ ଝୁରେ ଫଗୁଣ' ପୁସ୍ତକରେ ତାହା ପ୍ରାଞ୍ଜଳ ଭାବେ ବର୍ଣ୍ଣିତ । ଯିଏ ମୋର ଲେଖନୀରେ ପ୍ରାଣପ୍ରାଚୁର୍ଯ୍ୟ ଭରି ଦେଇଛି ସିଏ ମୋର ସହଧର୍ମିଣୀ ଶ୍ରୀମତୀ ପ୍ରତିଭା ମହାପାତ୍ର । ତାଙ୍କ ସାହାଯ୍ୟ, ଅନୁରାଗ ଓ ଅନୁପ୍ରେରଣା ବିନା ମୋର କୌଣସି ସୃଷ୍ଟି ସମ୍ଭବ ହୋଇପାରି ନଥାନ୍ତା । ମୋ ପଛରେ ସେ ଛାୟାଭଳି ।

***ପ୍ରଶ୍ନ: ଉପନ୍ୟାସ ରଚନା ଓ ବଂଶୀବାଦନରୁ କେଉଁଟିରେ ଆପଣ ମୁହ୍ୟମାନ ?***

**ଉତ୍ତର-** ଉଭୟରୁ ।

***ପ୍ରଶ୍ନ: ଯେ ମଣିଷକୁ ଭଲ ପାଇବା ଶିଖିଛି, ସେ ଶିକାରୀ ହେଲା କାହିଁକି ?***

**ଉତ୍ତର-** ଧ୍ୱଂସରୁ ସୃଷ୍ଟି ହେଲା ଭଳି । ତାହା ନିଶ୍ଚିତ ଭାବେ ଶ୍ରେଷ୍ଠ ଓ କାଳଜୟୀ ।

***ପ୍ରଶ୍ନ: ଗୁଳିବିଦ୍ଧ ମୃଗୁଣୀର ଆର୍ତ୍ତ ଚିତ୍କାର ନିର୍ମମ ଶିକାରୀ ହୃଦୟରେ ଦୟା ସଞ୍ଚାର କରେ କି ?***

ଉତ୍ତର- 'ମା ନିଷାଦ ପ୍ରତିଷ୍ଠାଂ' ଯାହା ମୋ ପାଖେ ଘଟିଛି ।

***ପ୍ରଶ୍ନ: ଯିଏ ଜୀବନ ଦେଇ ଜାଣେନା, ସେ ଜୀବନ ନିଏ କାହିଁକି ?***

**ଉତ୍ତର-** ବଞ୍ଚିବାର ବିକଳ୍ପ ପନ୍ଥା ଥିଲେ, ହିଂସ୍ରତା ବର୍ଜନୀୟ- ସୃଷ୍ଟିର ପରାମର୍ଶ ।

***ପ୍ରଶ୍ନ: ଆପଣ ଶାକାହାରୀ ନା ମାଂସାହାରୀ ?***

**ଉତ୍ତର-** ଉଭୟ । ତେବେ ଶାକାହାରୀ ହେବାକୁ ଏବେ ଭଲ ଲାଗୁଛି । ଶିକାରରୁ ବିକାର । ମାଂସ ପ୍ରତି ବିକର୍ଷଣ।





(ଔପନ୍ୟାସିକ ଶ୍ରୀ ରାଧାମୋହନ ମହାପାତ୍ର ସୃଜନ କ୍ରିୟାରେ)

# ଭିନ୍ନ ମଣିଷ, ଭିନ୍ନ ଜଗତ

*ସର୍ବଜନାଦୃତ ସାହିତ୍ୟ ରଥୀମାନଙ୍କ ମଧ୍ୟରେ ଯେଉଁ କେତେଜଣ ସାହିତ୍ୟିକ ଲେଖନୀମୁନରେ ସୃଷ୍ଟିକରି ଚାଲିଛନ୍ତି ଶତଶତ ଅମ୍ଳାନ କୃତିକୁ ଯାହା ଅମରାକ୍ଷରରେ କାଳଜୟୀ ମୂଲ୍ୟ ଦେଇ ଚାଲିଥିବ। ଯୁଗରୁ ଯୁଗାନ୍ତ ପର୍ଯ୍ୟନ୍ତ, ସେମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ରାଧାମୋହନ ମହାପାତ୍ର ଅନ୍ୟତମ କହିଲେ ଅତ୍ୟୁକ୍ତି ହେବ ନାହିଁ। କଥାଶିଳ୍ପୀ ଏବଂ ଔପନ୍ୟାସିକ ଭାବରେ ସୃଷ୍ଟି କରିବାର ଏକାନ୍ତ ଆକାଂକ୍ଷା ନେଇ ତମସା ତୀର୍ଥ, ସତ୍ୟମ୍‌ଏବ, ଜୀଅନ୍ତା ଶବ, ପ୍ରଥମ ପ୍ରଭାତ, ଝରେ ଶ୍ରାବଣ ଝୁରେ ଫଗୁଣ, ବୃକ୍ଷ ଆମର ବନ୍ଧୁ, ଏବଂ ଜଙ୍ଗଲର ଜମାନବନ୍ଦୀ ପ୍ରଭୃତି ସାତଟି ଉପନ୍ୟାସ ତଥା ୧୩୧ଟି ଛୋଟ ବଡ଼ ଗଳ୍ପର ସ୍ରଷ୍ଟା (ଯାହା ବିଭିନ୍ନ ପତ୍ରିକାରେ ପ୍ରକାଶିତ) ଭାବରେ ସେ ବେଶ୍ ଖ୍ୟାତ। ସମାଜରେ ମାନବବାଦ ଓ ବ୍ୟକ୍ତିସତ୍ତାକୁ ସେ କେବଳ ଅନୁଭବ, ଉପଲବ୍ଧିର ସାରସ୍ୱତରେ ଜୀବନ୍ତ କରି ଗଢ଼ିତୋଳି ନାହାନ୍ତି ବରଂ ଜଙ୍ଗଲର ହିଂସ୍ରପଶୁ ବ୍ୟାଘ୍ର ମଧ୍ୟରେ ଲୁକ୍‌କାୟିତ ମାନବ ସୁଲଭ ସ୍ନେହ, ମମତା, ଆନ୍ତରିକତା ପ୍ରଭୃତି ଗୁଣାବଳୀ ମଧ୍ୟ ସ୍ନେହର ଫଲ୍‌ଗୁରେ ରୂପାନ୍ତରିତ ହୋଇପାରୁଛି ବୋଲି ପ୍ରମାଣସିଦ୍ଧ ମନ୍ତବ୍ୟ ଜଙ୍ଗଲର ଜମାନବନ୍ଦୀ ଉପନ୍ୟାସରେ ସେ ସ୍ପଷ୍ଟ କରିଦେଇଛନ୍ତି। ଶ୍ରୀଯୁକ୍ତ ମହାପାତ୍ର ବର୍ତ୍ତମାନ ଓଡ଼ିଶା ଅର୍ଥସେବା ସଂସ୍ଥାର ସଭ୍ୟ ଏବଂ ଭୁବନେଶ୍ୱର ୧ମ ମଣ୍ଡଳର ବାଣିଜ୍ୟକର ପଦାଧିକାରୀ ଭାବରେ କାର୍ଯ୍ୟରତ ତାଙ୍କ ସହିତ ଏକ ମଧୁର ସନ୍ଧ୍ୟାରେ କିଛି ଅନ୍ତରଙ୍ଗ ମୁହୂର୍ତ୍ତ।*

***- ଆପଣ କେବେଠାରୁ ଲେଖାଲେଖି ଆରମ୍ଭ କରିଛନ୍ତି ?***

ବକ୍‌ସି ଜଗବନ୍ଧୁ ବିଦ୍ୟାଧର କଲେଜରେ ପଢୁଥିବା ସମୟରୁ ହିଁ କ୍ଷୁଦ୍ରଗଳ୍ପମାନ ଲେଖିବା ଆରମ୍ଭ କରିଛି । ସେତେବେଳେ ମୁଁ ଲେଖକ ନଥିଲି, ଥିଲି ବନ୍ଧୁକଧାରୀ ଶିକାର ଅନ୍ୱେଷୀ ଜଣେ ଉଦାମ ବନଚାରୀ। ଘଞ୍ଚ ଅରଣ୍ୟ ଭିତରେ ପାଦରେ ଘୂରିବା ମୋର ଥିଲା ପ୍ରବଳଝୁଙ୍କ। ସେତେବେଳେ ବନର ଘନଗହଳି ଭିତରେ ଦିନ ରାତିର ତଫାତ୍ ବୁଝି ନ ଥିଲି । ବନାକର୍ଷଣ ମୋତେ ବାନ୍ଧି ରଖିଥିଲା। ଅରଣ୍ୟକରଣ ମୋର ଥିଲା ନିଶା। ଥିଲି ଦିବାଚର ଓ ନିଶାଚର।

***- ଆପଣ କେଉଁ କେଉଁ ଅଞ୍ଚଳ ବୁଲିଛନ୍ତି ଏବଂ ସେ ସ୍ଥାନ ମଧ୍ୟରେ କେଉଁ ଯାଗାଟି ଆପଣଙ୍କୁ ବହୁତ ଭଲ ଲାଗିଥିଲା ଓ କାହିଁକି ?***

କୋରାପୁଟ, କଳାହାଣ୍ଡି, ସମ୍ବଲପୁର, ସୁନ୍ଦରଗଡ଼, ମୟୂରଭଞ୍ଜ, ବାଲେଶ୍ୱର, ଢେଙ୍କାନାଳ ପ୍ରଭୃତି ଅଞ୍ଚଳମାନଙ୍କର ଘଞ୍ଚ ଜଙ୍ଗଲ ମଧ୍ୟରେ ମୋର ଭ୍ରମଣ କରିବା ପାଇଁ ସୁଯୋଗ ଆସିଥିଛି ।

ସେଥିମଧ୍ୟରୁ ବାଲେଶ୍ୱର ଯାଗାଟି ମତେ ଖୁବ୍ ଭଲ ଲାଗିଥିଲା । ଶିକାରୀ ସାଜି ଜଙ୍ଗଲରେ ବୁଲିବା ସମୟରେ ସୃଷ୍ଟିକର୍ତ୍ତାଙ୍କର ଆଶୀର୍ବାଦ ନେଇ ମୁଁ କଲମ ଧରିଲି । 'ଝରେ ଶ୍ରାବଣ ଓ ଝୁରେ ଫଗୁଣ' ଉପନ୍ୟାସଟି ତାହାର ଜୀବନ୍ତ ଉଦାହରଣ ।

***-ପଶୁ ପ୍ରତି ସମ୍ବେଦନଶୀଳ ହେଲେ ସେ ମନୁଷ୍ୟଠାରୁ ଆହୁରି ବିଶ୍ୱସ୍ତ ହୋଇପାରେ ବୋଲି ଯେଉଁ ବର୍ଣ୍ଣନାକୁ ଆପଣ ଜୀବନ୍ତ କରି ଗଢ଼ିତୋଳିଛନ୍ତି ଏହା କେତେଦୂର ସତ୍ୟ ?***

ପୃଥିବୀରେ ମନୁଷ୍ୟ ସବୁଠାରୁ ବେଇମାନ ଜୀବନ । ହେଲେ ପଶୁମାନଙ୍କୁ ବାସ୍ତବ ସ୍ନେହ ମମତାର ବନ୍ଧନରେ ଆବଦ୍ଧ କରି ପାରିଲେ ସେମାନେ ହିଂସ୍ରତା ମୁକ୍ତ ହୋଇ ମନୁଷ୍ୟଠାରୁ ଆହୁରି ବିଶ୍ୱସ୍ତ ହୋଇଯାନ୍ତି । ଏହା ମୋର ପ୍ରତ୍ୟକ୍ଷ ଅନୁଭୂତି କହିଲେ ଯଥାର୍ଥ ହେବ । ରାଜ ଅତିଥି ନାମକ ଏକ କ୍ଷୁଦ୍ରଗଳ୍ପରେ ସବୁ ଶେଷ ପରେ ଗଳ୍ପରେ ଏହାର ସତ୍ୟାସତ୍ୟ ନିରୂପଣର ଚେଷ୍ଟା କରିଛି ।

***- ଆପଣଙ୍କୁ ଆପଣଙ୍କର ସମସ୍ତ ସୃଷ୍ଟି ମଧ୍ୟରେ କେଉଁଠି ଖୁବ୍ ଆନନ୍ଦ ଦେଇପାରିଛି ?***

ଜୀବନ ଜିଜ୍ଞାସାକୁ ପୁଙ୍ଖାନୁପୁଙ୍ଖ ଭାବେ ପର୍ଯ୍ୟାଲୋଚନା କଲେ ଦେଖାଯାଏ ଆମମାନଙ୍କର ଚତୁର୍ଦ୍ଦିଗରେ ଅନେକ ସମସ୍ୟା ମୁଣ୍ଡଟେକି ଉଠିଛି । ସମସ୍ୟାର ଶେଷ ନାହିଁ । କବି, ଲେଖକ, ଔପନ୍ୟାସିକ ଯେତେ ଲେଖିଲେ ମଧ୍ୟ ସମାଧାନର ପଥ ଉନ୍ମୁକ୍ତ ହୁଏ ନାହିଁ । ଲେଖକର ଚତୁର୍ଦ୍ଦିଗରେ ଘଟି ଯାଉଥିବା ଘଟଣାର ତୀର୍ଯ୍ୟକ ଦୃଷ୍ଟିଭଙ୍ଗୀ ସର୍ଜନଶୀଳତାର ଏନ୍ତୁଡ଼ିଶାଳ । ଜଣେ ସାହିତ୍ୟିକର ଲେଖନୀ ଚାଳନା ଅର୍ଥାତ୍ ତାର ସୃଷ୍ଟି ଉଦ୍ଦେଶ୍ୟରହିତ ହେଲେ ସେ ସୃଷ୍ଟିର ମାନେ କିଛି ହୁଏନା ।

***- ଆପଣଙ୍କର ଜୀବନ ଉପରେ ସବୁଠାରୁ କାହାର ପ୍ରଭାବ ଅଧିକ ?***

ଗଭୀର ଚିନ୍ତାଶକ୍ତି, ପ୍ରଗାଢ଼ ନିଷ୍ଠା, ସାଧନା, ଏବଂ ଅନୁଭବର ସୂକ୍ଷ୍ମତାରେ ମୁଁ କିଛି ଲେଖେ । ମାଗି ଆଣିଲା ତିଅଣ ତ ସୁଡୁକେ, କାହାରି ନିଜସ୍ୱକୁ ସର୍ବସ୍ୱ କରିବାରେ ଆନ୍ତରିକତା ମୋର ନ ଥିଲା ନାହିଁ କହିଲେ ଦ୍ୱିଧା ନାହିଁ । କିନ୍ତୁ ମନୋରଞ୍ଜନ ଦାସଙ୍କର ଲେଖାମାନ ଉଦ୍ଦେଶ୍ୟ ଭିତ୍ତିକ ବୋଲି ଉପଲବ୍ଧି ମୋର ଅଧ୍ୟୟନକୁ ଅବ୍ୟାହତ ରଖିଛି ।

***- ଆପଣ ଆଧୁନିକ ସମାଜର ବ୍ୟକ୍ତିବିଶେଷ ପ୍ରତି ଏକ ତୀର୍ଯ୍ୟକ୍ ବ୍ୟଙ୍ଗ ମନୋଭାବ ପୋଷଣ କରିଛନ୍ତି ।***

ଆଧୁନିକ ମଣିଷ ଏକାନ୍ତଭାବରେ ସ୍ୱାର୍ଥସର୍ବସ୍ୱ ବସ୍ତୁବାଦୀ ହୋଇ ମାନବିକତାକୁ ହଜେଇ ଦେଇ ହସୁଛି । ଆଦିବାସୀ ସମାଜର ନିଷ୍କପଟତା, ସରଳତା, ସେମାନଙ୍କ ରାଜତ୍ୱ ଭିତରକୁ ପଶିପାରୁ ନାହିଁ । ଏହା ନିଃସନ୍ଦେହ ।

***- କର୍ମକ୍ଳାନ୍ତ ଜୀବନରେ ଆପଣ କାହାର ଅନୁପ୍ରେରଣାରେ ଲେଖାଲେଖି ପାଇଁ ସୁଯୋଗ ପାଉଛନ୍ତି ?***

ମୋ ସ୍ତ୍ରୀ ଏବଂ ପ୍ରେରଣା, ସାହାଯ୍ୟ ଏବଂ ଅନୁକମ୍ପା ଦ୍ୱାରା ମୁଁ ନିଶ୍ଚୁପ, ଶୁନଶାନ ସମୟରେ କିଛି କିଛି ଲେଖୁଥାଏ ।

***- ଜଣେ ସାହିତ୍ୟିକ ସଫଳତାର ସୂର୍ଯ୍ୟୋଦୟକୁ ନିଜର କରିବା ପାଇଁ କ'ଣ ଆବଶ୍ୟକ ?***

ସଫଳ ଲେଖା ପାଇଁ ଅନେକ ଗୁଡ଼ିଏ ଜିନିଷର ଆବଶ୍ୟକତାକୁ ଉପେକ୍ଷା କରିହେବ ନାହିଁ । ମୁଖ୍ୟତଃ ୧.ଅନ୍ତର୍ନିହିତ ବ୍ୟକ୍ତି, ୨.ଅନ୍ତର୍ଭେଦୀ ଦୃଷ୍ଟି, ୩.ଅନୁଶୀଳନ ଶକ୍ତି, ୪.ପରିପ୍ରକାଶ ଶକ୍ତି, ୫.କଥନଭଙ୍ଗୀ ଏସବୁ ଦ୍ୱାରା ସାହିତ୍ୟ ନିଶ୍ଚୟ ଉଚ୍ଚକୋଟୀର ହୋଇପାରିବ ବୋଲି ମୋର ବିଶ୍ୱାସ ।

***- କେଉଁ ଔପନ୍ୟାସିକଙ୍କୁ ଆପଣ ଭଲପାଆନ୍ତି ?***

ପ୍ରତ୍ୟେକ ଉପନ୍ୟାସ ବର୍ଣ୍ଣନାର ଲାଳିତ୍ୟ ଏବଂ ସରଳ ଶବ୍ଦଶକ୍ତି ତୁଳା ଭଳି କାମ କରିଥାଏ । ଉନ୍ନତ ରୁଚିର ଆବଶ୍ୟକ ଶବ୍ଦ ସଂଯୋଜନା ଏବଂ ଉପସ୍ଥାପନା ଶୈଳୀ ପାଠକମାନଙ୍କୁ ଆକୃଷ୍ଟ କରେ । ସାହିତ୍ୟିକ କାହ୍ନୁଚରଣଙ୍କ 'କା' ଉପନ୍ୟାସ ସେ ଦୃଷ୍ଟିରୁ ଚମତ୍କାର ଆକର୍ଷଣ ।

***- ଆଗାମୀ ଲେଖକ ଲେଖିକାମାନଙ୍କ ପାଇଁ ଆପଣଙ୍କର କି ବାର୍ତ୍ତା ରହିଛି ?***

ନିଜ ପାଇଁ ନେଇଯିବାର ଉଦ୍ୟମରୁ ଦୂରେଇଯାଇ ଦେଇଯିବାର ଐକାନ୍ତିକତା ହିଁ ସଫଳତାର ମାର୍ଗକୁ ପରିଷ୍କାର କରିଦିଏ । ବର୍ତ୍ତମାନ ପୁରସ୍କାର ପ୍ରତିଯୋଗିତା ପାଇଁ ପୁରସ୍କାର ଦିଆଚାଲିଛି । କୌଣସି ପୁରସ୍କାର ପାଇଁ ଲେଖକକୁ ପ୍ରଲୁବ୍ଧ ନ କରୁ ଏହା ହିଁ ଜଗତର ନାଥ ଜଗନ୍ନାଥଙ୍କର ନିକଟରେ ଏକାନ୍ତ କାମନା ।

***- ଲେଖାଲେଖି ବ୍ୟତୀତ ଆପଣ ଅନ୍ୟ କୌଣସିଥିରେ ମନୋନିବେଶ କରିଛନ୍ତି ?***

ମୋର ଉଲ୍ଲାସ ପାଇଁ ମୁଁ ଲେଖେ ଏବଂ ବଂଶୀ ବଜେଇବା ପାଇଁ ଖୁବ୍ ଭଲପାଏ ।

***- ପରିବର୍ତ୍ତିତ ସାମାଜିକ ବ୍ୟବସ୍ଥାରେ ଆପଣ ନିଜକୁ କିପରି ମନେକରୁଛନ୍ତି ?***

ମୁଁ କୌଣସି 'ବାଦ' ଭିତରେ ନିଜକୁ ସୀମିତ ରଖେ ନାହିଁ । ଗଣତନ୍ତ୍ର ବା ରାଜତନ୍ତ୍ର ଏସବୁ ଉପରେ ମୋର ଆସ୍ଥା ନାହିଁ । ଏ ସହରରେ ଅନେକ ନାଗରିକ ମୋର ବନ୍ଧୁ । ମାତ୍ର ମତେ ଯାହା ବ୍ୟଥିତ କରୁଛି, ତାହା ହେଲା ଆମ ତରୁଣ ପିଢ଼ିଙ୍କର ଆମର ପରମ୍ପରା ଓ ସଂସ୍କୃତି ପ୍ରତି ବୀତସ୍ପୃହ ଭାବ । ପରିବର୍ତ୍ତିତ ବ୍ୟବସ୍ଥାରେ ସଂସ୍କୃତି ଓ ଐତିହ୍ୟ ପ୍ରତି ଆମ ସମ୍ମାନ ଅତୁଟ ରଖିବା ଦିଗରେ ଉଦ୍ୟମ ହେବା ଆବଶ୍ୟକ ।

***- ତନ୍ତ୍ରରେ ଆପଣ ବିଶ୍ୱାସ କରନ୍ତି ?***

ନା, ତନ୍ତ୍ରକୁ ମୁଁ ବିଶ୍ୱାସ କରେ ନାହିଁ । ଆଧ୍ୟାତ୍ମିକତାରେ ମୋର ଗଭୀର ବିଶ୍ୱାସ । ଧର୍ମପୁସ୍ତକ ଅଧ୍ୟୟନ ହିଁ ମୋତେ ପର୍ଯ୍ୟାପ୍ତ ସାହସ ନିଷ୍ଠା ଓ ନୈତିକତା ଆଣିଦେଇଥାଏ । ପ୍ରାର୍ଥନା ଓ ଉପାସନା ମୋତେ ପ୍ରଚୁର ମାନସିକ ଶାନ୍ତି ଦିଏ ।

◆

# ଯେଉଁଠି ଜଙ୍ଗଲ ପାଲଟିଯାଏ କାହାଣୀ

*-କଥାକାର ରାଧାମୋହନଙ୍କ ସହ କେତୋଟି ମୁହୂର୍ତ୍ତର ଅନ୍ତରଙ୍ଗ ଆଳାପ-*

**ବଂଶୀର ସ୍ୱର ଓ ଆଶାକାର୍ଣ୍ଣ ଗନ୍ଧର ଆକାଶ ଭିତରେ ନିଜ ଛବି ଦେଖୁ ଦେଖୁ ଏକ ସୁନ୍ଦର ଦୁନିଆର ପରିକଳ୍ପନା କରୁଥିବା ଜଣେ ସୃଜନଶୀଳ ସ୍ରଷ୍ଟା ରାଧାମୋହନ ମହାପାତ୍ର । ସେ ବଂଶୀ ବଜାନ୍ତି ଯମୁନା କୂଳରେ ନୁହେଁ, ଘର ଅଗଣାରେ । କେବେ କେବେ ସେ ଫେରିଯାଆନ୍ତି ପରିଚିତ ଘଞ୍ଚ ଜଙ୍ଗଲକୁ । ଜଙ୍ଗଲର ଆକର୍ଷଣ ତାଙ୍କୁ ଟାଣିନିଏ ତା' କୋଳକୁ । ଜଙ୍ଗଲ ଭିତରେ କେତେ ନିରୀହ ଜୀବନର ମୁହଁ ନିରେଖିବା ବେଳେ ଭେଟ ହୁଏ ବାଘ ଓ ଅନ୍ୟ ହିଂସ୍ର ଶ୍ୱାପଦମାନଙ୍କ ସହ । ସେମାନଙ୍କ ଗହଣରେ ଜଙ୍ଗଲ ହୋଇଯାଏ ଆହୁରି ଆପଣାର । ସ୍ନେହ ଓ ମମତାର ଆତ୍ମୀୟତା ଗଢ଼ି ଉଠେ ଜଙ୍ଗଲୀ ହିଂସ୍ର ଶ୍ୱାପଦଙ୍କ ସହ । ହାତରେ ଧରିଥିବା ବନ୍ଧୁକ ତଳେ ରଖିଦେଇ ସେ ଧରନ୍ତି କଲମ । କୁହୁକ ରାଇଜ ପରି ଜଙ୍ଗଲ ପାଲଟିଯାଏ କାଗଜର ବିସ୍ତୀର୍ଣ୍ଣ ବନାନୀଟିଏ ।**

ଜଙ୍ଗଲର ଅନୁଭୂତି ଓ ବଂଶୀସ୍ୱନର ଉତ୍ତାଳ ଲହରୀ ଆହୁରି ସାନ୍ଦ୍ର ହୋଇଯାଏ । ନିଜେ ଲେଖକ ପାଠକୀୟ-କାଠଗଡ଼ାରେ ଛିଡ଼ାହୋଇ ଜମାନବନ୍ଦୀ ଦେବା ବେଳେ । ସେ କହନ୍ତି ଯାହା ଲେଖୁଛି ସତ୍ୟ ଲେଖୁଛି । ସତ୍ୟ ବିନା ଅନ୍ୟ କିଛି ଲେଖୁନି । ଘଟଣାର ପ୍ରବାହମାନ ପ୍ରକ୍ରିୟା ଓ ପରିସ୍ଥିତିର ପରିବର୍ତ୍ତନରେ ପରମେଶ୍ୱର ମୋ ହାତରୁ ବନ୍ଧୁକ ଛଡ଼ାଇ ନେଇ କଲମ ଧରାଇ ଦେଇଛନ୍ତି ।

ଜଣେ ତନ୍ମୟ ସ୍ରଷ୍ଟାପ୍ରାଣର ଏହି ସ୍ୱୀକାରୋକ୍ତି ଗଭୀର ଆତ୍ମାନୁଭବର କଥା ବ୍ୟତୀତ ଅନ୍ୟ କିଛି ନୁହଁ । ଉପନ୍ୟାସର ସୁରମ୍ୟ ଅଟ୍ଟାଳିକା ଭିତରୁ ବାହାରି ଆସି ଔପନ୍ୟାସିକ ରାଧାମୋହନ ଆଉ ଏକ ଭୂମିକାରେ ଛିଡ଼ା ହୁଅନ୍ତି ତାଙ୍କର ଜଙ୍ଗଲର ଜମାନବନ୍ଦୀ ଉପନ୍ୟାସରେ ।

**ଯେଉଁଠି ନିଜେ ନାୟକ:** କାହାଣୀର କ୍ୟାନଭାସ ଉପରେ ନିଜେ ଲେଖକ ଠିଆ ହୁଅନ୍ତି ନାୟକ ହୋଇ । ସମାଜର ବିଭିନ୍ନ ଚରିତ୍ର ମଣିଷପଣିଆ ମାପକାଠିକୁ ବୃତ୍ତ କରି ତାର ଚତୁର୍ଦ୍ଦିଗରେ ଘୂରିବୁଲନ୍ତି । ଗୋଟିଏ ଦିଗରେ ଆଧୁନିକ ଜୀବନର ହିପୋକ୍ରାସୀ, କୃତ୍ରିମତା ଓ ମୂଲ୍ୟବୋଧହୀନତା, ଅନ୍ୟଦିଗରେ ଜଙ୍ଗଲ ଓ ପଲ୍ଲୀ ପରିବେଶ ସରଳ ଜୀବନ ଲେଖନୀୟ ଦୃଷ୍ଟିରେ ଦୁଇଟି ସମାନ୍ତରାଳ ସରଳରେଖା ଆଙ୍କିଦିଏ । ଲେଖକ ଫେରିଯାଆନ୍ତି ଗଳ୍ପ ଭିତରକୁ । କହି ବସନ୍ତି ଅନୁଭୂତିର ରୋମାଞ୍ଚପୂର୍ଣ୍ଣ ଗଳ୍ପ । କେହି ନାୟିକା ନଥାନ୍ତି କି ପ୍ରେମ ପାଇଁ ଦୋଦୁଲ୍ୟମାନ ଜୀବନ ନ ଥାଏ । ଥାଏ ଜୀବନ ପାଇଁ ଆଉ କିଛି ମାନବିକ ଆବେଦନ । ଏକ ମଣିଷଖିଆ ବାଘକୁ ମାରି ଦିଆଯିବା ପରେ ତାର ଛୁଆକୁ ଆଣି କିପରି ଲାଳନ ପାଳନ କରିବାକୁ ପଡ଼ିଲା ଏବଂ ଆଦିବାସୀମାନଙ୍କ ସରଳତା କେମିତି ତାଙ୍କ ହୃଦୟାନୁଭବକୁ ପୁଷ୍ଟ କଲା ତାହା ସେ କହିବସିନ୍ତି କାହାଣୀ ଭିତରେ ।

**ପରିବର୍ତ୍ତନର ପୃଷ୍ଠଭୂମି:** ଜଙ୍ଗଲର ଜମାନବନ୍ଦୀ ଏକ ଭିନ୍ନ ସ୍ୱାଦର ଫିଚର ଧର୍ମୀ ଉପନ୍ୟାସ । ଓଡ଼ିଆ ଉପନ୍ୟାସ ପରମ୍ପରାରେ ଏହା ଏକ ନବୀନ ପରୀକ୍ଷା ନିରୀକ୍ଷା । କଥାକାର ରାଧାମୋହନ ଏହାର ପରବର୍ତ୍ତୀ ପର୍ଯ୍ୟାୟ କାହାଣୀକୁ ରୂପଦିଅନ୍ତି ତାଙ୍କ 'ବ୍ୟାଘ୍ର ନିନାଦ' ଉପନ୍ୟାସରେ ଯାହା କି ଏବେ ଯନ୍ତ୍ରରୂଢ଼ ଅବସ୍ଥାରେ ଅଛି । ଧରିତ୍ରୀ ସହ ଏକ ମନୋଜ୍ଞ ସାକ୍ଷାତ୍‌କାରରେ ସେ କହନ୍ତି: ସମୟ ସୁଅରେ ପୃଥିବୀରେ ସବୁ ପରିବର୍ତ୍ତନ ଆସୁଛି । ଲୋକମାନଙ୍କର ରୁଚି ମଧ୍ୟ ଅନ୍ୟ ଦିଗକୁ ଧାଉଁଚି । ଘରେ ଘରେ ଆଜି ଅଳସ ଅପରାହ୍ନ ବିତିଯାଉଛି ଭିଡିଓ, ଟିଭି ଆଗରେ । ଇଲେକ୍ଟ୍ରୋନିକ୍‌ସ ମନୋରଞ୍ଜନ ମାଧ୍ୟମ ସହିତ ଗଳ୍ପ, ଉପନ୍ୟାସ ଓ ଆଜିର ସାହିତ୍ୟକୁ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ପଡୁଛି । ଏ ଦୃଷ୍ଟିରୁ ଲେଖକୀୟ ପରିବର୍ତ୍ତନ ଆଜି ଅତି ଆବଶ୍ୟକ ହୋଇପଡ଼ିଛି ।

**ଜୀବନ ପ୍ରତି ଦୃଷ୍ଟି:** ଜଣେ ସଚେତନଶୀଳ ଶିଳ୍ପୀ ଭାବରେ ରାଧାମୋହନ ପାଶ୍ଚାତ୍ୟ ସାହିତ୍ୟ ଦର୍ଶନରୁ ନିରାପଦ ଦୂରତ୍ୱରେ ରହି ନିଜ ମାଟି, ପାଣି ଓ ପବନର କଥାକୁ ନିଜସ୍ୱ ଶୈଳୀରେ ରୂପ ଦିଅନ୍ତି ତା' ନୁହେଁ, ଜୀବନ ପ୍ରତି ଏକ ତିର୍ଯ୍ୟକ୍ ଓ ସମ୍ବେଦନଶୀଳ ଦୃଷ୍ଟି ତାଙ୍କ ସୃଷ୍ଟିକୁ ଅନୁପମ ସୌନ୍ଦର୍ଯ୍ୟରେ ଉଦ୍‌ଭାସିତ କରେ । ତାଙ୍କ ଉପନ୍ୟାସ ଆଧୁନିକ ମଣିଷ ଓ ସମାଜ ପ୍ରତି ଏକ ଚେତାବନୀ କହିଲେ ଭୁଲ ହେବନାହିଁ । ତେଲଲୁଣ ସଂସାରରେ ଜୀବନ ଦୁଃଖ ନୈରାଶ୍ୟ ଯନ୍ତ୍ରଣାକୁ ଅତିକ୍ରମ କରି ସେ ସନ୍ଧାନ କରନ୍ତି ଯାତ୍ରା ପଥରେ ଆଲୋକର ଉତ୍ସ । ଏକ ପ୍ରଶ୍ନର ଉତ୍ତର ଦେଇ ସେ କହନ୍ତି: ମୁଁ ଆଶାରେ ରହେ । ନୈରାଶ ପଛରେ କେବେ ମୁଣ୍ଡ ନୁଆଁଏ ନାହିଁ । ଯଦିଓ ଜୀବନରେ ପରାଜୟକୁ ସ୍ୱୀକାର କରାଯାଇପାରେ, କିନ୍ତୁ ତାହା ସାମୟିକ । ସାହିତ୍ୟକମାନେ ଜୀବନର ନେଗେଟିଭ ଦିଗକୁ ନେଇ ସାହିତ୍ୟ ସୃଷ୍ଟି କରୁଥିବାରୁ ତାହା ସମାଜ ଉପରେ ଖରାପ ପ୍ରଭାବ ପକାଉଛି । ପ୍ରତ୍ୟେକ ସୃଷ୍ଟି କିଛି ରଚନାତ୍ମକ ବାର୍ତ୍ତାର ସ୍ୱାକ୍ଷର ବହନ କରିବା ଉଚିତ୍ । ମୋର ଉପନ୍ୟାସରେ କାହାଣୀର ପରିଣତି ଏଥିପାଇଁ ମିଳନାତ୍ମକ ।

**ସକରାତ୍ମକ ସମନ୍ୱୟ:** ୬ଟି ସଫଳ ଉପନ୍ୟାସର ସ୍ରଷ୍ଟା ରାଧାମୋହନଙ୍କ ପୂର୍ବୋକ୍ତ ଉପନ୍ୟାସଗୁଡ଼ିକ ସାମାଜିକ ପୃଷ୍ଠଭୂମି ଉପରେ ହିଁ ରଚିତ । ପ୍ରେମଭିତ୍ତିକ କାହାଣୀ, ଆଦର୍ଶଗତ ଦ୍ୱନ୍ଦ୍ୱ, ବିରୋଧାଭାସ ମଧ୍ୟରେ ଏକ ସୁତୀବ୍ର ଆବେଦନ ସୃଷ୍ଟି କରେ । ଉପନ୍ୟାସ ପ୍ରଥମ ପ୍ରଭାତ, ସତ୍ୟମ୍ ଏବ, ୯ରେ ଶ୍ରାବଣ ୯ରେ ଫଗୁଣ ଓ ତମସା ତୀର୍ଥର ସାମଜିକ ପୃଷ୍ଠଭୂମିରେ ଏକ ପ୍ରଖର ସଂସ୍କାରବାଦୀ ଆଭିମୁଖ୍ୟ ସୂଚିତ ହୁଏ । ୬୦ ଦଶକ ପରବର୍ତ୍ତୀ ଉପନ୍ୟାସ ସାହିତ୍ୟ ମନୋରଞ୍ଜନଧର୍ମୀ ସ୍ତରରୁ ଓହରିଯାଇ ବୌଦ୍ଧିକ ରୂପ ଦେବାବେଳେ ଏହି ଉପନ୍ୟାସଗୁଡ଼ିକ ଉଭୟଧାରାର ଏକ ଏକ କଳାତ୍ମକ ସମନ୍ୱୟ ଆଣେ ।

**ଯେଉଁଠି ଜୀବନ ଏକ କାହାଣୀ:** ଏକ ପ୍ରଶ୍ନର ଉତ୍ତର ଦେଇ ତାଙ୍କ ଲେଖନୀୟ ଜୀବନର ଅନୁଭୂତି କରିବାବେଳେ ସେ କହିବସନ୍ତି ତାଙ୍କ ଜୀବନ ଉପନ୍ୟାସର କାହାଣୀ । ଷାଠିଏ ଦଶକରେ ଓଡିଶା ଫାଇନାନ୍ସରେ ସର୍ଭିସରେ ଯୋଗଦେବା ପରଠାରୁ ଓଡ଼ିଶାର ଜଙ୍ଗଲ ଅଧୁଷିତ ଇଲାକାରେ ତାଙ୍କ ଚାକିରୀ ଜୀବନ ଅତିବାହିତ ହୋଇଛି । କୋରାପୁଟରୁ ଆରମ୍ଭ କରି ଆମ୍ଭପାଣି କଳାହାଣ୍ଡି, ରାୟଗଡ଼ା, ସମ୍ବଲପୁର, ଝାରସୁଗଡ଼ା, ହୁମା, ବାରପାହାଡ଼, ରେଢ଼ାଖୋଲ ପ୍ରଭୃତି ଇଲାକାରେ ସେ ଥିବାବେଳେ ଜଙ୍ଗଲ ଭିତରେ ହିଁ ସେ ବହୁ ସମୟ ବିତାଇଥିଲେ । ଏହି ସବୁ ସ୍ଥାନ କଳାପାଣି ସଦୃଶ ହେଲେ ମଧ୍ୟ ତାଙ୍କ ପାଇଁ ଆଣିଦେଇଥିଲା ଅପୂର୍ବ ପୁଲକ ଓ ଉପହାର ଉତ୍ସ । ୧୯୮୧ରେ ପ୍ରଥମ ପ୍ରଭାତ ଉପନ୍ୟାସ ଲେଖିବା ସେ ଆରମ୍ଭ କରିଥିଲେ ଏବଂ ତାଙ୍କର ୧୯୮୨ରେ ପ୍ରକାଶ ପାଇଥିଲା । ସହକର୍ମୀ ବୃନ୍ଦାବନ ପାଣିଗ୍ରାହୀ ଯେକି ଜଣେ କଳାକାର, ତାଙ୍କର ଲେଖାଲେଖି ପାଇଁ ଖୁବ୍ ଉତ୍ସାହିତ କରିଥିଲେ ।

**କାହାଣୀର ଉତ୍ପାଦନ:** ୧୯୮୧ରୁ ନିରବଚ୍ଛିନ୍ନ ସାହିତ୍ୟ ସାଧନା କଥା କହିଲାବେଳେ ସେ କହନ୍ତି, ମୋ ଚାରିପାଖରେ ଘଟୁଥିବାର ଘଟଣାର ହିଁ ମୁଁ ଚିତ୍ର ଓ କାହାଣୀ ବାଛିନିଏ । ମୋ ଦୃଷ୍ଟିରେ ସବୁବେଳେ ଘଟଣାର ହିଁ ବିସ୍ଫୋରଣ ଘଟୁଛି । ଏହି ଘଟଣାକୁ ତିର୍ଯ୍ୟକ୍ ଓ ଅନ୍ତର୍ଭେଦୀ ଦୃଷ୍ଟିରେ ଅନୁଶୀଳନ କରିବସିଲେ ଅନେକ ଗଳ୍ପ ସୃଷ୍ଟି ହୋଇଯାଏ । ତାହାକୁ ମୁଁ ନିଜସ୍ୱ ଦୃଷ୍ଟିଭଙ୍ଗୀରେ ଗଳ୍ପ ବା ଉପନ୍ୟାସର ରୂପଦିଏ । ଶତାଧିକ ଗଳ୍ପ ଲେଖିଥିଲେ ବି ଉପନ୍ୟାସକୁ ମୁଁ ସର୍ବାଧିକ ଗୁରୁତ୍ୱ ଦିଏ । ମୋ ମତରେ ଗଳ୍ପଟିଏ ଟର୍ଚ୍ଚ ଲାଇଟ୍ ହେଲେ ଉପନ୍ୟାସଟିଏ ପେଟ୍ରୋମାକ୍ସ ଲାଇଟ୍ ଯାହାର ଆଲୋକ ଚତୁର୍ଦ୍ଦିଗ ବିଚ୍ଛୁରିତ ହୁଏ । ଉପନ୍ୟାସର କନ୍‌ଭାଷ ବହୁ ପିରିବ୍ୟାପ୍ତ । ଉପନ୍ୟାସ ଅଟ୍ଟାଳିକାଟିଏ ହେଲେ ଗଳ୍ପ ହୁଏତ ତା'ର ଏକ କୋଠରୀ ।

**ସାଗର, ରୂପେଲି ଓ ଅନ୍ୟମାନେ:** ତାଙ୍କ ପ୍ରଥମ ଉପନ୍ୟାସ 'ପ୍ରଥମ ପ୍ରଭାତ' ଏବେ ଚଳଚ୍ଚିତ୍ର ରୂପାୟନ ଅପେକ୍ଷାରେ । ନିର୍ଦ୍ଦେଶକ ସାଧୁ ମେହେର ଏହାକୁ ଚଳଚ୍ଚିତ୍ର ରୂପ ଦେଉଛନ୍ତି । ଏଥିରେ ଔପନ୍ୟାସିକ ସାଗର ଓ ରୂପାଲି ଚରିତ୍ର ମଧରେ ବାସ୍ତବତା ଓ ଆଦର୍ଶକୁ ସାମ୍ନା କରୁ କରୁ ଜୀବନରେ ଦେଖାଯାଉଥିବା ବିପର୍ଯ୍ୟୟ ଓ ତ୍ୟାଗକୁ ନେଇ ଏକ ମଧୁର ଉପହାର ଟାଣିଛନ୍ତି । ନାୟିକାପ୍ରଧାନ ଏହି ଉପନ୍ୟାସଟି ଫ୍ଲାସ୍‌ବ୍ୟାକ୍ ଶୈଳୀରେ ହିଁ ରଚିତ । ସେହିପରି 'ସତ୍ୟମ୍ ଏବ' ଉପନ୍ୟାସ ୧୯୮୪ରେ

ପ୍ରକାଶ ପାଇଛି ଯେଉଁଥିରେ ଦୁଇ ବନ୍ଧୁ ଚକ୍ରପାଣି ଓ ସର୍ବେଶ୍ୱର ଓ କୁକୁର ସେରା ଚରିତ୍ର ପାଠକମାନଙ୍କର ସ୍ମୃତିରେ ଏକ ଚିହ୍ନ ଆଙ୍କି ଦେଇପାରନ୍ତି । ସତ୍ୟ ଆଗରେ ମିଛ ଯେ ତିଷ୍ଠି ପାରେନାହିଁ, ଏହା ଏହି କାହାଣୀର ସାରମର୍ମ । 'ଝରେ ଶ୍ରାବଣ ଝୁରେ ଫଗୁଣ' ପଲ୍ଲୀ ଓ ସହରୀ ଜୀବନ ଭିତରେ ଏକ କଳାତ୍ମକ ଦ୍ୱନ୍ଦ୍ୱ ସୃଷ୍ଟି କରିଛି । କଲିକତା ସହରକୁ କାମ ପାଇଁ ଯାଉଥିବା ଓଡ଼ିଆର ଦୁର୍ଦ୍ଦଶା ଓ ତାର ଭାଗ୍ୟର ବିପର୍ଯ୍ୟୟକୁ ନେଇ କାହାଣୀ ଗତିଶୀଳ ହୋଇଥିବାବେଳେ ହିନ୍ଦୁ ନାରୀର ମୌଳିକ ଆଦର୍ଶ କାହାଣୀର କେନ୍ଦ୍ରବିନ୍ଦୁ ହୋଇଛି । ଦାମ୍ପତ୍ୟର ଜୀବନରେ ଯେଉଁ ଝଡ଼ ଉଠେ ତାହା ଆଗରେ ଆଧୁନିକ ମଣିଷ ସାମାନ୍ୟ ଭୁଲ ପାଇଁ କିଭଳି ବିପର୍ଯ୍ୟସ୍ତ ହୋଇଯାଏ ତାହା ଚମତ୍କାର ଭାବେ ଉପସ୍ଥାପନା କରିଛନ୍ତି । 'ତମସା ତୀର୍ଥ' ଉପନ୍ୟାସରେ, ଦେହରେ ଅସତୀ ମନରେ ସତୀ ଚରିତ୍ରଟିକୁ ପୁଣି ଲେଖକ ଫେରାଇ ଆଣନ୍ତି ସମାଜର ମୁଖ୍ୟ ସ୍ରୋତକୁ ।

**ସୁନ୍ଦର ପୃଥିବୀର ଛବି:** କାହଣୀରେ ସ୍ୱର୍ଗୀୟ ପ୍ରେମର ଅବତାରଣା, ସଂସ୍କାରବାଦୀ ଆଭିମୁଖ୍ୟ ଓ ମନସ୍ତାତ୍ତ୍ୱିକ ଅନୁଶୀଳନ ରାଧାମୋହନଙ୍କ ଉପନ୍ୟାସକୁ ଭିନ୍ନ ସ୍ୱାଦର ସୃଷ୍ଟି ଭାବରେ ଉପସ୍ଥାପିତ କରେ । ଏକ ପ୍ରଶ୍ନର ଉତ୍ତର ଦେଇ ସେ କହନ୍ତି- ଜୀବନ ଜୀବିକାର ସମସ୍ୟା ବା ଅର୍ଥ ଆଗରେ ମଣିଷର ମହାନତା କେବେ ଲୁଚିଯାଏ ନାହିଁ । ମଣିଷ ଭିତରେ ଥିବା ମାନବତା, ସଂଭ୍ରମତାକୁ ମୁଁ ଖୋଜେ । ସମାଜ ସବୁ ମୁହୂର୍ତ୍ତରେ କଳୁଷିତ ହେଉଛି । ତଥାପି କିଛି ସତ୍ ଚରିତ୍ର ଅଛନ୍ତି, ଯେଉଁଥି ପାଇଁ ସମାଜରେ ଭାରସାମ୍ୟ ରହିପାରୁଛି । ପାଠକଙ୍କ ପାଖରେ ଏହି ଭଲ ଦିଗଟିକୁ ଉନ୍ମୋଚିତ କରିବା ମୋର ଲେଖକୀୟ ଅଭିମୁଖ୍ୟ । ଏଥିରେ କିଛି ଦୋଷ ଦୁର୍ବଳତା ହୁଏତ ଥାଏପାରେ, କିନ୍ତୁ ସମାଜରୁ ଛଳନା ଓ କୃତ୍ରିମତାକୁ ଅତିକ୍ରମ କରି ଏକ ସୁନ୍ଦର ପୃଥିବୀର ପରିକଳ୍ପନା ମୋ ସୃଷ୍ଟିର ଅନ୍ୟ ଏକ ଦିଗ ।

**ବଂଶୀର କୁହୁକ:** ଓଡ଼ିଶା ଉପାନ୍ତ ଅଞ୍ଚଳରେ ବହୁ ବର୍ଷ ଧରି କାର୍ଯ୍ୟ କରିବା ପରେ ଏହି ଶିଳ୍ପୀ ଭୁବନେଶ୍ୱରରେ ବିକ୍ରୀକର ଅଫିସର ଭାବରେ ଅବସ୍ଥାପିତ । ପିଲାଦିନରୁ (ପାଞ୍ଚ ବର୍ଷ ବୟସରୁ) ଯେଉଁ ବଂଶୀ ବଜାଇବା ସେ ଆରମ୍ଭ କରିଥିଲେ ସେହି ସୃଷ୍ଟି ଏବେ ବି ତାଙ୍କୁ ଉଦ୍‌ବେଳିତ କରେ । ଏଥିପାଇଁ ତାଙ୍କ ଘର ଅଗଣାରୁ କେବେକେବେ ବଂଶୀର ସ୍ୱର ପଥଚାରୀଙ୍କ ଶ୍ରୁତି ଆକର୍ଷଣ କରିଥାଏ । ପତ୍ନୀ ପ୍ରତିଭାଙ୍କ ସାହଚର୍ଯ୍ୟ ତାଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇଥିବା ବେଳେ ବଂଶୀର ସ୍ୱର ତରଙ୍ଗ ଏହି ତନ୍ମୟ କଥାକାରଙ୍କ ସୃଷ୍ଟି ସାଧନା ପାଇଁ ଅପୂର୍ବ ଖୋରକି ଯୋଗାଏ । ଚିତ୍ର ଦର୍ପଣ ପୁରସ୍କାର (୧୯୮୨), ରାଷ୍ଟ୍ରଦୂତ ପୁରସ୍କାର (୧୯୮୪), ବାର୍ତ୍ତାଉର୍ମି ପୁରସ୍କାର (୧୯୮୫), ପ୍ରତିଶ୍ରୁତି ପୁରସ୍କାର (୧୯୮୬), ବାଙ୍କୀ ସଂସ୍କୃତିକ ସମାଜ (୧୯୮୭) ଓ ଚଳାପଥ ପୁରସ୍କାର (୧୯୯୨) ଇତ୍ୟାଦି ପାଇଛନ୍ତି । ସେ ମଧ୍ୟ ହେଉଛନ୍ତି 'ଆବର୍ତ୍ତ' ପତ୍ରିକାର ମୁଖ୍ୟ ଉପଦେଷ୍ଟା ।

**ବ୍ୟକ୍ତିଗତ :**

ପ୍ରକାଶିତ ପୁସ୍ତକ ପାଇଁ ମୁଁ କୌଣସି ପ୍ରକାଶକଙ୍କର ଦ୍ୱାରସ୍ଥ ହୋଇନାହିଁ ।
"ଝରେ ଶ୍ରାବଣ, ଝୁରେ ଫଗୁଣ" ସର୍ବାଧିକ ବିକ୍ରୟ ହୋଇଥିବା ଉପନ୍ୟାସ ।
ସମାଜରେ ଯାହା ଘଟୁଛି, ତାହାକୁ ହିଁ ମୁଁ ରସଚର୍ଯାର ଆଧାର ଭାବେ ଗ୍ରହଣ କରେ । ସେଠି ନଗ୍ନତାର ସ୍ଥାନ ନାହିଁ।
ଘରେ ବସି ନିଜ କଥା, ସାହିତ୍ୟ କଥା ଚିନ୍ତା କରିବାକୁ ମୁଁ ଭଲପାଏ ।
ପ୍ରାଚୀନ ସାହିତ୍ୟ ପ୍ରତି ମୋର ଅଧିକ ଆକର୍ଷଣ ରହିଛି ।

*ଉପସ୍ଥାପନା - ଉପେନ୍ଦ୍ର ମହଲା*



# ଶିକାରୀ ଜୀବନରୁ ସାହିତ୍ୟର ସ୍ଫୁରଣ

**ହିଂସ୍ର ଜୀବଜନ୍ତୁଙ୍କ ପକ୍କା ଶିକାରୀରୁ, ବନ୍ୟଜନ୍ତୁଙ୍କୁ ନେଇ କଲମ ଧରିବା, ବଇଁଶୀ ବାଦକରୁ ସାହିତ୍ୟର ଅମୃତ ସନ୍ଧାନୀ ହେବା ଏକ ବିସ୍ମୟ । ଅସୀମ ଆଡ଼କୁ ଦୃଷ୍ଟି ରଖି, ନୂତନ ସୃଷ୍ଟି ପ୍ରକ୍ରିୟା ୧୯୮୧ ମସିହାରୁ ଅର୍ଥାତ୍ ଦୀର୍ଘ ୨୬ ବର୍ଷ ଧରି ଜଙ୍ଗଲ ଭିତରେ ବନ୍ୟଜନ୍ତୁଙ୍କ ହିଂସ୍ରତା ମଧ୍ୟରୁ ଓଁକାର ନାଦ ଶୁଣି, ସାଧନା ଓ ସିଦ୍ଧି ବଳରେ ଓଡ଼ିଶାର ବହୁ ଚର୍ଚ୍ଚିତ କଥାକାର ଓ ଔପନ୍ୟାସିକ ଭାବେ ପରିଚିତ ରାଧାମୋହନ ମହାପାତ୍ରଙ୍କର । ରାଜ୍ୟ ଅର୍ଥସେବା ଅଫିସର ଭାବେ ଓଡ଼ିଶା ବନ ଉନ୍ନୟନ ନିଗମରେ କାର୍ଯ୍ୟରତ ଶ୍ରୀ ମହାପାତ୍ର 'ପ୍ରଥମ ପ୍ରଭାତ', 'ସତ୍ୟମ୍ ଏବ', 'ଝରେ ଶ୍ରାବଣ ଝୁରେ ଫଗୁଣ', 'ତମସାତୀର୍ଥ', 'ଜଙ୍ଗଲର ଜମାନ୍‌ବନ୍ଦୀ', 'ଜୀଅନ୍ତା ଶବ', 'ବ୍ୟାଘ୍ରନିନାଦ' ଓ 'ଅରଣ୍ୟ ଅତିଥି' ଭଳି ସଫଳ ଉପନ୍ୟାସର ସ୍ରଷ୍ଟା । ୧୯୮୧ରୁ ଏ ଯାବତ୍ ରାଷ୍ଟ୍ରଦୂତ ପୁରସ୍କାର, ଚଲାପଥ ସମ୍ମାନ ଇତ୍ୟାଦି ଅନେକ ଅନେକ ସମ୍ମାନରେ ସମ୍ମାନିତ ଔପନ୍ୟାସିକ ଶ୍ରୀ ମହାପାତ୍ରଙ୍କୁ ସାକ୍ଷାତ କରିଛନ୍ତି, ବ୍ୟଙ୍ଗ କଥାକାର ବଦ୍ରି ମିଶ୍ର ଓ ପ୍ରଶାନ୍ତ ମହାପାତ୍ର ।**

***ପ୍ରଶ୍ନ: କର୍ମମୟ ଚାକିରୀ ଜୀବନ ଭିତରେ ଉପନ୍ୟାସ ଲେଖିବାକୁ ସମୟ ହୁଏ କେତେବେଳେ ?***

***ଉତ୍ତର:*** ମନ ଥିଲେ ଉପାୟ ଆପେ ଆପେ ଆସେ । ପ୍ରଥମେ ମାନସିକତା ଦରକାର । ସୃଷ୍ଟି କରିବାର ଆଗ୍ରହ ସମୟ ହିଁ ସୃଷ୍ଟି କରେ । ଚାକିରୀ ଜୀବନ ପେଟ ପାଇଁ, ଆତ୍ମା ପାଇଁ ନୁହେଁ । ଏଣୁ କର୍ମବ୍ୟସ୍ତ ଚାକିରୀ ଜୀବନ, ଜଞ୍ଜାଳଯୁକ୍ତ ସଂସାର ଭିତରେ, ବେଳେ ବେଳେ ମନ ଭିତରେ ସମର୍ପଣ ଭାବ ସୃଷ୍ଟି କରେ । କଲମ ହାତକୁ ଆସିଯାଏ । ବିନ୍ଦୁ ବିନ୍ଦୁ କାଳିରୁ ଲେଖି ହୋଇଯାଏ କେତେ ଭାବନା....

***ପ୍ରଶ୍ନ: ଜଙ୍ଗଲର ବନ୍ଧୁକଧାରୀ ଶିକାରୀରୁ ପଶୁପକ୍ଷୀଙ୍କୁ ଭଲ ପାଇବା ସମ୍ଭବ ହେଲା କିପରି ?***

***ଉତ୍ତର:*** ଧ୍ୱଂସରୁ ସୃଷ୍ଟି ହେବା ଭଳି, ମୃତ୍ୟୁରେ ଜୀବନ ସଞ୍ଚାରିତ ହେଲା ପରି, ବନ୍ଧୁକ ଛାଡ଼ି କଲମ ଧରିବା, ମୋ ପାଇଁ ଏକ ଦୈବୀ ନିର୍ଦ୍ଦେଶ । ଏମିତି ଦିନେ ବନ୍ଧୁକ ଧରି ଶିକାର କରିବା ଆନନ୍ଦ

ଭିତରେ ଏକ କ୍ଷତାକ୍ତ ପଶୁର ଆର୍ତ୍ତ ଶରୀରରୁ ସେମାନଙ୍କୁ ଭଲ ପାଇ ବସିଲି, ହୃଦୟରେ ଅନୁକମ୍ପା ଜାତ ହେଲା (ବ୍ୟାଘ୍ର ନିନାଦ) ।

***ପ୍ରଶ୍ନ- ବନ୍ଧୁକର ଗୁଳି ଓ କଲମର କାଳି ଭିତରେ ଆନନ୍ଦ ଅଧିକ କେଉଁଠି ?***

**ଉତ୍ତର-** ସମୀ ଅପେକ୍ଷା ମସୀ ସର୍ବଦା ବଳିୟାନ ଓ ଗରୀୟାନ । ବନ୍ଧୁକର ବିସ୍ଫୋରଣ ଧ୍ୱଂସକରେ, କିନ୍ତୁ କାଳିର ବିସ୍ଫୋରଣ ସୃଷ୍ଟିକରେ, ସମାଜର କଲ୍ୟାଣ କରେ ।

***ପ୍ରଶ୍ନ- ଆପଣ କ'ଣ କେବଳ ଉପନ୍ୟାସ ଲେଖନ୍ତି ?***

**ଉତ୍ତର-** ନା, ମୋର ଅନେକ ଗଳ୍ପ ପ୍ରକାଶିତ ହୋଇଛି । ତନ୍ମଧ୍ୟରୁ ଆହତ ସଂଳାପ, ଅଭିଯୋଗ, ଉଗ୍ରତାରା ଇତ୍ୟାଦି । ତେବେ ମୋର ଗଳ୍ପ 'ଶିବ ଶିକାର' ଟେଲିଫିଲ୍ମ ହୋଇଛି ।

***ପ୍ରଶ୍ନ- ଜଙ୍ଗଲଭିତ୍ତିକ ଉପନ୍ୟାସ ମଧ୍ୟରେ 'ଭୂମିତୃଷା' ଉପନ୍ୟାସ ପ୍ରତି ମନୋନିବେଶ କଲେ କାହିଁକି ?***

**ଉତ୍ତର-** 'ଭୂମିତୃଷା' ଉପନ୍ୟାସରେ ମୁଁ ମୋ ଜଙ୍ଗଲ ବା ପଶୁପକ୍ଷୀଙ୍କୁ ଛାଡ଼ିନି । ତେବେ ଏ ଉପନ୍ୟାସ ଲେଖା ମୋର ଏକ ସ୍ୱାଭିମାନ । ଜାତି ପ୍ରତି ସ୍ୱାଭିମାନ କେଜାଣି କାହିଁକି ହୃଦୟ ଭିତରେ ଡେଙ୍ଗୁରା ପିଟିଲା । ବନ୍ୟ ସଂପଦ, ପ୍ରାକୃତିକ ସଂପଦ, ସାହିତ୍ୟ ସମୃଦ୍ଧି ଥାଇ ଏ ଓଡ଼ିଆ ଜାତିର ଅଧୁନା ଅଧଃପତନ ମନକୁ ମ୍ରିୟମାଣ କଲା । ଅନ୍ୟ ଜାତି, ଅନ୍ୟଦେଶ ଠାରୁ ମୋ ଜାତି, ମୋ ଭାଷା, ମୋ ଦେଶ, ମୋ ସଂସ୍କୃତି ଯେ ଉନ୍ନତ ଓ ସମୃଦ୍ଧ ! ଏହି ଜାତିପ୍ରାଣକୁ ନେଇ, ପ୍ରାଚ୍ୟ ପାଶ୍ଚାତ୍ୟର କିମ୍ବଦନ୍ତୀକୁ ନେଇ ମୋ ଭୂମିତୃଷା । ଏହା ଏକ ଗବେଷଣା, ପ୍ରବନ୍ଧ ମଧ୍ୟ ।

***ପ୍ରଶ୍ନ- ଜୀବନର ଶ୍ରେଷ୍ଠ ପ୍ରଶ୍ନ କ'ଣ ?***

**ଉତ୍ତର-** ନିଜକୁ ଚିହ୍ନିବା ଓ ଅନ୍ୟକୁ ଚିହ୍ନାଇବା ।

***ପ୍ରଶ୍ନ- ଅନୁଭବ ଓ ସାହିତ୍ୟ କେଉଁ ଭାବରେ ସମ୍ପର୍କିତ ?***

**ଉତ୍ତର-** ବିନା ଅନୁଭବରେ ସାହିତ୍ୟ ସୃଷ୍ଟି ଅସମ୍ଭବ । ଇନ୍ଦ୍ରିୟ ଅନୁଭୂତିକୁ ମସ୍ତିଷ୍କ ଯନ୍ତ୍ରରେ କଥାମାଳ ଭାବେ ପୁରାଇ, ସୁନ୍ଦର ଉତ୍ପାଦ ପ୍ରକାଶ କରାଯାଇପାରେ । ଲେଖାପାଇଁ ତୃତୀୟ ନୟନର ଆବଶ୍ୟକତା ରହିଛି ।



# 'ବାରୁଦର ବିସ୍ଫୋରଣ ଅପେକ୍ଷା ଲେଖନୀର ଆହ୍ୱାନ ମୋତେ ଅଧିକ ଆକର୍ଷିତ କରିଛି'

ବଂଧୁକ ଛାଡି କଲମ ଧରିଛି
– ରାଧାମୋହନ

*ଓଡ଼ିଶାରେ ଲୋକପ୍ରିୟ ଉପନ୍ୟାସକାରମାନଙ୍କର ମଧ୍ୟରେ ଶ୍ରୀ ରାଧାମୋହନ ମହାପାତ୍ର ଅନ୍ୟତମ । ଜନପ୍ରିୟ ଓଡ଼ିଆ ଉପନ୍ୟାସର ପରିମାଣ କମି ଆସୁଥିବା ବେଳେ, ଏହାର ଗତିରୋଧ କରିବା ପାଇଁ ଶ୍ରୀ ମହାପାତ୍ର ଅଂଟା ଭିଡି ଆଗେଇ ଆସିଛନ୍ତି । ଫଳରେ ଅଶୀ ଦଶକ ପରଠାରୁ ପ୍ରାୟ ପ୍ରତିବର୍ଷ ଗୋଟିଏ ଲେଖାଏଁ ଉପନ୍ୟାସ ସେ ପ୍ରକାଶ କରି ଆସିଛନ୍ତି । ଜଂଗଲର ଜମାନବଂଦୀ, ବ୍ୟାଘ୍ର ନିନାଦ, ଅରଣ୍ୟ ଅତିଥି, ରକ୍ତର ରଂଗ ପ୍ରଭୃତି ତାଙ୍କର କେତୋଟି ସଫଳ ଉପନ୍ୟାସ ବନ୍ୟ ଜନ୍ତୁ ଓ ବନ୍ୟ-ଜୀବନ ଉପରେ ଆଧାରିତ । ୧୯୯୮ରେ ପ୍ରକାଶିତ ତାଙ୍କର 'ଭୂମିତୃଷା' ଜାତି ସ୍ୱାଭିମାନର ଏକ ଦସ୍ତାବିଜ ବହନ କରେ । ସଂପ୍ରତି ସେ ଯୋଗାଣ ନିଗମର ଅର୍ଥ ପରାମର୍ଶଦାତା ଭାବେ ଅବସ୍ଥାପିତ । ତାଙ୍କ ସହିତ ଆମର ଅନ୍ତ ଆଳାପ...*

**ପ୍ରଶ୍ନ:** ନିକଟରେ କେଉଁ ବହି ପଢିଛନ୍ତି ? ସେ ବହି ଆପଣଙ୍କୁ କେମିତି ଲାଗିଲା ?

**ଉତ୍ତର:** ଶ୍ରୀ ଅରବିନ୍ଦ ବେହେରାଙ୍କ ଦ୍ୱାରା ଅନୁବାଦିତ 'ମୁଁ ରେଗୋବେର୍ଟା ମେଞ୍ଚୁ' । ଗୁଆଟେମାଲାର ଜଣେ ଶୋଷିତ, ନିଷ୍ପେସିତ, ଅଶିକ୍ଷିତା ମୂଲିଆଣୀ ରେଗୋବେର୍ଟା ମେଂଚୁର ସଂଘର୍ଷପୂର୍ଣ୍ଣ ରୋମାଞ୍ଚ ତଥା ମର୍ମସ୍ପର୍ଶୀ କାହାଣୀ, ଯେକି ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ କରି ତେତିଶ ବର୍ଷ ବୟସରେ ୧୯୯୨ ମସିହାରେ ନୋବେଲ୍ ଶାନ୍ତି ପୁରସ୍କାରରେ ଭୂଷିତା । ବହିଟି ଖୁବ୍ ଭଲ ଲାଗିଲା ।

**ପ୍ରଶ୍ନ:** ସାହିତ୍ୟ ବ୍ୟତୀତ ଆଉ କେଉଁ ବିଷୟରେ ବହି ପଢିବାକୁ ଭଲ ପାଆନ୍ତି ?

**ଉତ୍ତର:** ଯେଉଁ ବହି ମଣିଷଟିଏ ହୋଇ ବଢିବାକୁ ପ୍ରେରଣା ଦିଏ ।

**ପ୍ରଶ୍ନ:** ଭାରତର ପରମାଣୁ ପରୀକ୍ଷଣ ସଂପର୍କରେ ଆପଣଙ୍କ ମତାମତ କ'ଣ ?

**ଉତ୍ତର:** ନିଜକୁ ଭାରତୀୟ ବୋଲି ଗର୍ବ କରିବାର ଏକ ଉପାଦାନ ମିଳିଲା ।

**ପ୍ରଶ୍ନ:** ମହିଳା ସଂରକ୍ଷଣ ବିଲ୍ ଉପରେ ଆପଣଙ୍କ ଦୃଷ୍ଟିଭଙ୍ଗୀ କିଭଳି ?

**ଉତ୍ତର:** ଭିକ୍ଷା ମାଗି ପେଟ ପୋଷ ନାହିଁ । ଅଧିକାର ସାବ୍ୟସ୍ତ କର ।

**ପ୍ରଶ୍ନ:** ଆଣଣ ନିଜେ ଘର ପାଇଁ ବଜାର ସଉଦା କରନ୍ତି କି ?

**ଉତ୍ତର:** କ୍ୱଚିତ୍ ।

**ପ୍ରଶ୍ନ:** ବର୍ତ୍ତମାନ ପୃଥିବୀର କେଉଁ ବିଖ୍ୟାତ ମହିଳା/ପୁରୁଷଙ୍କ ସହ ଗୋଟାଏ ଦିନ ବିତାଇବାକୁ ଚାହିଁବେ ?

**ଉତ୍ତର:** ଡାକୁରାଣୀ ଫୁଲନ୍ ଦେବୀଙ୍କ ସହିତ । କାରଣ ସେ ଅତୀତରେ ଜଣେ ବଂଧୁକଧାରିଣୀ ଡାକୁଣୀ ଥିବାବେଳେ, ମୁଁ ବଂଧୁକଧାରୀ ଶିକାରୀ ଥିଲି । ଉଭୟଙ୍କ ଜୀବନଧାରାରେ ପରିବର୍ତ୍ତନ ଘଟିଛି ।

**ପ୍ରଶ୍ନ:** ଆପଣ ନିଜ ପାଇଁ କିଭଳି ମୃତ୍ୟୁ ଲୋଡ଼ିବେ ?

**ଉତ୍ତର:** ଯେ କୌଣସି ମୃତ୍ୟୁକୁ ଆନନ୍ଦରେ ଆଲିଂଗନ କରିବି ଯଦି ତା ପୂର୍ବରୁ ଅଭିଳଷିତ ଆକାଂକ୍ଷା ହାସଲ କରିଥିବି– ଲେଖିବି ଲେଖିବି ନ ପଡ଼ିବି ଥକି ମୁଦିବା ଆଗରୁ ଆଖି ।

**ପ୍ରଶ୍ନ:** କିଛି ଲୋକ ମନେ କରନ୍ତି ଯେ ଓଡ଼ିଶାରେ ଜନ୍ମ ହେବା ପାପ । ଆପଣଙ୍କୁ ସେଭଳି ମନେ ହୁଏ କି ?

**ଉତ୍ତର:** ଆଦୌ ନୁହେଁ । ମା' କଣ କେବେ ଘୃଣାର ପାତ୍ର ହୋଇପାରେ ? ମୋ ପୁଣ୍ୟ ମାତୃଭୂମିରେ ବାରମ୍ବାର ଜନ୍ମହେବା ପାଇଁ ଇଚ୍ଛା କରେ ମୁଁ ।

**ପ୍ରଶ୍ନ:** ଆପଣ ଭାଗ୍ୟରେ ବିଶ୍ୱାସ କରନ୍ତି ?

**ଉତ୍ତର:** ଯଥୋଚିତ ଉଦ୍ୟମ ଓ ଶ୍ରମ କଲା ପରେ ଯଦି ଫଳ ମିଳେ ନାହିଁ ଭାଗ୍ୟ ବୋଲି ଭାବି ନେବାକୁ ହେବ ।

**ପ୍ରଶ୍ନ:** ଲେଖାଟିଏ ସାରିବାକୁ କେତେ ଦିନ ଲାଗେ(ପରିକଳ୍ପନାରୁ ପୂର୍ଣ୍ଣାଙ୍ଗ ରୂପ ଦେବା ଯାଏ) ?

**ଉତ୍ତର:** ସେମିତି କିଛି ନିର୍ଦ୍ଦିଷ୍ଟ ସମୟ ନାହିଁ । ଛୋଟ ଗପଟିଏ ମାସାଧିକ ସମୟ ନେଇଯାଏ, ହୁଏତ ଉପନ୍ୟାସଟିଏ ମାସକ ମଧ୍ୟରେ ଲେଖାଯାଇପାରେ । 'ରକ୍ତର ରଂଗ' ଉପନ୍ୟାସ ମାତ୍ର ୨୩ ଦିନ ଭିତରେ ସଂପୂର୍ଣ୍ଣ ହୋଇଥିଲା । କିନ୍ତୁ ଉପନ୍ୟାସ 'ଜୀଅନ୍ତା ଶବ' ଶେଷ କରିବାକୁ ୧୭ବର୍ଷ ବିତି ଯାଇଥିଲେ ମଧ୍ୟ ଏଯାବତ୍ ଅସଂପୂର୍ଣ୍ଣ ରହିଛି । କେବେ ମୁଂଡି ମାରିବି କହିପାରୁନାହିଁ ।

**ପ୍ରଶ୍ନ:** ଲେଖକ ହୋଇନଥିଲେ କ'ଣ ହୋଇଥା'ନ୍ତେ ?

**ଉତ୍ତର:** ଏ ପର୍ଯ୍ୟନ୍ତ ବୋଧହୁଏ ବଂଧୁକ ଧରି ବଣରେ ବୁଲୁଥାନ୍ତି ପାଗଳ ନିଷାଦଟିଏ ଭଳି । ବାରୁଦର ବିସ୍ଫୋରଣ ଅପେକ୍ଷା ଲେଖନୀର ଆହ୍ୱାନ ମୋତେ ଅଧିକ ଆକର୍ଷିତ କରିଛି । ଏଣୁ ବଂଧୁକ ଛାଡ଼ି କଲମ ଧରିଛି ହାତରେ ।

**ପ୍ରଶ୍ନ:** ଆପଣଙ୍କ ଆଭିମୁଖ୍ୟ ସମ୍ବନ୍ଧରେ କହନ୍ତୁ ?

**ଉତ୍ତର:** ମଣିଷ ମଣିଷ ମଧ୍ୟରେ ସଦ୍‌ଭାବ ଓ ଭାଇଚାରା ତଥା ହିଂସ୍ରତା-ବର୍ଜନ ଲେଖନୀ ମଧ୍ୟମରେ ଚେତନା ସୃଷ୍ଟି କରିବା ।



# ମୋ ଜୀବନ ମୋ ଷ୍ଟାଇଲ

*କେତେବେଳେ ମୁରଲୀର ମତାଣିଆ ସ୍ୱର ତ ଆଉ*
*କେତେବେଳେ କଥା ପାଇଁ ଶବ୍ଦ ଗଢ଼ିବାର ବେଳ ।*

***ରାଧାମୋହନ ମହାପାତ୍ର ଆମ ସମୟର ଜଣେ ସଙ୍କଳ୍ପବଦ୍ଧ ଔପନ୍ୟାସିକ । ନିଜ ଚାରି ପାଖର ପୃଥିବୀକୁ ନେଇ ସଫଳ ଭାବେ ଦୀର୍ଘ କାହାଣୀ ତିଆରି କରିପାରୁଥିବା ଶ୍ରୀଯୁକ୍ତ ମହାପାତ୍ର ନିଜେ ଲେଖିଛନ୍ତି ନିଜ ଷ୍ଟାଇଲ୍ ସଂପର୍କରେ....***

## ନିଜ ଭିତରେ ବୁଡ଼ି ରହି ଜିଇଁବା ହିଁ ମୋ ଜୀବନ ଶୈଳୀ

ଜଣେ କିଛି ଲେଖିଦେଲେ ଯେ ସେ ଲେଖକ ହୋଇଯାଏ, ମୁଁ ବିଶ୍ୱାସ କରେ ନାହିଁ । ଜଣେ ସୃଜନଶୀଳ ବା ସଚ୍ଚା ଲେଖକର କିଛି ନିଆରାପଣ ଥାଏ ଦଦ୍ଧାରା ସେ ଅନ୍ୟମାନଙ୍କଠୁଁ ଭିନ୍ନ ହୋଇଯାଏ ବା ହୋଇଯିବା ଉଚିତ୍ । କିଛି ସ୍ୱତନ୍ତତା ନଥିଲେ ସେ ତ ସେଇ ସାଧାରଣଙ୍କ ଭିତରେ ଜୀବଟିଏ ମାତ୍ର । ଏଇ ଭିନ୍ନତା ତାକୁ ଅଲଗା କରିଦିଏ । ଏଇ ଅଲଗାପଣର ସଂଜ୍ଞା ଖୋଜି ଖୋଜି ମୁଁ ଆଜି ଆସି ପହଞ୍ଚିଛି ଏଠି । କେତେବାଟ ବା ମୁଁ ଗତି କରିଛି ? ମାଇଲିଏ, ଦୁଇମାଇଲ, ତିନି... ଯାଇ ଯାଇ ମାତ୍ର ଦଶ ମାଇଲ ଯାତ୍ରା । ଦୀର୍ଘ ଆଦୌ ନୁହେଁ । ଅର୍ଦ୍ଧ ଶତାବ୍ଦୀ କାଳ ଜୀବନ ଅତିକ୍ରମ କରି ସାରିଥିଲେ ମଧ୍ୟ କେବଳ ୧୦ଖଣ୍ଡ ଉପନ୍ୟାସ ଓ ଶହେରୁ କିଛି ଅଧିକ ଗଳ୍ପ ଯଥେଷ୍ଟ ବୋଲି କହିହେବ ନାହିଁ । ଆହୁରି ଅନେକ ପଥ ଅତିକ୍ରମ କରିବାକୁ ଅଛି । ମନରେ ଦୃଢ଼ତା । ଲେଖିବି ଲେଖିବି ନ ପଡିବି ଥକିର ଅଭଙ୍ଗା ସଂକଳ୍ପ, ହିମାଳୟ ଜୟ କରିବାର ଏକାକୀ ପଦଯାତ୍ରା, ଦୁର୍ବାର ଅଭିଯାନ, ଅଭିଳାଷ । ସମୟ ସରି ସରି ଆସୁଛି । ପ୍ରତି କ୍ଷଣରେ ବୟସ ଯୋଗ ହେଉଛି, ଆୟୁଷ କ୍ଷୟ ହେଉଛି । ଏନ୍ତୁଡିଶାଳରୁ ଅନ୍ତ୍ୟେଷ୍ଟିକ୍ରିୟା ପର୍ଯ୍ୟନ୍ତ ବ୍ୟବଧାନ ହେଉଛି ଜୀବନ । ଜୀବନ ଧାଇଁ ଚାଲିଛି ତା ଘଣ୍ଟା ଚାଲିବା ନ୍ୟାୟରେ । କେତେ ସଫଳତା ଅର୍ଜିଛି ? ଆତ୍ମ ସମୀକ୍ଷା, ଆତ୍ମ ମୂଲ୍ୟାୟନ କରିବାକୁ ସମୟ ନାହିଁ । ନିଜ ସୃଷ୍ଟିରେ ନିମଫଳ ନିମ ଗଛକୁ ମିଠା ନ୍ୟାୟରେ ମି ବିଭୋର, ବିହ୍ୱଳ । କେମିତି ସବୁ ବର୍ଷ ପରି ଏବର୍ଷ ଉପନ୍ୟାସଟିଏ ଲେଖା ସରିବ, ତା ପରେ ସଂଶୋଧନ, ଯେତେ ପଢ଼ିବ ନୂଆ ଭାବନା, ନୂଆ ଚିନ୍ତା, ନୂତନ ଶବ୍ଦ ଉପସ୍ଥିତ ହୋଇଯିବେ । ନାଃ, ମନକୁ ପାଉନି, କାଟ, ପୁଣି ଯୋଡ଼ । ଆଉ ଏକ ଭିନ୍ନ ଶବ୍ଦ, ଆବଶ୍ୟକ ସ୍ଥଳେ ସୁନ୍ଦର ବିଶେଷଣଟିଏ କିମ୍ବା ମନଲାଖି ଉପମାଟିଏ । ଏ ଯୋଗ ବିୟୋଗର ଧନ୍ଦାଳ ଭିତରେ ପାଣ୍ଡୁଲିପି ବଢ଼ି ବଢ଼ି ଚାଲିଥିବ, ପୃଷ୍ଠା ମୋଟେଇ ଚାଲିଥିବ । ଶେଷ କେଉଁଠି ? ଭଟ୍ଟା ପଡ଼ିବ ସେତିକିବେଳେ ଯେତେବେଳେ ପ୍ରିଣ୍ଟ ବାହାରିଯିବ । ଏବେ ଆଉ କିଛି କରିବାର ନାହିଁ, ଯଦି କରିବ

ପୁନଃ ମୁଦ୍ରଣ ବେଳେ । ବର୍ତ୍ତମାନ ଶିଶୁଟିଏ ଜନ୍ମ ହେବାର ଲଗ୍ନ । ତା'ର ଉନ୍ମୋଚନ ଉତ୍ସବରେ ମନ ଲାଗିଯିବ । ଯେ ମୋଟାମୋଟି ମୋ ବାର୍ଷିକ ଜୀବନର ଚିତ୍ରାଙ୍କନ, ପ୍ରତିଟି ମୁହୂର୍ତ୍ତରେ ମୁଁ ଅଣନିଃଶ୍ୱାସୀ ହୋଇ ଧାଇଁଛି । ଶୟନେ, ସପନେ, ଜାଗରଣେ ସେଇ ପାଣ୍ଡୁଲିପି ଚିନ୍ତା, ତାର ମୁଦ୍ରଣ, ପ୍ରକାଶନ ଓ ଉନ୍ମୋଚନ ଚିନ୍ତା । ସେଇ କଥାରେ କାଳ କଟିଯାଏ, ପାଗଳ ଭଳି କିଛି ଜାଣିହୁଏନି । ହଁ, ସ୍ୱାରସ୍ୱତଙ୍କ ନିଶା ବି ଗୋଟେ ପାଗଳାମି । ବାଗ୍‌ବିଳାସ ଗୋଟେ ନିଆରା ଗୁଣ (ଅବିଗୁଣ ହୋଇପାରେ ଆଜିକାଲି ସାହିତ୍ୟର ନାଁ ଧରୁନଥିବା ଶିକ୍ଷିତ ଅଶିକ୍ଷିତ ବ୍ୟକ୍ତିଙ୍କ ଦୃଷ୍ଟିକୋଣରେ) ।

ସକାଳୁ ଉଠି ଖବର କାଗଜ ପଢ଼ାହୁଏ ଚା' କପେ ସହିତ । ଟିକିଏ ବେଳ ପାଇଲେ ସାମ୍‌ନା ବଗିଚା ଆଡ଼କୁ ଚାଲିଯାଏ । ଲନ୍‌ରୁ ଅଦରକାରୀ ଘାସ, ମୁଥା, ଅନାବନା ଅନାବଶ୍ୟକ ଗୁଳ୍ମ ଉପାଡ଼େ, ଫୁଲ ଗଛରୁ ଶୁଖିଲା ପତ୍ର ଝାଡିବାରେ କିଛି ସମୟ ବିତେ । ମନ କିନ୍ତୁ ଥାଏ ଉପନ୍ୟାସ କିମ୍ବା ଗଳ୍ପର ଚରିତ୍ରମାନଙ୍କ ମଧ୍ୟରେ । ଚରିତ୍ରର ଚେହେରା କିପରି ହେବା ଉଚିତ, ତା ମୁହଁର ଶବ୍ଦ ଓ ସଂଳାପ, ଉଚିତ ଶବ୍ଦଟି କ'ଣ ହେବା କଥା, ତାର ବିକଳ୍ପ ଶବ୍ଦ କେଉଁମାନେ ଇତ୍ୟାଦି ଇତ୍ୟାଦିରେ ମନ ମାତିଥାଏ । ଏମିତି ବେଳେବେଳେ ଧରା ଦେଉନଥିବା ଶବ୍ଦଟା ହଠାତ୍ ଆସି ସହଯୋଗ କରିବସେ, ଅଧାଗଢ଼ା ଗପଟା ଅପ୍ରତ୍ୟାସିତ ଭାବେ ପୂର୍ଣ୍ଣାଙ୍ଗପ୍ରାପ୍ତ ହୋଇଯାଏ । ବର୍ତ୍ତମାନ କଥା ଘରକୁ ବାସପୋଯୋଗୀ କରିବାର ବେଳ, ରଙ୍ଗମରା, ଚୂନଧଉଳା ଆଦି ଅନେକ ଆନୁଷଙ୍ଗିକ କାମ, ବା ସ୍ୱୟଂ ସଂପୂର୍ଣ୍ଣ କୋଠରୀଟିଏ ବା ଅଟ୍ଟାଳିକାଟିଏ ଛିଡା ହେବ । ସେଇତ ମୋର ମାନସ ଭବନ । ତାକୁ ଗଢ଼ିବାରେ ମୁଁ ବ୍ୟସ୍ତ । ନିଜ ପୋଷାକ, ପରିଚ୍ଛଦ, ଖାଦ୍ୟ ପ୍ରତି ଏପରିକି ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ନାହିଁ । ଆଉ ସାଂସାରିକ ଘର ଚିନ୍ତା । ସେ ଚିନ୍ତା ପତ୍ନୀ ପ୍ରତିଭାଙ୍କର । ନିଃସଙ୍କୋଚରେ ସବୁ ଯୋଗାଇ ଦିଅନ୍ତି, ଏପରିକି ପୁରୁଣା ପ୍ୟାଣ୍ଟ, ସାର୍ଟ, ଜୋତା ନେଇ ବଜାରରୁ ସେଇ ମାପରେ କିଣି ଆଣନ୍ତି । ଲେଖା ସରିଲା, ପ୍ରକଶ କାର୍ଯ୍ୟ ତାଙ୍କର । ତାଙ୍କର ଅକୁଣ୍ଠ ସହଯୋଗରୁ ହିଁ ମୋ ଲେଖନୀ ଗତିଶୀଳ । ସେଇଥିପାଇଁ 'ଝରେ ଶ୍ରାବଣ ଝୁରେ ଫଗୁଣ' ଉପନ୍ୟାସଟି ତାଙ୍କୁ ହିଁ ସମର୍ପିତ । ତାଙ୍କରି ଦାନରେ ସୃଷ୍ଟ ତାଙ୍କୁ ହିଁ ଅର୍ପିତ ଠିକ୍ ଭୋଗ ଠାକୁରଙ୍କୁ ଅର୍ପଣ କଲା ନ୍ୟାୟରେ । ତାଙ୍କରି ନାମାନୁସାରେ ବାସଗୃହର ନାମକରଣ ହୋଇଛି- 'ପ୍ରତିଭାନୀ' । ଆଉ ଅଫିସ କାମରେ ? ତିଳେ ମାତ୍ର ଢ଼ିଲା କରେ ନାହିଁ । ଟିକିଏ ଫାଙ୍କ ମିଳିଲେ ସାହିତ୍ୟ ଭୂତ ସବାର ହୋଇବସେ । ସୃଷ୍ଟି ପାଇଁ ସବାର । ଯେଉଁଠି ଲେଖନୀ ଅବାଧ୍ୟ ହୁଏ, ହାତରେ ଧରେ ବଂଶୀ, ମୋ ପିଲାଦିନର ମିତ । ମିତ୍ରତାର ମୂଲ ପାଇଛି ଅନେକ। ଏପରିକି ଯେତେବେଳେ ଜଣେ ଉଦାମ ବନଚାରୀ ଭାବେ ଘୋର ଜଙ୍ଗଲରେ ବନ୍ଧୁକ ଧରି ବୁଲୁଥିଲି ପାଗଳ ପରିକା, ଦିନ ଓ ରାତିର ତଫାତ୍ ବୁଝୁ ନଥାଏ, ପାଖେ ପାଖେ ଥାନ୍ତି ଶିକାରୀ ବନ୍ଧୁ ତଥା ତବଲା ବାଦକ ପ୍ରେମ୍ ତିୱାରୀ, ବାଉଁଶର ଏହି ବଂଶୀଟି ନେବାକୁ ଭୁଲି ନଥାଏ ସାଥିରେ । ଦୁର୍ଭେଦ୍ୟ ଆଦିବାସୀ ଗାଁରେ ଡେରା ଜମେ । ସାନ୍ଧ୍ୟ ସମୟଟି ବଂଶୀ ଓ ମାଠିଆ (ତବଲାର ବିକଳ୍ପ)ର ସଂଗତରେ

ବିତିଯାଏ ରାତି ଅନ୍ଧାର ଗାଢ଼ ହେବା ପର୍ଯ୍ୟନ୍ତ । ତା'ପରେ ମୁଣ୍ଡରେ ହେଡ୍ ଲାଇଟ୍ ଲଗାଇ ପାଦରେ ବନ ଭ୍ରମଣ ଓ ବନ୍ୟଜନ୍ତୁ ଅନ୍ୱେଷଣ- ଏକ ଦୁର୍ଦ୍ଦାନ୍ତ ଜୀବନ ।

କିନ୍ତୁ କ୍ରମଶଃ ସମୟର ପରିବର୍ତ୍ତନ ଆସେ । ଗତିପଥର ପରିବର୍ତ୍ତନ । ପରମେଶ୍ୱର ହାତରୁ ବନ୍ଧୁକ ଛଡ଼ାଇ ନିଅନ୍ତି, ଧରାଇ ଦିଅନ୍ତି କଲମ । ଜଙ୍ଗଲକୁ ଦୂରେଇ ଦେଇ ଆଗରେ ଥୋଇ ଦିଅନ୍ତି କାଗଜର ବିସ୍ତୀର୍ଣ୍ଣ ବନାନୀ; ସେଥିରେ ପରୀକ୍ଷା-ନିରୀକ୍ଷା କରିବା ପାଇଁ ଯୋଗାଇ ଦିଅନ୍ତି ଲେଖନୀର ଶବ୍ଦଗୋଳା । ଜାଣେନି କେତେଦୂର ମୁଁ ମୋ ପରୀକ୍ଷାଗାରରେ ସଫଳ । ସଫଳତାର ଆଶା ରଖିନି, ବିଫଳତାର ମାପ କଲିନି । ନିଜ ଭିତରେ ସୀମାବଦ୍ଧ (ଜଙ୍ଗଲର ଜାମନବନ୍ଦୀର ମୁଖବନ୍ଧ ଦେହରାଉଛି) ।

କେତେବେଳେ କୌଣସି ଦୟାର୍ଦ୍ର ସୁଧୀ ପାଠକଠୁଁ ପତ୍ରଟିଏ ଆସିଲେ ଶ୍ରଦ୍ଧାର ସହିତ ପଢ଼େ, ଉତ୍ତର ଦିଏ ଖୁବ୍ ଆନ୍ତରିକତାର ସହିତ । ବାସ୍, ନିଜ ଭିତରେ ବୁଡ଼ି ରହି ଜୀଇଁବା ମୋ ଜୀବନଶୈଳୀ, ମୋ ଚରିତ୍ର ମୋ ପାଇଁ ସ୍ୱତନ୍ତ୍ର । ଲେଖେ ନିଜ କଥା, ନିଜ ଭାବନାରେ ପୁଟ ଦିଏ, ନିଜ ଦୃଷ୍ଟିକୋଣକୁ ଯଥାସମ୍ଭବ ଲମ୍ବେଇନିଏ କାଳି ଓ କାଗଜର ସହଯୋଗରେ । ମୋ ବିଚାରପଣ କା' ଉପରେ ଲଦିଦିଏ ନାହିଁ- ନିଜ ଜଙ୍ଗଲରେ ଏକା ଏକା ପଦଯାତ୍ରୀ । କେତେବେଳେ ମୁରଲୀର ମତାଣିଆ ସୁର ତ ଆଉ କେତେବେଳେ କଥା ପାଇଁ ଶବ୍ଦ ଗଢ଼ିବାର ବେଳ ।

◆



ରାଧାମୋହନ ମହାପାତ୍ର ନିଜ ଭୁବନେଶ୍ୱରସ୍ଥ ବୃନ୍ଦେଶ୍ୱରୀ କଲୋନୀଠାରେ ଥିବା ତାଙ୍କ ବାସଭବନରେ ନିଜର ସୃଜନ କ୍ରିୟାରେ ନିମଗ୍ନ ଥିବାବେଳେ ।

# ଜଙ୍ଗଲର କଥାକାର

*ଓଡ଼ିଆ କଥା ସାହିତ୍ୟରେ ରାଧାମୋହନ ମହାପାତ୍ରଙ୍କର ରହିଛି ଏହି ଭିନ୍ନ ପରିଚୟ । ତାଙ୍କ ସୃଷ୍ଟ ଅଧିକାଂଶ ଉପନ୍ୟାସର ଉପଜୀବ୍ୟ ଜଙ୍ଗଲ ଓ ଜଙ୍ଗଲୀ ଜାନୁଆର । ନିଜ କର୍ମମୟ ଜୀବନର ଏକ ପ୍ରମୁଖ ଅଂଶ ଜଙ୍ଗଲୀ ଅଞ୍ଚଳରେ ବିତାଇଥିବା ଶ୍ରୀ ମହାପାତ୍ର ଖୁବ୍ ଅନ୍ତରଙ୍ଗ ଭାବେ ପରଖିଛନ୍ତି ଜଙ୍ଗଲକୁ, ନିରେଖି ଦେଖିଛନ୍ତି ତାର ବାସିନ୍ଦାଙ୍କୁ; ଯାହା ନିଚ୍ଛକ ଭାବେ ଆଙ୍କିହୋଇ ଯାଇଛି ତାଙ୍କ ଲେଖାରେ । ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ଏଇ କଥାକାରଙ୍କ ନିଜକଥା ସ୍ମୃତିଛବିରେ......*

ମୋର ଜନ୍ମ ବାଙ୍କୀରେ । ବାପା ସ୍ୱର୍ଗତ ବାଞ୍ଛାନିଧି ମହାପାତ୍ର ଥିଲେ ଉଚ୍ଚ ଜମିଦାର ରାୟବାହାଦୂର ପରିବାରର ଦାୟାଦ । ତେଣୁ ଆଖପାଖ କେଇଖଣ୍ଡ ଗାଁରେ ତାଙ୍କର ବେଶ୍ ଭଲ ସୁନାମ ଥିଲା । ମା' ସ୍ୱର୍ଗତା ରଞ୍ଜନା ମହାପାତ୍ର ଥିଲେ ଜଣେ ଗୃହଣୀ, ସମାଜସେବିକା କିନ୍ତୁ ସନ୍ତାନ ବତ୍ସଳା । ଆମମାନଙ୍କୁ ସେ ଖୁବ୍ ଆଦର କରୁଥିଲେ । ପିଲାବେଳର ସ୍ମୃତି କହିଲେ ସ୍କୁଲରେ ପଢ଼ିବା ପରଠାରୁ ମୋର ପ୍ରତ୍ୟେକ କଥା ଗୋଟି ଗୋଟି ହୋଇ ମନେଅଛି । ରାୟବାହାଦୁର ପରିବାରର ସଦସ୍ୟ ହୋଇଥିବାରୁ ବାପା ଚାହୁଁଥିଲେ ଆମେ ପିଲାମାନେ ଅନେକ ପାଠପଢ଼ିବୁ, ଉଚ୍ଚ ଶିକ୍ଷିତ ହେବୁ, ଆମମାନଙ୍କୁ ଯେମିତି ଅନ୍ୟମାନେ ସମ୍ମାନ ଦେବେ । ତେବେ ମୋର ଅନ୍ୟ ଦୁଇଭାଇ ଖୁବ୍ ଭଲ ପାଠ ପଢୁଥିଲେ ମଧ୍ୟ ମୋର ପାଠପଢ଼ା ପ୍ରତି ବିଶେଷ ଆଗ୍ରହ ନ ଥିଲା । ଗଣିତ ବିଷୟରେ ତ ମୁଁ ଥିଲି ଖୁବ୍ ଦୁର୍ବଳ । କିନ୍ତୁ ଅନ୍ୟାନ୍ୟ ବିଷୟରେ ମୋର ଭଲ ଦକ୍ଷତା ଥିଲା । ଇଂରାଜୀ, ସାହିତ୍ୟ, ଇତିହାସରେ ମୋତେ ଭଲ ନମ୍ବର ମିଳୁଥିଲା । କିନ୍ତୁ ମତେ ପାଠପଢ଼ିବା ଅପେକ୍ଷା ଘୂରି ବୁଲିବାରେ ଆନନ୍ଦ ମିଳୁଥିଲା । ଅନେକ ସମୟରେ ମୁଁ ମୋର କିଛି ସାଙ୍ଗମାନଙ୍କୁ ନେଇ ମହାନଦୀ କୂଳକୁ ଚାଲିଯାଉଥିଲି । ସେଠି ଥିଲା ବୁଦିବୁଦିକା ଜଙ୍ଗଲ । ବାଟୁଲିରେ ପକ୍ଷୀଶିକାର କରୁଥିଲି । ଲୁହାକଣ୍ଟାକୁ ବ୍ୟବହାର କରି ତିଆରି ହୋଇଥିବା ଧନୁତୀରରେ ବିଲୁଆ, କୋକିଶିଆଳି, ସାପ ଆଦିକୁ ମାରୁଥିଲି ।

## ନୂଆ ଜୀବନ... ନୂଆ ଅଧ୍ୟାୟ

ହାଇସ୍କୁଲ ପାଠପଢ଼ା ଶେଷ ପର୍ଯ୍ୟନ୍ତ ମୋର ପାଠପଢ଼ା ପ୍ରତି ଆଦୌ ଆଗ୍ରହ ନଥିଲା । ମାଟ୍ରିକ ପରୀକ୍ଷାରେ ସମସ୍ତେ ଆଶା କରୁଥିଲେ ମୁଁ ନିଶ୍ଚିତ ଫେଲ୍‌ହେବି । କିନ୍ତୁ ଭାଗ୍ୟକୁ ତୃତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲି । ତେଣୁ ଉଚିତ ମାର୍ଗ ଦେବା ପାଇଁ ଘରଲୋକେ ମତେ ପଠାଇଦେଲେ ବିଜେବି

କଲେଜରେ ପଢ଼ିବାକୁ । ଏଇଠି ହିଁ ଆରମ୍ଭ ହେଲା ମୋ ଜୀବନର ନୂଆମୋଡ । କିଶୋରର ଚପଳତା ଛାଡ଼ିଆସିଥିଲି ଗାଁରେ । ଏଠି ଏକ ଭିନ୍ନ ମାହୋଲ ...ସମ୍ପୂର୍ଣ୍ଣ ଅଲଗା ପରିବେଶ । ଗଳ୍ପ, କବିତା ଲେଖିବା ଆରମ୍ଭ କଲି... ପୁଣି ଇଂରାଜୀରେ । ତେବେ ଇଂରାଜୀରେ ଲେଖିବାର କାରଣ ହେଲା ଏହି ଭାଷା ଉପରେ ସ୍କୁଲ ବେଳରୁ ମୋର ଭଲ ଦକ୍ଷତା ଥିଲା । ଆଶ୍ଚର୍ଯ୍ୟର କଥା, ଏହି ସାମାଜିକ କଥାବସ୍ତୁ ଉପରେ ପର୍ଯ୍ୟବସିତ ମୋର ଗଳ୍ପ "In Memorium" କଲେଜରେ ଗଳ୍ପ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଦଖଲ କଲା । ଭାଷଣ ତଥା ଅନ୍ୟାନ୍ୟ ପ୍ରତିଯୋଗିତାରେ ମଧ୍ୟ ମତେ ସଫଳତା ମିଳିଲା । ଆଉ ଖୁବ୍ କମ୍‌ଦିନ ଭିତରେ ମତେ କଲେଜରେ ସ୍ୱତନ୍ତ୍ର ପରିଚିତି ମିଳିଗଲା । ଆଇ.ଏ. ଆଉ ବି.ଏ. ପାଠ୍ୟକ୍ରମକୁ କୃତିତ୍ୱର ସହ ସମାପ୍ତ କରିବା ପରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଶିକ୍ଷା ସମାପ୍ତ କଲି । ମୋର ପ୍ରିୟ ଗାଁ ବାଙ୍କୀ କଲେଜରେ ଅଧ୍ୟାପକ ଭାବେ ପ୍ରଥମେ ଅଧ୍ୟାପନା ଆରମ୍ଭ କଲି । ବଡ ଭାଇମାନେ ଚାହୁଁଥିଲେ ମୁଁ ପ୍ରଶାସନିକ ସେବାରେ ଯୋଗଦିଏ । ସେମାନଙ୍କ କଥାକୁ ସମ୍ମାନ ଜଣାଇ ପ୍ରଶାସନିକ ସେବା ପରୀକ୍ଷାରେ ବସିଲି । କିନ୍ତୁ ବିଧିର ବିଧାନ ବଡ଼ ବିଚିତ୍ର । କେନ୍ଦ୍ରୀୟ ପ୍ରଶାସନିକ ସେବା ନୁହେଁ, ରାଜ୍ୟ ଅର୍ଥସେବା ବିଭାଗରେ ମତେ ସୁଯୋଗ ମିଳିଲା। ଅଧ୍ୟାପନା ଚାକିରି ଛାଡିଲି । ପ୍ରଥମ ପୋଷ୍ଟିଂ କୋରାପୁଟ ସୁଙ୍କି ତନଖି ଫାଟକ ଓ ପରେ ପରେ କଳାହାଣ୍ଡି ସୀମାନ୍ତରରେ ଥିବା ଆମ୍ବପାଣି ଘାଟି ଗମନାଗମନର ଆପାତତଃ କୌଣସି ସୁବିଧା ନଥିବା ଏପରି ଏକ ଜାଗାରେ ପୋଷ୍ଟିଂ ପ୍ରଥମେ ପ୍ରଥମେ ଖୁବ୍ ଅସ୍ୱସ୍ତି ଲାଗିଲା । କିନ୍ତୁ ଧୀରେ ଧୀରେ ସେହି ଘଞ୍ଚ ଜଙ୍ଗଲ, ଜଙ୍ଗଲ ଭିତରେ ଯାଇଥିବା ଅଣ ଓସାରିଆ ରାସ୍ତା, ଉଚ୍ଚ ପାହାଡ଼, ପାଠପଢ଼ି ନଥିବା, ସଭ୍ୟତାକୁ ସ୍ପର୍ଶ କରି ନଥିବା ଜଙ୍ଗଲୀ ଆଦିବାସୀ, ହିଂସ୍ର ଜଙ୍ଗଲୀ ଜାନୁଆର କିନ୍ତୁ ମୋର ଖୁବ୍ ପରିଚିତ ଆତ୍ମୀୟ ପାଲଟିଗଲେ । ଯା ଭିତରେ ଆମ ଘରେ ଥିବା ବନ୍ଧୁକ ସାଥିରେ ନେଇଯାଇଥିଲି ପାଖକୁ । ସମୟ ମିଳିଲେ ବନ୍ଧୁକ କାନ୍ଧରେ ପକାଇ ଚାଲି ଯାଉଥିଲି ଘଞ୍ଚ ଜଙ୍ଗଲ ଭିତରକୁ । ପଶୁପକ୍ଷୀ ଶିକାର କରୁଥିଲି, ସେମାନଙ୍କ ଗତିବିଧି ନିରୀକ୍ଷଣ କରୁଥିଲି । ଆଚରଣକୁ ଅନୁଶୀଳନ କରୁଥିଲି । ଧିରେ ଧିରେ ସେମାନଙ୍କ ପ୍ରତି ମୋର ଖୁବ୍ ମୋହ ଜନ୍ମିଗଲା । ହିଂସ୍ର ଆଚରଣ ପରିବର୍ତ୍ତେ ସେମାନଙ୍କୁ ଭଲ ପାଇବସିଲି । ଆଉ ବିବାହ ପରେ ମୋର ପତ୍ନୀ ପ୍ରତିଭା ମଧ୍ୟ ମୋ ଭଳି ଅନୁରୂପ ଭାବେ ଭଲ ପାଇବସିଲେ ସେହି ଜଙ୍ଗଲୀ ଜାନୁଆରଙ୍କୁ, ଜଙ୍ଗଲୀ ମଣିଷଙ୍କୁ... ସେମାନଙ୍କ ସରଳ, ଅମାୟିକ ବ୍ୟବହାରକୁ ।

## *ଜଙ୍ଗଲୀ ଜାନୁଆରଙ୍କ ଭିତରେ ସ୍ୱର୍ଗୀୟ ଆତ୍ମୀୟତା*

ଆମ୍ବପାଣି ଘାଟିରେ ମୋର ପ୍ରଥମ ପୋଷ୍ଟିଂ ପରେ ଜଙ୍ଗଲ ପ୍ରତି ଆତ୍ମୀୟତା ଜନ୍ମିଗଲା । ତା' ପରେ ମୁଁ ଅନେକ ଆଭ୍ୟନ୍ତରୀଣ ଜିଲ୍ଲାରେ କାମ କରିଛି । ଜଙ୍ଗଲୀ ଜାନୁଆରଙ୍କ ସହିତ ଭାବ ଲଗେଇଛି । କିନ୍ତୁ ଆମ୍ବପାଣି ଘାଟିର ଅନୁଭୂତି ମୋ ପାଇଁ ଚିରସ୍ମରଣୀୟ । ସେହି ଘାଟିରେ ଥିବା ସମୟରେ ୨।୩ଟି ଘଟଣା

କହୁଛି । ଜଙ୍ଗଲରେ ତ ମୋର ବୁଲିବା ଏକ ସଉକ । ଅଚାନକ ଦିନେ ଜଣେ ଜଙ୍ଗଲୀ ଲୋକ ମତେ ଗୋଟିଏ ହରିଣଛୁଆ ଭେଟି ଦେଲା । ଛୁଆଟିର ମା'କୁ କୁଆଡେ ବାଘ ଖାଇଯାଇଥିଲା । ଖୁବ୍ ଯତ୍ନର ସହିତ ପାଳିଲି ଛୁଆଟିକୁ । ଗାଈ କ୍ଷୀର ଦେଲି । ମୋ ପାଖରେ ସିଏ ରାତିରେ ଶୁଏ । ସମୟ ଗଡ଼ିଲା । ଧୀରେ ଧୀରେ ଛୁଆଟି ବଡହେଲା । ତେଣୁ ତାକୁ ମୁଁ ଘରେ ବାନ୍ଧି ରଖିଲି ନାହିଁ । ଛାଡିଦେଲି ବୁଲିବାକୁ । ପ୍ରତିଦିନି ଜଙ୍ଗଲ ଭିତରେ ଚରିବୁଲି ସେ ପୁଣି ମୋ ପାଖକୁ ଫେରିଆସେ । ମୋ ମୁହଁରେ ମୁହଁ ଘଷେ, ବୋବାଏ, ଲାଙ୍ଗୁଡ଼ ହଲାଏ । ସେଠାକାର ଆଖପାଖର ପ୍ରାୟ ସବୁଲୋକେ ତାକୁ ଚିହ୍ନି ଯାଇଥିଲେ । ମୁଁ ଘରକୁ ବାହାହେବା ପାଇଁ ଚାଲିଆସିଲି କିଛିଦିନ । କିନ୍ତୁ ଫେରିଲା ବେଳକୁ ପୃଥିବୀଟା ଯେମିତି ମୋ ପାଇଁ ସତେ ଅବା ଓଲଟି ଯାଇଥିଲା । ମୋର ଅଧସ୍ତନ କର୍ମଚାରୀମାନେ କହିଲେ ହରିଣଟା ସବୁଦିନ ଭଳି ଯାଇଥିଲା ଯେ, ଦିନେ ଆଉ ସନ୍ଧ୍ୟାରେ ଫେରିଲାନି । ଖୁବ୍ ମନକଷ୍ଟ ହେଲା । ତାକୁ ଅନେକ ଖୋଜିଲି, ରାତିରେ ବି ଟର୍ଚ୍ଚଧରି ଖୋଜିଲି । ହେଲେ ସେଇ ମୋର ପ୍ରିୟ ପଶୁଟି ଯେମିତି ବାୟୁରେ ଅବା ମିଳେଇ ଯାଇଥିଲା । ଦିନେ ଏମିତି ଅନ୍ୟମନସ୍କ ଭାବେ ଜଙ୍ଗଲରେ ଖୋଜୁଖୋଜୁ ହରିଣ ବେକରେ ମୁଁ ବାନ୍ଧିଥିବା ଘୁଙ୍ଗୁରଟି ଏକ ବୁଦାରେ ଲଟକିଥିବା ଦେଖିବାକୁ ପାଇଲି । ଆଉ ସେଇଠୁ ନିଶ୍ଚିତ ହେଲି ଯେ ତାକୁ ବାଘ ଖାଇଯାଇଛି । ବାଘ ଖାଇଯାଇଛି କଥା ମନକୁ ଆସିବା ମାତ୍ରେ ଏକ ବାଘୁଣୀ ମୋ ମନକୁ ଆସିଲା । ପ୍ରତିଦିନ ମୁଁ ଲକ୍ଷ୍ୟକରେ ସନ୍ଧ୍ୟାରେ ପୂର୍ବରୁ ବାଘୁଣୀଟି ମୋ ବସାଘରର କିଛିଦୂର ଆଗରେ ଚାଲି ଚାଲି ଯାଏ । ଅନେକ କଷ୍ଟଲାଗିଲା ହରିଣର ମୃତ୍ୟୁରେ । ତଥାପି ମନକୁ ବୁଝେଇ ରହିଲି । କିନ୍ତୁ ଦିନେ ଏକ ଅଦ୍ଭୁତ ଘଟଣା ଘଟିଲା । ମୋର ଜଣେ ପରିଚିତ ଟ୍ରକ ଡ୍ରାଇଭର ରାତି ପ୍ରାୟ ୧୨ଟା ବେଳେ ଟ୍ରକ ନେଇ ଆସି ମୋ ବସା ପାଖରେ ପହଞ୍ଚିଲା । ସେଦିନ ତା' ମୁହଁରୁ ଜଣାପଡୁଥାଏ ସେ ଯେମିତି ଗୋଟିଏ ବଡ଼କାମ କରି ପକେଇଛି । ମତେ ଦେଖି ଖୁସିହୋଇ କହିଲା- 'ବାବୁଜୀ, ଆଜି ତାକୁ ଖତମ କରିଦେଲି । ସବୁଦିନ ଟ୍ରକ ନେଇ ଆସିଲା ବେଳେ ରାସ୍ତା ମଝିରେ ଥିବ । ଯେତେ ହର୍ଣ୍ଣମାରିଲେ ଉଠେନି । ଆଜି ସିଧା ତା ମୁଣ୍ଡ ଉପରେ ଗାଡ଼ି ଚଢ଼େଇ ନେଇ ଆସିଲି । ମୁଁ ଉତ୍ସୁକତାର ସହ ପଚାରିଲି, 'ଆରେ ତୁ କାହା କଥା କହୁଛୁ ?' 'ବାବୁ, ସେ ବାଘ କଥା । ସବୁଦିନ ଯିଏ ଏଇ ଆଖପାଖରେ ଏପଟ ସେପଟ ହୁଏ ।' ସେହି ଡ୍ରାଇଭରକୁ ଅନେକ ଗାଳିଦେଲି । ସେ ବାଘ କାହାର କ୍ଷତି କରେ ନାହିଁ । ତାକୁ କାହିଁକି ମାରିଲୁ ବୋଲି ତା' ଉପରେ ଗର୍ଜିଲି, ଡ୍ରାଇଭର ତା' ରାସ୍ତାରେ ଚାଲିଗଲା । ମୁ ଶୋଇବାର ଉପକ୍ରମ କରୁଛି । ହଠାତ୍ ମୋର ଘର ସାମ୍ନାରେ ଗୋଟିଏ ଜିପ୍ ବ୍ରେକ୍ କଷିଲା । ଜଣେ ବ୍ୟକ୍ତି ଓହ୍ଲାଇପଡ଼ି କହିଲେ, 'ଆଜ୍ଞା, ଏଠି କୋଉଠି ଗାଈକ୍ଷୀର ମିଳିବ ?' 'କ'ଣ ପାଇଁ' ବୋଲି ମୁଁ ପ୍ରଶ୍ନ କରିବାରୁ ସେ ବ୍ୟକ୍ତିଜଣକ କହିଲେ, 'ଆସୁ ଆସୁ ବାଟରୁ ଏହି ବାଘଛୁଆଟିକୁ ପାଇଲୁ । ତା ମା' ଉପରେ ଗାଡ଼ି ମାଡିଯାଇଥିଲା । କିନ୍ତୁ ପିଲାଟିର କିଛି କ୍ଷତି ହୋଇ ନଥିଲା ।' ଏତକ ଶୁଣି ମୁଁ ସବୁକଥା ବୁଝିଗଲି । ନିଜ ପିଇବା ପାଇଁ ରଖିଥିବା କ୍ଷୀର ଆଣିଦେଲି । ବାଘଛୁଆଟି ବୋଧହୁଏ ଅନେକ ବେଳୁ ଭୋକିଲା ଥିଲା, ଆନନ୍ଦରେ କ୍ଷୀରତକ ପିଇଗଲା । ତାକୁ ମୁଁ ହାତରେ ଆଉଁସି ଦେଉ ଦେଉ ସେ ବିଲେଇ ଛୁଆ ଭଳି ମ୍ୟାଉଁ ମ୍ୟାଉଁ କଲା । (ଅରଣ୍ୟ ଅତିଥିର ପ୍ରାକ୍ କଥନ)

## ଲେଖକର ଜନ୍ମ :

ମୁଁ କେବଳ କଲେଜରେ ପଢୁଥିବା ବେଳେ କିଛି ଲେଖାଲେଖି କରୁଥିଲି । ତାହା ପୁଣି ଇଂରାଜୀରେ। ଅଧ୍ୟାପନା ଆଉ ଚାକିରି ପରେ ଅଳ୍ପକିଛି ଓଡ଼ିଆ ଗଳ୍ପ ଲେଖିଲି । ବିଭିନ୍ନ ପତ୍ରପତ୍ରିକାରେ ତାହା ସ୍ଥାନିତ ହୋଇଥିଲା । ତା ପରେ ମୁଁ ଜଙ୍ଗଲ ଭିତରେ ଏତେ ହଜିଯାଇଥିଲି ଯେ, ଲେଖିବା ପାଇଁ ମୋର ସମୟ କିମ୍ବା ମାନସିକତା ମଧ୍ୟ ନଥିଲା । କିନ୍ତୁ ବାଲେଶ୍ୱରରେ ପୋଷ୍ଟିଂ ହେବା ପରେ ମୋ ଜୀବନର ଗତିପଥ ବଦଳିଗଲା । ମୁଁ ସେଠି ଅତିରିକ୍ତ ଟ୍ରେଜେରି ଅଫିସର ଭାବେ ଯୋଗଦେବା ପରେ ସେଠାକାର ଟ୍ରେଜେରି ଅଫିସର ବୃନ୍ଦାବନ ପାଣିଗ୍ରାହୀ ମତେ ଲେଖାଲେଖି କରିବାକୁ ପରାମର୍ଶ ଦେଲେ । ମୋର ପୁରସ୍କୃତ ଇଂରାଜୀ ଗଳ୍ପ 'ଇନ ମେମୋରିଅମ'କୁ ଓଡିଆରେ ଲେଖିବା ପାଇଁ କହିଲେ । ପ୍ରଥମେ ଡରିଗଲି । ତା ପରେ ଲେଖିଲି ମୋ ଜୀବନର ପ୍ରଥମ ଉପନ୍ୟାସ 'ପ୍ରଥମ ପ୍ରଭାତ' । ଏହି ପ୍ରଥମ ପୁସ୍ତକ ପାଇଁ ଅଂଶୁମାନ ଘୋଷ ମଧ୍ୟ ମତେ ଅନେକ ସହଯୋଗ କଲେ । ଆଉ ତା ପରେ ମୁଁ ଲେଖି ଚାଲିଲି ଏବଂ ଚାଲିଲି । ସେଇଠାରୁ ହିଁ ମୋ ଭିତରେ ଥିବା ଲେଖକର ଜନ୍ମ । ଏଇଟା ୧୯୮୧ ମସିହା କଥା । ଯା' ଭିତରେ ମୁଁ ମାତ୍ର ୧୧ଟି ଉପନ୍ୟାସ ଲେଖିଛି । ତେବେ ମୋର ଅଧିକାଂଶ ଲେଖା ଜଙ୍ଗଲ ସଂପର୍କିତ । ୨୦୦୦ ମସିହା ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କୃତ 'ଭୂମିତୃଷ୍ଣା'ର କଥାଭୂମି ମଧ୍ୟ କେତେକାଂଶରେ ଜଙ୍ଗଲ ସଂପର୍କିତ । ଆଉ ଦୁଇଟି ବହି 'ଭଙ୍ଗା ମୁନର ଭାଷା' ଏବଂ 'ସତ ହେଲେ ବି ଗପ' ପ୍ରକାଶ ଅପେକ୍ଷାରେ ।

## ଆଉ ଏବେ ?

ଚାକିରିରୁ ଅବସର ନେବା ପରେ ଲେଖାଲେଖିରେ ବେଶି ଧ୍ୟାନଦେବି ବୋଲି ଆଶା କରୁଥିଲି । କିନ୍ତୁ କ'ଣ ପାଇଁ କେଜାଣି ମୁଁ ଏବେ କିଛି ବି ଲେଖିପାରୁ ନାହିଁ । ସାଂସାରିକ ଜଞ୍ଜାଳ ଭିତରେ ଛନ୍ଦି ହୋଇ ନୀରବତା ପାଉନାହିଁ ଲେଖିବାକୁ । ତେବେ ଓଡ଼ିଆ ଭାଷା, ଓଡ଼ିଆ ସାହିତ୍ୟକୁ ନେଇ ମୋର ଅନେକ ଦୁଃଖ । କାରଣ ଅନ୍ୟଭାଷାଠାରୁ ଏହା କୌଣସି ଗୁଣରେ କମ ନୁହେଁ । କିନ୍ତୁ ଆମର ଶବ୍ଦସଂଖ୍ୟା ଖୁବ୍ ସୀମିତ । କେତେ ହେବ ? ସେଇ ୩୫-୪୦ ହଜାର ଭିତରେ । ଅଥଚ ଇଂରାଜୀ ଭାଷାରେ ଲକ୍ଷେରୁ ଊର୍ଦ୍ଧ୍ୱ । ତେଣୁ ଆମର ଦରକାର ଶବ୍ଦର ପ୍ରତିବର୍ଣ୍ଣୀକରଣ । ପ୍ରତି ବର୍ଷ ନୂଆ ଶବ୍ଦର ସୃଷ୍ଟି । ତା ହେଲେ ହିଁ ଓଡ଼ିଆ ସାହିତ୍ୟ ସମୃଦ୍ଧ ହୋଇପାରିବ । ତାକୁ ଜାତୀୟ ତଥା ଆନ୍ତର୍ଜାତୀୟ ସ୍ତରରେ ସ୍ୱୀକୃତି ମିଳିବ ।



ସାକ୍ଷାତକାର-ଏମ୍.ଜେ.,
ଫଟୋ- ଜ୍ୟୋତି

# 'ବନ୍ଧୁକର ଶବ୍ଦ ଅପେକ୍ଷା ଲେଖନୀର ନାଦ ଅନନ୍ତପ୍ରସାରୀ'

*ଆଧୁନିକ ଓଡ଼ିଆ କଥା ସାହିତ୍ୟର ଜଣେ ଏକନିଷ୍ଠ ସାଧକ ଭାବରେ ପ୍ରାୟ ତିନି ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ଧରି ସାହିତ୍ୟ ସର୍ଜନା କରିଆସିଛନ୍ତି ଶ୍ରୀ ରାଧାମୋହନ ମହାପାତ୍ର । ନିକଟରେ ସେ ତାଙ୍କର ପୁସ୍ତକ 'ଭୂମି ତୃଷା' ପାଇଁ ପାଇଛନ୍ତି ସମ୍ମାନଜନକ ଓଡ଼ିଶା ସାହିତ୍ୟ ଏକାଡେମି ପୁରସ୍କାର ।*

**ପ୍ର: ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତି ଖବରରେ ଆପଣଙ୍କ ପ୍ରତିକ୍ରିୟା କ'ଣ ଥିଲା ?**

**ଉ:** ଜଣେ ସହୃଦୟ ବନ୍ଧୁଙ୍କ ଠାରୁ ଟେଲିଫୋନ୍ ମାଧ୍ୟମରେ ସମ୍ବାଦଟି ପାଇ ଅଭିଭୂତ ହୋଇଥିଲି ଯାହା ଜଣେ ବିଜେତାଙ୍କ ପାଇଁ ସ୍ୱାଭାବିକ ଥିଲା ।

**ପ୍ର: ଏହି ସଂସ୍ଥାର ପୁରସ୍କାର ଚୟନ ନିରପେକ୍ଷ ନୁହେଁ ବୋଲି ବିଭିନ୍ନ ସମୟରେ ଅଭିଯୋଗ ଉଠେ । ଆପଣଙ୍କ ମତ ?**

**ଉ:** ଏକାଡେମି ପୁରସ୍କାର ପାଇବାକୁ ହେଲ ପୁସ୍ତକଟି ଅନେକ ସ୍ତର, କମିଟି ଓ ପ୍ରତିଯୋଗିତାର ସମ୍ମୁଖୀନ ହେବାକୁ ପଡ଼ିଥାଏ । କମିଟି ଜଣକୁ ନେଇ ଗଢ଼ା ହୋଇ ନଥାଏ । ସମୀକ୍ଷକ, ଚୟନକର୍ତ୍ତା, ବିଚାରକଙ୍କ ମତାନୁଯାୟୀ ଅଧିକ ନମ୍ବର ରଖିଥିବା ପୁସ୍ତକଟି ମନୋନୀତ ହୋଇଥାଏ । ଏହାକୁ ନିରପେକ୍ଷ ବୋଲି ଧରିବାକୁ ହେବ ।

**ପ୍ର: ଓଡ଼ିଆ ସାହିତ୍ୟର ପ୍ରସାର ନିମନ୍ତେ ଆପଣଙ୍କ କିଛି ନିର୍ଦ୍ଦିଷ୍ଟ ପ୍ରସ୍ତାବ ଅଛି କି ?**

**ଉ:** ବହୁ ବର୍ଷ ହେଲା 'ଓଡ଼ିଆ ପ୍ରୀତି ପାଇଁ କେତୋଟି ନୀତି' ପ୍ରଣୟନ କରି ଘରେ ଘରେ ବାଣ୍ଟିବାକୁ ଚେଷ୍ଟା କରିଛି । କେତୋଟି ଉପନ୍ୟାସ ଓ ଗପ ଅନୁବାଦ ମାଧ୍ୟମରେ ଉପସ୍ଥାପନା କରିବାକୁ ଯୋଜନା ରଖିଛି ।

**ପ୍ର: ନିକଟରେ କେଉଁ ବହି ପଢ଼ିଛନ୍ତି ? ସେ ବହିଟି କେମିତି ଲାଗିଲା ?**

**ଉ:** ଓଡ଼ିଆରେ ଅନୁଦିତ ବହି ବେଶି ପଢ଼ିବାକୁ ଭଲ ଲାଗେ, କାରଣ ଅନ୍ୟ ଭାଷାରେ କ'ଣ ମସଲା ଅଛି ଜାଣିବାକୁ ଇଚ୍ଛା କରେ । ନିକଟ ଅତୀତରେ ଜଣେ ଯୋଗୀର ଆତ୍ମକାହାଣୀ ମନଧ୍ୟାନ ଦେଇ ପଢ଼ିଛି ଯାହା ପରମହଂସ ଯୋଗାନନ୍ଦଙ୍କ ଦ୍ୱାରା ଇଂରାଜୀରେ ରଚିତ । ଏକ ବିରଳ ଅତ୍ୟୁନ୍ନତ ଜ୍ଞାନଗର୍ଭକ ପୁସ୍ତକ ।

**ପ୍ର:** ଆପଣଙ୍କ କେଉଁ ପାଞ୍ଚଟି ବହି ଖୁବ୍ ପ୍ରଭାବିତ ?

**ଉ:** କାହ୍ନୁଚରଣଙ୍କ 'କା', କାଳିନ୍ଦୀ ଚରଣଙ୍କ 'ମାଟିର ମଣିଷ', ଗୋପୀନାଥ ମହାନ୍ତିଙ୍କ 'ଦାନାପାଣି', ପ୍ରତିଭା ରାୟଙ୍କ 'ଯାଜ୍ଞସେନୀ' ପାଞ୍ଚଟି ମଧ୍ୟରେ ସ୍ଥାନ ଗ୍ରହଣ କରିପାରନ୍ତି ।

**ପ୍ର:** **ଭାଗ୍ୟରେ ବିଶ୍ୱାସ କରନ୍ତି କି ?**

**ଉ:** ଯଥୋଚିତ ପରିଶ୍ରମ ଓ ଉଦ୍ୟମ କରି ଅସଫଳ ହେଲେ ଭାଗ୍ୟକୁ ବିଶ୍ୱାସ କରିବା ବାଧ୍ୟ । ବିନା ଶ୍ରମ ଓ ଉଦ୍ୟମରେ ଭାଗ୍ୟଫଳ ଉପରେ ନିର୍ଭର କରିବା ବଦ୍ଧ ବୋକାମି ।

**ପ୍ର:** **କ'ଣ ଖାଇବାକୁ ଭଲପାଆନ୍ତି ?**

**ଉ:** ବରା, ପଖାଳ, ଆଳୁବାଇଗଣ ଭର୍ତ୍ତା, ଶାଗ, ବଡି ।

**ପ୍ର:** **ଆପଣ ଆପଣଙ୍କ ବନ୍ଧୁ ଓ ଆତ୍ମୀୟମାନଙ୍କ ସ୍ମୃତିରେ କିଭଳି ବଞ୍ଚିବାକୁ ଚାହାନ୍ତି ?**

**ଉ:** ସେମାନେ ମୋ ପାଇଁ ଗର୍ବ କରିବାର କିଛି ଉପାଦାନ, ଗୁଣ ଓ କୀର୍ତ୍ତି ମୋ ପାଖେ ରହିବା ଆବଶ୍ୟକ ।

**ପ୍ର:** **ଆପଣ ନିଜ ପାଇଁ କିଭଳି ମୃତ୍ୟୁ ଲୋଡ଼ିବେ ?**

**ଉ:** ମୃତ୍ୟୁ ଏକ ଅବଧାରିତ ସତ୍ୟ ଯାହାକୁ କେବେ କେହି ଏଡ଼ାଇ ପାରିବେ ନାହିଁ । ଜୀବନ ହେଉଛି ମୃତ୍ୟୁର ଗତିଶୀଳତା ମାତ୍ର । ମୃତ୍ୟୁର ଅନେକ ରୂପ, କାହା ପାଇଁ ଆକସ୍ମିକ ତ କାହା ପାଇଁ ପ୍ରାକୃତିକ । ତେବେ ଶେଷ ନିଃଶ୍ୱାସ ବେଳକୁ ଅର୍ଜିତ ସଂପତ୍ତି (ପାର୍ଥିବ ନୁହେଁ)ର ପରିମାଣ ଓ ମୋଟେଇ କେତେ ଜାଣି ଆତ୍ମତୃପ୍ତିର ଶାନ୍ତ୍ୱନା ନେଇ ଆଖିବୁଜିବି ବୋଲି ଆଶା କରିଛି ।

**ପ୍ର:** **ଆପଣ ଅବସର ସମୟ କେମିତି କାଟିବାକୁ ଚାହିଥାନ୍ତି ?**

**ଉ:** ପଢ଼ାପଢ଼ି, ଲେଖାଲେଖି ଓ ଉଦ୍ୟାନ କର୍ମରେ ।

**ପ୍ର:** **ଅପାଣଙ୍କର ପ୍ରଥମ ଲେଖା ସଂପର୍କରେ ?**

**ଉ:** ଜୀବନରେ ଲେଖକଟିଏ ହେବି ବୋଲି କେବେ ଭାବି ନଥିଲି । କିନ୍ତୁ ପରିସ୍ଥିତିର ପରିବର୍ତ୍ତନରେ ପରମେଶ୍ୱର ମୋ ହାତରୁ ବନ୍ଧୁକ ଛଡ଼ାଇ ନେଇ ଧରାଇ ଦିଅନ୍ତି କଲମଟିଏ ଓ ଥୋଇ ଦିଅନ୍ତି କାଗଜର ବିସ୍ତୀର୍ଣ୍ଣ ବନାନୀଟିଏ- କଲମକୁ ସେଥିରେ ପରୀକ୍ଷା କରିବାକୁ ଯୋଗାଇ ଦିଅନ୍ତି ଲେଖନୀର କଳାକାରସାଦୀ ଶବ୍ଦଗୋଳା । ସେଇ ପରୀକ୍ଷାଗାରରେ ମୁଁ ନିମଜ୍ଜିତ ଯାହା ମୁଁ ବାରମ୍ବାର ନିଜ କଥନରେ କହିଆସିଛି । ବାରୁଦର ଶବ୍ଦ ଅପେକ୍ଷା ଲେଖନୀର ନାଦ ଅନନ୍ତ ପ୍ରସାରୀ । ଶିକାର ଲାଳସା ଅପେକ୍ଷା ସାରସ୍ୱତ ବିଳାସ ଅନେକ ଶ୍ରେୟ ଅନୁଭବ କଲି ।



# ବଂଶୀ-ବନ୍ଧୁକ-ବହିର ବିନ୍ଧାଣୀ ଶ୍ରୀ ରାଧାମୋହନ ମହାପାତ୍ର: ଜଣେ ବିରଳ ବ୍ୟକ୍ତିତ୍ୱର ଅନନ୍ୟ ଜୀବନ କାହାଣୀ

ବଂଶୀ-ବନ୍ଧୁକ-ବହି ତିନୋଟି ଶବ୍ଦ । ବାକ୍ୟଟିରୁ ଅମେଳ ଶବ୍ଦଟିକୁ ବାଦ୍ ଦେଲେ ବନ୍ଧୁକ ଉଭେଇ ଯାଏ । ରହିଯାଏ ବଂଶୀ ଓ ବହି । ଲେଖକ-ଗାଳ୍ପିକ-ଔପନ୍ୟାସିକ ରାଧାମୋହନଙ୍କ ଅର୍ଥପୂର୍ଣ୍ଣ-ଜୀବନରେ ଠିକ୍ ତାହା ହିଁ ଘଟିଛି । ବାଲ୍ୟକାଳରୁ ହୁଏତ ପ୍ରଥମ ଶ୍ରେଣୀ ସମୟରୁ ହାତରେ ଧରି ଆସିଛନ୍ତି ଏକଫୁଟ ଲମ୍ବର ବଂଶୀଟିଏ । ଶ୍ରଦ୍ଧା କରନ୍ତି ଏହି ବଂଶୀକୁ । ମିତ ବସନ୍ତି ଜଗତର ସବୁଠୁ ଏଇ ଶସ୍ତା, ସରଳ ଅଥଚ ବିରଳ ବାଉଁଶର ବାଦ୍ୟଯନ୍ତ୍ର ସହିତ । ଆତ୍ମନିମଜ୍ଜନର ପ୍ରତିଦାନ ସ୍ୱରୂପ ପାଇଛନ୍ତି ଅପୂର୍ବ ସ୍ୱରଗୁଣ । ମୁରଲୀର ମନ୍ତ୍ରମୋହିନୀ ସ୍ୱରରେ ସମସ୍ତଙ୍କ ଚିତ୍ତକୁ ପୂତ କରିଛନ୍ତି । (ବାଳକଟିର କେତେ ଅପୂର୍ବକଳା !)ସମସ୍ତେ ଚକିତ, ସ୍ତମ୍ଭୀଭୂତ, ଆମୋଦିତ ଓ ଚମତ୍କୃତ । ଆଶିଷର ବର୍ଷା ଅଜାଡି ହୋଇ ପଡ଼େ ତାଙ୍କ ଉପରେ । ପୁରସ୍କାର ମଣ୍ଡି ହୋଇ ପଡ଼େ ।

ସମୟ ଅତିକ୍ରାନ୍ତ ହୁଅନ୍ତେ ଯୁବାବସ୍ଥା ଉପସ୍ଥିତ ହୁଏ । ବିଦ୍ୟାଧ୍ୟୟନର ପାହାଚ ଚଢନ୍ତି । ଶୀର୍ଷରେ ପହଞ୍ଚନ୍ତି । ସ୍ନାତକୋତ୍ତର ପରେ କିଛିଦିନ ଅଧ୍ୟାପନା ଓ ତତ୍ପରେ ସରକାରୀ ଚାକିରିରେ ଯୋଗଦାନ । ଖୁବ୍ ବଡ଼ ଚାକିରି କରିବା ପାଇଁ ପ୍ରଚେଷ୍ଟା ଜାରି ରହେ ସର୍ବଭାରତୀୟ ପ୍ରତିଯୋଗିତା ମାଧ୍ୟମରେ । ଶେଷରେ ବିଫଳ ହୁଅନ୍ତି ଓ ବିଭୂଦତ୍ତ ଜୀବିକା (ଓ.ଏଫ.ଏସ୍)କୁ ସାଦରେ ଗ୍ରହଣ କରନ୍ତି । ସେଥିରେ ସନ୍ତୁଷ୍ଟ ରହିବାକୁ ବାଧ୍ୟ ହୁଅନ୍ତି । କିନ୍ତୁ ଅନ୍ତରାତ୍ମାର କେଉଁ ଏକ ଅଜ୍ଞାତ କୋଣରେ ଲୁଚି ରହିଥାଏ ଅସନ୍ତୋଷର ଅସ୍ପଷ୍ଟ ଦାଗଟିଏ । ଚାକିରି ଆରମ୍ଭହୁଏ ଦୂରାନ୍ତ ଅରଣ୍ୟପୂର୍ଣ୍ଣ ପାର୍ବତ୍ୟ ଅଞ୍ଚଳରେ - କୋରାପୁଟ, କଳାହାଣ୍ଡି, ରାୟଗଡା, ମାଲକାନଗିରି ଯେଉଁ ସ୍ଥାନଗୁଡିକ ପ୍ରତି ଉପକୂଳ ଅଞ୍ଚଳ ନିବାସୀ ଅମଙ୍ଗ ହୁଅନ୍ତି । ସେ କିନ୍ତୁ ଅଭିଭୂତ ହୁଅନ୍ତି ଓଡ଼ିଶାର ଏହି ଗିରିବହୁଳା, କାନନକୁନ୍ତଳା, ତଟିନୀପଖଳା, ଆରଣ୍ୟକ ଶୋଭାଶ୍ରୀରେ । ପିଲାଦିନର ସ୍ମୃତି ସତେଜ ହୋଇଉଠେ । ନଦୀକୂଳ, ବାଲ୍ୟ ଦୁଷ୍ଟାମୀ, ଧନୁ, କାଣ୍ଡଶର, ତୀର, ଛିଣିକିଣି, ବାଟୁଳିଖଡା, ନଈପହଁରା, ମଶାଣୀଶୁଆ, ବିଲୁଆ ମରା, ସର୍ପ ଇତ୍ୟାଦି ଦୁଃସାହସିକ ଚଗଲାମି ଗୁଣଗୁଡିକ ମନେପଡ଼େ । ଭଲପାଇ ବସନ୍ତି ଜଙ୍ଗଲକୁ ଓ ତା'ର ଅପୂର୍ବ କମନୀୟତା, ବାଙ୍ମୟତା, ନିର୍ଜନତାକୁ ଓ ଅରଣ୍ୟର ପାଦପରାଜି ତଥା ପଶୁ ସମ୍ପଦକୁ । ବିପଦ ବହୁଳ, ହିଂସ୍ରଜନ୍ତୁ ସଙ୍କୁଳ ଦୁର୍ଗମ ଗିରିପଥ ତାଙ୍କର ପ୍ରିୟାଦପି ପ୍ରିୟ ଭ୍ରମଣସ୍ଥଳୀ ହୋଇଯାଏ । 'ବ୍ୟାଘ୍ରନିଦାନ' ପୁସ୍ତକରେ ଅରଣ୍ୟକୁ ସମ୍ବୋଧନ କରି ଅବତରଣିକାରେ କହନ୍ତି- "ତୁମେ ତ ସଭ୍ୟତାର ଆଦିମ ଉନ୍ମେଷ, ଏପରି ଏକ ନିର୍ଜନ ନିବାସ ଯେଉଁଠି ନୀରବରେ ଶତାବ୍ଦୀଟିଏ ସର୍ଜନା କରିହେବ, ସବୁ ଶବ୍ଦ ସେଠାରେ ଓଁକାର ହୋଇ ଫେରୁଥିବ ନିଜଠାକୁ ଏବଂ ତୁମ ସଚରାଚର ବାଙ୍ମୟ ସତ୍ତାର

ସଚ୍ଚିତ୍ର ଉପସ୍ଥିତିରେ ସୃଷ୍ଟି ହେଉଥିବ ମୋର ନିତ୍ୟ ନୂତନ ଉଚ୍ଚାରଣ, ମନ୍ତ୍ରପାଠର ଧ୍ୱନି ଭିତରେ ଶିହରିତ ହୋଇ ଉଠୁଥିବ ସର୍ଜନାର ଶତଝଙ୍କାର ସ୍ୱର...

ଜଙ୍ଗଲ ଭ୍ରମଣ ସମୟରେ ଆସନ୍ତି ଅନେକ ନିରୀହ ଓ କେତେ ଭୟଙ୍କର ହିଂସ୍ର ଜୀବଜନ୍ତୁଙ୍କ ସଂସ୍ପର୍ଶରେ । ମହାବଳ ବାଘ ସମ୍ମୁଖରେ ପଡ଼ିଛନ୍ତି, ଚିତାବାଘ ସଂସ୍ପର୍ଶରେ ଆସିଛନ୍ତି, ମତ୍ତହସ୍ତୀ ମୁହଁରୁ ଅଳ୍ପକେ ବର୍ତ୍ତିଛନ୍ତି, ଭାଲୁ ଆକ୍ରମଣରୁ କାମୁଡ଼ା ଖାଇ ମରୁ ମରୁ ବଞ୍ଚି ଯାଇଛନ୍ତି କେବଳ କପାଳର ଜୋର୍ ଯୋଗୁଁ । କିନ୍ତୁ ଦଶନ୍ଧି ଦଶନ୍ଧି ଧରି ଅରଣ୍ୟରେ ବୁଲି ବୁଲି ପାଇଲେ କ'ଣ ? ଅମୂଲ୍ୟ ସେ ଦାନ । ବନର ନିସ୍ତରଙ୍ଗ ଆଲିଙ୍ଗନ ଭିତରେ ସେ ପୀୟୂଷର ସନ୍ଧାନ ପାଇଛନ୍ତି । ତାଙ୍କ ପ୍ରଥମ ଜାଙ୍ଗଲିକ ଉପନ୍ୟାସ 'ଜଙ୍ଗଲର ଜମାନବନ୍ଦୀ' ପୁସ୍ତକରେ ପ୍ରାକ୍ କଥନରେ କହନ୍ତି-ଏକ ପରିବର୍ତ୍ତନର ସ୍ୱର ଅଙ୍କୁରିତ ହୁଏ ସେଇଦିନ ଯେଉଁଦିନ ସେ ଦେଖନ୍ତି ତାଙ୍କର ତିନୋଟି ଯାକ ବନ୍ଧୁକକୁ ଘରକୋଣରେ ଏକ ବୃହତ୍ ଉଇହୁଙ୍କା ଆକ୍ରମଣ କରିବସିଛି । ବନ୍ଧୁକ ଦେହରେ ଝୁଲା ଯାଇଥିବା କାଟ୍ରିଜ୍ ବେଲ୍‌ଟର ସବୁ ଗୁଡ଼ିଗୁଡ଼ିକ ମଧ୍ୟ ଉଇସେନାଙ୍କ ଦ୍ୱାରା ଧ୍ୱଂସ । ଏହା ତାଙ୍କ ପାଇଁ ଏକ ଅଦ୍ଭୁତ ଘଟଣା । କ'ଣ ରହସ୍ୟ ! ନା, ଏହା ବୋଧେ ବିଧି ନିର୍ଦ୍ଦେଶିତ । ଆଉ ବନ୍ଧୁକ ଧରିବା ମନା, ଜୀବହତ୍ୟା ନିଷିଦ୍ଧ । ମା' ନିଷାଦ ପ୍ରତିଷ୍ଠାମ୍‌ର ମୃଦୁ ମନ୍ଦ ଧ୍ୱନି କାନରେ ବାରମ୍ବାର ଗୁଞ୍ଜରିତ ହେଉଛି । ଏଣୁ ବନ୍ଧୁକ ଛାଡ଼ି କଲମ ଧରନ୍ତି । ତାଙ୍କର ମର୍ମାତୁର ଆବେଦନ ଲେଖି ବସନ୍ତି । କିନ୍ତୁ କେଉଁ ଭାଷାରେ ? ଇଂରାଜୀ ଭାଷାରେ ସେ ଜଣେ କୃତୀ ସ୍ନାତକ । ନାଟ୍ୟକାର ଅଭିନେତା ସ୍ୱର୍ଗତ ବୃନ୍ଦାବନ ପାଣିଗ୍ରାହୀଙ୍କ ସୁପରାମର୍ଶ-ସମୁଦ୍ରର ପାଣିରେ ଟୋପେ ଢାଳିବା ପରି ଆମେ ଇଂରାଜୀ ଭାଷାରେ ଲେଖିବା ସମାନ । କିନ୍ତୁ ମାତୃଭାଷାରେ ଟୋପାଏ ଜଳ ହୁଏତ ତୃଷା ନିବାରଣ କରିପାରେ କିଛି ପରିମାଣରେ ଠିକ୍ ଅମୃତ ସିନ୍ଧୁରେ ବିନ୍ଦୁଟିଏ ଭଳି । ଏଣୁ ସେ ମାତୃଭାଷାର ଆହ୍ୱାନରେ ଆକୃଷ୍ଟ ହୁଅନ୍ତି । ମାତୃଭାଷା ପ୍ରୀତି ମନ୍ତ୍ର ଜପ କରନ୍ତି ଅହରହ- ଶୟନେ, ସପନେ, ଜାଗରଣେ । ଲେଖନୀ ଚାଳନା କରନ୍ତି ଅବିରତ । ଶତାଧିକ ସଫଳ ଗପ, ୧୨ଟି ସୁଦୀର୍ଘ ଉପନ୍ୟାସ । ପ୍ରତି ସୃଷ୍ଟିଟି ଭାସ୍ୱର, ଚିର ଉଜ୍ଜ୍ୱଳ । ଅରଣ୍ୟର ଅନ୍ତରଙ୍ଗ ଚିତ୍ର ଆଙ୍କିବାରେ ସିଦ୍ଧହସ୍ତ ଯେମିତ ! ତାଙ୍କର ଜଙ୍ଗଲଭିତ୍ତିକ ରୂପକ ଉପନ୍ୟାସ(ଫିଚର ଉପନ୍ୟାସ) ହୁଏତ ଆମ ପ୍ରଦେଶରେ ପ୍ରଥମ । ଶିବେ ଭକ୍ତି ଜୀବେ ଦୟାର ଦିବ୍ୟ ଦର୍ଶନରେ ନିମଜ୍ଜିତ ହୋଇ ଅବଶିଷ୍ଟ ଜୀବନର ଆଦର୍ଶ-ଆଭିମୁଖ୍ୟ ଭାବେ ଗ୍ରହଣ କରିନେଇଛନ୍ତି ।

ତାଙ୍କ ଜୀବନରେ ବନ୍ଧୁକ ବାଦ୍ ଯାଇଛି, ବାରୁଦର ବିସ୍ଫୋରଣରୁ ସୃଜନର ସ୍ଫୁରଣ ହୋଇଛି । ଗୁଳି ବଦଳରେ ସାହିତ୍ୟର ଶବ୍ଦଗୋଳା ମୁଖ୍ୟ ସ୍ଥାନ ଗ୍ରହଣ କରିଛି । ଆଉ ବଂଶୀ ? ବଂଶୀ ମଧ୍ୟ ତାଙ୍କର ଚିର ସହଚର । ଲେଖନୀରେ କେବେ ଭାବନା ଓ ଶବ୍ଦଗୋଳାର ଅଭାବ ଘଟିଲେ, ଧରନ୍ତି ହାତରେ ବଂଶୀ । ମୁରଲୀର ମୋହିନୀ ସ୍ୱରରେ ଆହ୍ଲାଦିତ ହୋଇ ପରେ ପୁଣି ଧରନ୍ତି ଲେଖନୀ । କେଉଁଠୁ

ଭାବନା ଓ ଭାଷାର ବନ୍ୟା ଛୁଟି ଆସେ । ସବୁଗୁଡିକ କାଳି କାଗଜରେ ଲିପିବଦ୍ଧ କରିଦିଅନ୍ତି । ପ୍ରତ୍ୟେକ ଲେଖା ତାଙ୍କର ପ୍ରାୟ ଅଙ୍ଗେନିଭା କାହାଣୀ । ତାଙ୍କ ଉପନ୍ୟାସ 'ଭୂମିତୃଷ୍ଣା' ଜଙ୍ଗଲଭିତ୍ତିକ ହେଲେ ହେଁ ମାତୃଭୂମି ପ୍ରୀତିର ଏକ ଦସ୍ତାବିଜ ସ୍ୱରୂପ ଓ ପୁସ୍ତକଟି ୨୦୦୦ ଉପନ୍ୟାସ ବିଭାଗରେ ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ । ଅଧୁନା ତାଙ୍କ ଅନ୍ୟତମ ସାଧନା 'ଗଛ ଛନ ଛନ ଗହନ ବନ' ଉପନ୍ୟାସଟି ବିଗତ ୨୨ବର୍ଷ ହେଲା ଲେଖା ଚାଲିଛି ।

ପୁରୀ ବେଲେଶ୍ୱରସ୍ଥ ସତ୍ୟ-ଉଦ୍ୟାନ ପରିସର ନିର୍ଜନ ନିବାସରେ ରଚନା ଅବ୍ୟାହତ ରହିଛି । ଆସନ୍ତୁ ଏଭଳି ସୃଜନଶୀଳ ତପସ୍ୟାନିରତ, ଓଡ଼ିଆ ଭାଷାମୋଦୀ ମଧୁରାଳାପୀ ଲେଖକ ବନ୍ଧୁ ରାଧାମୋହନ ବାବୁଙ୍କୁ ସ୍ୱାଗତ କରିବା, ଗାଇବା ଓଡ଼ିଆ ଜାତିର ଜୟଗାନ (ଉପନ୍ୟାସ 'ଭୂମିତୃଷ୍ଣା'ର ଅନ୍ତର୍ବାଣୀ) ।

◆

*ଆଲେଖ୍ୟ: ଡଃ ଧରଣୀଧର ରାଉତ*
*ଓଡ଼ିଆ ବିଭାଗ, ମହର୍ଷି କଲେଜ, ଭୁବନେଶ୍ୱର*




ରାଧାମୋହନ ମହାପାତ୍ର ବଂଶୀ ବାଦନବେଳେ।

ନନ୍ଦିନୀ ଶତପଥୀ ଶ୍ରାଦ୍ଧ ବିଶେଷାଙ୍କ-ଆଳାପ

# ବନ୍ଧୁକ ଛାଡି କଲମ ଧରିଲି

*ଅନ୍ୟ ଭାଷା ସାହିତ୍ୟ ତୁଳନାରେ ଓଡ଼ିଆ ଭାଷା ସାହିତ୍ୟରେ ଆଜି ବି ସେଭଳି ବିବିଧତା ପରିଦୃଷ୍ଟ ହୁଏନି । ମାତ୍ର ଓଡ଼ିଆ ସାହିତ୍ୟର ଉତ୍ତର ଆଧୁନିକ ଯୁଗରେ ପାରମ୍ପରିକ ଧାରାର ଏକ ବ୍ୟତିକ୍ରମ ହେଉଛନ୍ତି ରାଧାମୋହନ ମହାପାତ୍ର । ପରିବେଶ, ବୃକ୍ଷଲତା, ପଶୁପକ୍ଷୀ ସାଜିଛନ୍ତି ତାଙ୍କ ଗଳ୍ପ, ଉପନ୍ୟାସର ମୁଖ୍ୟ ଚରିତ୍ର । ସେମାନଙ୍କର ଆତ୍ମୀୟତାକୁ ଆଧାର କରି ଲେଖନୀ ଚଳାଇଥିବା ଶ୍ରୀ ମହାପାତ୍ରଙ୍କ ସହ ହୋଇଥିବା ସଂକ୍ଷିପ୍ତ ଆଳାପର କିୟଦଂଶ...*

**ପ୍ର: ଉଦ୍ଭିଦ ଓ ପଶୁପକ୍ଷୀଙ୍କୁ ପୃଷ୍ଠଭୂମିରେ ରଖି ଆପଣ ଲେଖନୀ ଚଳାଇ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି । ଏଭଳି ଏକ ନୂତନ ଧାରା ସୃଷ୍ଟି ଲାଗି କିପରି ପ୍ରେରିତ ହେଲେ ?**

ଉ: ପିଲାବେଳୁ ଇଂରାଜୀ ବ୍ୟତୀତ କୌଣସି ବିଷୟ ମୋର ଭଲ ହେଉ ନଥିଲା । କଲେଜ ବେଳେ ଗୋଟିଏ ଇଂରାଜୀ ଗପ 'ଇନ୍ ମେମୋରିୟମ୍' ଲେଖିଥିଲି । ତାହା 'ମାଇଁ ମାଗାଜିନ୍ ଅଫ ଇଣ୍ଡିଆ'ରେ ପ୍ରକାଶିତ ହୋଇଥିଲା । ଅବସର ଦିନମାନଙ୍କରେ ଚାକିରି ଜୀବନରେ ବଣଜଙ୍ଗଲରେ ବୁଲିବା, ଶିକାର କରିବାରେ ବହୁ ସମୟ ବିତାଇଛି । ୧୯୭୮ ମସିହାରେ ଆଡିସନାଲ ଟ୍ରେଜେରି ଅଫିସର ଭାବେ ବାଲେଶ୍ୱରରେ ଅବସ୍ଥାପିତ ହୋଇଥିବା ବେଳେ ଟ୍ରେଜେରି ଅଫିସର ନାଟ୍ୟ ବ୍ୟକ୍ତିତ୍ୱ ବୃନ୍ଦାବନ ପାଣିଗ୍ରାହୀଙ୍କ ସାହାଯ୍ୟ ଓ ପ୍ରେରଣା ଲେଖାଲେଖି ପାଇଁ ପ୍ରେରିତ କଲା । ଯଦିଓ ପ୍ରଥମ ଲେଖା ସାମାଜିକ ଉପନ୍ୟାସ ଥିଲା, ଅନେକ ସମୟ ବଣ ଜଙ୍ଗଲରେ ବିତାଇ ପଶୁପକ୍ଷୀଙ୍କୁ ଶିକାର କରିଥିବାରୁ ମନ ଆନ୍ଦୋଳିତ ହେଉଥିଲା । ଅନୁତାପ ଆସିଲା । ଶିକାର ପାଇଁ ଯେଉଁ ହାତ ବନ୍ଧୁକ ଧରୁଥିଲା, ସେହି ହାତରେ ପୁଣି ପ୍ରାଣୀଙ୍କ ସୁରକ୍ଷା ଲାଗି କଲମ ଧରିବାକୁ ମନ ବଳିଲା । ତା'ପରେ ଜୀବଜନ୍ତୁ, ଗଛଲତାଙ୍କୁ ନେଇ ଲେଖା ଚାଲିଲା ।

**ପ୍ର: ଆପଣ ଜଣେ ସଫଳ ସ୍ରଷ୍ଟା । ମାତ୍ର ଆପଣଙ୍କ ସୃଷ୍ଟି କୌଣସି ପ୍ରକାଶକମାନଙ୍କ ବ୍ୟତୀତ ନିଜ ଦ୍ୱାରା ପ୍ରକାଶିତ ହୋଇଥିବା ଦେଖିବାକୁ ମିଳେ । ଏହାର କାରଣ କ'ଣ ?**

ଉ: ଅବଶ୍ୟ କେତେକ ପ୍ରକାଶକଙ୍କ ଦ୍ୱାରସ୍ଥ ହୋଇଛି । କିନ୍ତୁ ସେମାନଙ୍କର ବ୍ୟବସାୟିକ ଉଦ୍ଦେଶ୍ୟ ତଥା ବିମୁଖତା ମୋତେ ବାଧ୍ୟ କରିଛି ନିଜ ସୃଷ୍ଟିକୁ ନିଜେ ପ୍ରକାଶନ କରାଇବା ପାଇଁ ।

**ପ୍ର: ସାହିତ୍ୟିକ ହେବା ପଛରେ କାହାର ପ୍ରେରଣା ରହିଛି ?**

ଉ: କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ 'ମାଂସର ବିଳାପ' ଗଳ୍ପ ଏବଂ ନାଟ୍ୟବ୍ୟକ୍ତିତ୍ୱ ବୃନ୍ଦାବନ ପାଣିଗ୍ରାହୀ ।

ଏଥି ସହିତ ପତ୍ନୀ ପ୍ରତିଭା ମହାପାତ୍ରଙ୍କ ସହଯୋଗିତା ମୋତେ ସାହିତ୍ୟିକ କରାଇଛି ।

**ପ୍ର: କେତେବେଳେ ଲେଖନ୍ତି ?**

**ଉ:** ନିର୍ଦ୍ଦିଷ୍ଟ ସମୟ ନାହିଁ । ଯେତେବେଳେ କୌଣସି କଥାବସ୍ତୁ ମନକୁ ଆସେ, ସେ ସମୟରେ ଯେଉଁ କାଗଜରେ ହେଉ ଟିପିଦିଏ । ପରେ ସମୟ ମିଳିଲେ ଲେଖେ ।

**ପ୍ର: ଆପଣଙ୍କର ସୃଷ୍ଟି ମଧ୍ୟରୁ କେଉଁଟିକୁ ସଫଳ ବୋଲି ଭାବନ୍ତି ?**

**ଉ:** ମୋ ସୃଷ୍ଟି ମଧ୍ୟରୁ କିଏ ସଫଳ, ତାହା କହିବା ମୋ ପାଇଁ କଠିନ । ତେବେ ଏହାର ଉତ୍ତର ପାଠକଙ୍କ ଠାରୁ ମିଳିପାରିବ ।

**ପ୍ର: ଆପଣଙ୍କ ଦୃଷ୍ଟିରେ ସଫଳ ସାହିତ୍ୟର ସଂଜ୍ଞା କ'ଣ ?**

**ଉ:** ଲେଖାରେ ବୋଧଗମ୍ୟତା, ଚିରନ୍ତନ ଚିହ୍ନ ସ୍ପଷ୍ଟ ରହୁଥିବ । ପାଠକ ଅବିରତ ପଢିବାକୁ ବାଧ ହେଉଥିବେ । ମୋ ମତରେ ତାହାହିଁ ସଫଳ ସାହିତ୍ୟ ।

**ପ୍ର: ସାହିତ୍ୟଠାରୁ ପାଠକ ଦୂରେଇ ଯାଉଛି, କାରଣ କ'ଣ ବୋଲି ଭାବୁଛନ୍ତି ?**

**ଉ:** ମୂଳ କଥା ହେଉଛି, ଏବେ ସାହିତ୍ୟରେ ପାଠକକୁ ବାନ୍ଧି ରଖିବା ଭଳି ଉପାଦାନ ଓ ବିବିଧତା ଖୁବ୍ କମ୍ ରହୁଛି । ଏଥିପ୍ରତି ଓଡ଼ିଆ ଲେଖକମାନେ ସଜାଗ ରହିବା ଉଚିତ୍ ।

*-ସାକ୍ଷାତ:* ବୀରଭଦ୍ର

◆



# ସାଧନା ଓ ସିଦ୍ଧି ସମ୍ବନ୍ଧରେ ସଂକ୍ଷିପ୍ତ ସମାଚାର

## ଅରଣ୍ୟର କଥାକାର ରାଧାମୋହନ ମହାପାତ୍ର

**ପିତା-** ୰ବାଞ୍ଛାନିଧି ମହାପାତ୍ର

**ମାତା-** ୰ ରଞ୍ଜନା ମହାପାତ୍ର

**ଜନ୍ମ-** ୩ ଫେବୃଆରୀ ୧୯୪୪

**ଜନ୍ମସ୍ଥାନ-** ଚର୍ଚ୍ଚିକା, ବାଙ୍କି, କଟକ

**ଶିକ୍ଷା-** ଏମ୍.ଏ

**ଠିକଣା:** ୧୪୭, ବୁଦ୍ଧେଶ୍ୱରୀ ପୋଷ୍ଟ ଅଫିସ୍ ଲେନ୍, ଭୁବନେଶ୍ୱର-୬

ମୋ-୯୮୬୧୧୮୯୯୩୬

**ବୃତ୍ତି-** ଓଡ଼ିଶା ଅର୍ଥ ସେବା ଅଧିକାରୀ ଭାବେ କାର୍ଯ୍ୟ ଆରମ୍ଭ କରି ଅତିରିକ୍ତ ବାଣିଜ୍ୟକର କମିଶନର ଭାବେ ଅବସର ଗ୍ରହଣ ।

କଥାଶିଳ୍ପୀ ରାଧାମୋହନ ମହାପାତ୍ର ଜଣେ ଭଲ ବଂଶୀ ବାଦକ ଏବଂ ଜଙ୍ଗଲ ଶିକାରୀ । ଶିକାର କରିବା ତାଙ୍କର ଏକ ସଉକ । ଓଡ଼ିଶା ଅର୍ଥ ସେବାରେ ନିୟୋଜିତ ହୋଇଥିଲେ ମଧ୍ୟ ଗଳ୍ପ ଓ ଉପନ୍ୟାସ ରଚନା କରିବା କ୍ଷେତ୍ରରେ ତାଙ୍କର ଅବଦାନ ଉଲ୍ଲେଖନୀୟ । ବିଶେଷକରି ସେ ଜଣେ ପ୍ରକୃତିପ୍ରେମୀ । ବଂଶୀବାଦନ ଦ୍ୱାରା ସେ ମଣିଷଖିଆ ଏକ ଚିତାବାଘକୁ ଆକର୍ଷିତ କରିଥିଲେ, ଯାହା ଫଳରେ ଏହି କଥାକୁ ସେ ତାଙ୍କ ଉପନ୍ୟାସ "ଜଙ୍ଗଲର ଜମାନବନ୍ଦୀ"ରେ ପ୍ରକାଶ କରିଛନ୍ତି । ବିସ୍ମୟଭରା ତାଙ୍କ ଜଙ୍ଗଲ କାହାଣୀ । ଶୌର୍ଯ୍ୟ ଏବଂ ସୌନ୍ଦର୍ଯ୍ୟ ପ୍ରତି ସମପରିମାଣରେ ବିମୁଗ୍ଧଭାବ ତାଙ୍କ ଚରିତ୍ରର ବୈଶିଷ୍ଟ୍ୟ । ଅଜସ୍ରସ୍ରାବୀ ତାଙ୍କ ଲେଖନୀ ।

ନିକଟ ଅତୀତରେ ତାଙ୍କର "ମିଷ୍ଟର ଖରସେଲ" ନାମକ ଏକ ଭିନ୍ନ ସ୍ୱାଦର ଉପନ୍ୟାସ, ଯେଉଁଥିରେ ଗୋଟିଏ ହାତୀକୁ ନେଇ ସେ କିପରି ଜଙ୍ଗଲ ଜୀବନର ଅନୁଭୂତି ଲାଭ କରିଛନ୍ତି ତାହାକୁ ସେ ଏହି ଉପନ୍ୟାସରେ ସୁନ୍ଦର ଶୈଳୀରେ ଉପସ୍ଥାପନ କରିଛନ୍ତି । ଇଂରାଜୀ ଲେଖକ ଜିମ୍ କରବେଟ୍‌ଙ୍କ ପରି ରାଧାମୋହନ ମହାପାତ୍ର ତାଙ୍କର ଏ ପ୍ରକାର କାହାଣୀକୁ ଅଧିକ ମର୍ମସ୍ପର୍ଶୀ କରିଛନ୍ତି ଓ ଉପନ୍ୟାସ ଶୈଳୀରେ ରଚନା କରି ଓଡ଼ିଆ ସାହିତ୍ୟକୁ ଏକ ବିଶେଷ ଅବଦାନ ଦେଇଛନ୍ତି । ବିଶେଷ କରି ଅରଣ୍ୟ ଭିତ୍ତିକ ଉପନ୍ୟାସ ଜଙ୍ଗଲର ଜମାନବନ୍ଦୀ, ବ୍ୟାଘ୍ରନିନାଦ, ଅରଣ୍ୟ ଅତିଥି, ଭୂମିତୃଷ୍ଣା ଓ ରକ୍ତର ରଙ୍ଗ ପାଠକ ମହଲକୁ ଚମତ୍କୃତ କରିଛି । ଏଇ ଶେଷ ଉପନ୍ୟାସ ମିଷ୍ଟର ଖରସେଲ ତାଙ୍କ ସାଫଲ୍ୟର ଆଉ ଏକ ଶିରୋପା । ସେ ଓଡ଼ିଆ ସାହିତ୍ୟର ପ୍ରଗତି ପାଇଁ ପ୍ରତିଶ୍ରୁତିବଦ୍ଧ । ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର

ପାଇଥିଲେ ମଧ୍ୟ ତାଙ୍କ କଥା ସାହିତ୍ୟ ଓଡ଼ିଶାର ପାଠକ ମହଲରେ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଛି । ତାଙ୍କର ଗଳ୍ପ ଓ ଉପନ୍ୟାସ ନିଶ୍ଚିତ ଭାବେ ଓଡ଼ିଆ ପାଠକମାନଙ୍କୁ ଏକ ନୂତନ ଜଗତକୁ ନେଇ ପାରିବ । "ସାହିତ୍ୟ ସମାଚାର" ତରଫରୁ ତାଙ୍କର ଦୀର୍ଘ ଜୀବନ କାମନା କରୁଛୁ ।

**-ସତ୍ୟବ୍ରତ ନାୟକ**

ସଂପାଦକ, ସାହିତ୍ୟ ସମାଚାର

## ଶ୍ରୀଯୁକ୍ତ ମହାପାତ୍ରଙ୍କ ପ୍ରକାଶିତ ପୁସ୍ତକ

**ଉପନ୍ୟାସ: (ଅଦ୍ୟାବଧି)**

- ପ୍ରଥମ ପ୍ରଭାତ: ୧୯୮୧
- ସତ୍ୟମ୍ ଏବ : ୧୯୮୪
- ଜୀଅନ୍ତା ଶବ: ୧୯୮୪
- ଝରେ ଶ୍ରାବଣ ଝରେ ଫଗୁଣ: ୧୯୮୮
- ତମସା ତୀର୍ଥ: ୧୯୯୩
- ଜଙ୍ଗଲର ଜମାନବନ୍ଦୀ: ୧୯୯୪
- ବ୍ୟାଘ୍ରନିନାଦ: ୧୯୯୫
- ଅରଣ୍ୟ ଅତିଥି: ୧୯୯୬
- ରକ୍ତର ରଙ୍ଗ: ୧୯୯୭
- ଭୂମିଦୃଷ୍ଟା: ୧୯୯୮
- ଓଲଟ ପାଲଟ: ୨୦୧୧
- ମିଷ୍ଟର୍ ଖର୍‌ସେଲ୍: ୨୦୧୨
- Wild Mirror : 2015

**ଗଳ୍ପ ସଙ୍କଳନ**

- ସତ ହେଲେ ବି ଗପ: ୨୦୦୧
- ଭଙ୍ଗାମୁନର ଭାଷା: ୨୦୦୫

**ସ୍ତମ୍ଭକାର**

- ମୋହନ ମାନସ (ସଂକଳିତ, ପ୍ରକାଶ ଅପେକ୍ଷାରେ)

**ଫିଚର**

- ବୃକ୍ଷ ଆମର ବନ୍ଧୁ: ୧୯୮୬

## ପୁରସ୍କାର ଓ ସମ୍ମାନ: (ଅଦ୍ୟାବଧି)

- ଚିତ୍ର ଦର୍ପଣ ସମ୍ମାନ: ୧୯୮୨, ବାଲେଶ୍ୱର
- ରାଷ୍ଟ୍ରଦୂତ ସମ୍ମାନ: ୧୯୮୪, ବାଲେଶ୍ୱର
- ବାର୍ତ୍ତା ଉର୍ମି ସମ୍ମାନ: ୧୯୮୫, ବାଲେଶ୍ୱର
- ପ୍ରତିଶ୍ରୁତି ସମ୍ମାନ: ୧୯୮୬, ବାରିପଦା
- ବାଙ୍କୀ ସାଂସ୍କୃତିକ ସମାଜ ସମ୍ମାନ: ୧୯୮୭
- ଚଲାପଥ ସମ୍ମାନ: ୧୯୯୩, ଭୁବନେଶ୍ୱର
- ଶ୍ୱେତା ସମ୍ମାନ: ୧୯୯୫, ପାରଳାଖେମୁଣ୍ଡି
- ଖୋର୍ଦ୍ଧା ସାହିତ୍ୟ ସଂସଦ ସମ୍ମାନ: ୧୯୯୫
- ମହଲ ସମ୍ମାନ: ୧୯୯୫, ଖୋର୍ଦ୍ଧା
- ସନ୍ଧାନ ସମ୍ମାନ: ୧୯୯୬, ଭୁବନେଶ୍ୱର
- ସୂଚନା ଓ ଲୋକସମ୍ପର୍କ ବିଭାଗ, ବାଙ୍କୀ (ଓଡ଼ିଶା ସରକାର) ସାହିତ୍ୟ ସମ୍ମାନ: ୧୯୯୮
- ମ୍ୟାନ ଅଫ୍ ଦି ଇଅର, ଆମେରିକାନ୍ ବାୟୋଲୋଜିକାଲ୍ ଇଷ୍ଟିଚ୍ୟୁଟ୍: ୨୦୦୦
- କଟକ ପ୍ରତିଭା ସମ୍ମାନ : ୨୦୦୧
- ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର: ୨୦୦୨
- ଚର୍ଚ୍ଚିକା ସମ୍ମାନ: ୨୦୦୨, ବାଙ୍କୀ
- ସୃଜନୀ ସମ୍ମାନ: ୨୦୦୭
- ମୟୂରଭଞ୍ଜ ସାହିତ୍ୟ ସମ୍ମାନ: ୨୦୦୭
- ବାଙ୍କୀଶ୍ରୀ ସମ୍ମାନ: ୨୦୦୮
- ଉପନ୍ୟାସ ଗୌରବ ସମ୍ମାନ: ୨୦୦୮, ପ୍ରତିଶ୍ରୁତି ପ୍ରତିଷ୍ଠାନ, ବାରିପଦା
- ଉତ୍କଳ ସହିଦ ସ୍ମାରକୀ ସମ୍ମାନ, ରଣଭୂଇଁ, ଭୁବନେଶ୍ୱର: ୨୦୧୦
- ଚର୍ଚ୍ଚିକା ସାହିତ୍ୟ ସମ୍ମାନ: ୨୦୧୧
- ଚିରସନ୍ଧାନ ଶ୍ରେଷ୍ଠଗାଳ୍ପିକ ସମ୍ମାନ: ୨୦୧୨, ପୋଖରୀପୁଟ, ଭୁବନେଶ୍ୱର
- କାର୍ତ୍ତିକେଶ୍ୱର ଫାଉଣ୍ଡେସନ ସମ୍ମାନ: ୨୦୧୨
- କଲ୍ଲୋଳ ସମ୍ମାନ : ୨୦୧୫, ଜଗତସିଂହପୁର
- ପ୍ରକୃତିବନ୍ଧୁ ପୁରସ୍କାର : ୨୦୧୬, ଇତ୍ୟାଦି ଇତ୍ୟାଦି...

# ସୃଜନର ସ୍ଫୁରଣ : ଭିନ୍ନ ପୁଲକ

ସୃଜନ ଏକ ନିଆରା କଳାତ୍ମକ ଗୁଣ ଯାହାର ସ୍ଫୁରଣ କେତେବେଳେ ଆସିଥାଏ ଠିକ୍‌ଭାବେ କୁହାଯାଇ ନ ପାରେ । ସହସ୍ର କୋଟି ଜୀବଙ୍କର ସ୍ରଷ୍ଟା-ଉଦ୍ଦେଶ୍ୟ ରହସ୍ୟମୟ । ତାକୁ କଳିବା ମନୁଷ୍ୟ ପକ୍ଷେ ସମ୍ଭବ ନୁହେଁ । ଜୀବମାନଙ୍କ ମଧ୍ୟରେ ମଣିଷକୁ ଶ୍ରେଷ୍ଠ ପ୍ରାଣୀ ବୋଲି ବିବେଚନା କରାଯାଏ । ଏଣୁ ଭାଗବତରେ କହାଯାଇଛି- 'ମନୁଷ୍ୟ ଦେହେ ଦିବ୍ୟଜ୍ଞାନ, ଦେଖି ସନ୍ତୋଷ ଭଗବାନ' । ପ୍ରତ୍ୟେକ ମଣିଷ ଦେହରେ କିଛି ଅନ୍ତର୍ନିହିତ ଗୁଣ ଓ ବିଚାର ଶକ୍ତି ମହଜୁଦ ଥାଏ । କିନ୍ତୁ ସମସ୍ତଙ୍କ କ୍ଷେତ୍ରରେ ତାହା ବିକଶିତ, ପ୍ରସ୍ଫୁଟିତ ଓ ପ୍ରକାଶିତ ହୋଇପାରି ନ ଥାଏ । କେବଳ ଅନୁଭବ ଥିଲେ ଯଥେଷ୍ଟ ନୁହେଁ, ପ୍ରକାଶନ ଶକ୍ତି ଓ ଅନ୍ତର୍ଭେଦୀଦୃଷ୍ଟି ଆବଶ୍ୟକ, ଅନୁଶୀଳନ ଓ ବିଶ୍ଳେଷଣ କଳା ଯାହାକୁ ସାରସ୍ୱତ ସୃଜନ ବୋଲାଯାଏ ।

ବୟସ ବଢ଼ିବା ସହିତ ବିକାଶ ଶକ୍ତି ବୃଦ୍ଧି ପାଇଥାଏ ଏବଂ ଏହି ଶକ୍ତି ମାତ୍ରା ଯାହାର ଅଧିକ ସେ ସେତିକି ସୃଜନର ଅଧିକାରୀ ହୋଇଥାଏ । ତାହା ଅବଶ୍ୟ ନିର୍ଭର କରେ ଅନେକ ଅବସ୍ଥା ଉପରେ, ଯଥା - (୧) ବଂଶାନୁକ୍ରମିକ ଗୁଣ, (୨) ପରିବେଶ ବା ପାରିପାର୍ଶ୍ୱିକ ଅବସ୍ଥା , (୩) ସାଧନା, (୪) ସୁଯୋଗ । ଯାହା ପାଇଁ ଏହି ଚାରୋଟି ଅବସ୍ଥା ଅନୁକୂଳ, ସୃଜନକୁ ବଳିଷ୍ଠ ଓ ପରସ୍ଫୁଟନ କରିବାରେ ତାହା ସେତିକି ସହାୟକ ହୋଇଥାଏ । ଏଇ ଦେଖନ୍ତୁ ସୃଷ୍ଟିର ସ୍ଥବିର ବୀଜଟିଏ । ନିର୍ଜୀବ ଭଳି ପଡ଼ିରହିଛି । କିନ୍ତୁ ତାହା ଭିତରେ ଅନେକ ସମ୍ଭାବନା । ସେହିପରି ଅନେକ ଚିନ୍ତା ଚେତନା ଚେଇଁଉଠେ ସୃଜନ ଓ ମସ୍ତିଷ୍କରେ କିନ୍ତୁ ସବୁଗୁଡ଼ିକ ବିକଶିତ ହୋଇପାରନ୍ତି ନାହିଁ ପରିଶେଷରେ । ବୃକ୍ଷରେ ତିଷ୍ଠିଲା ପରି ଯେଉଁ କେତୋଟି ମୁଷ୍ଟିମେୟ ଫଳ ତିଷ୍ଠନ୍ତି, ଆତ୍ମ ପ୍ରକାଶ କରନ୍ତି ତାହା ସ୍ରଷ୍ଟାର ସୃଷ୍ଟି ବୋଲି ବିବେଚିତ ହୁଏ । ସେଥିରେ ଥାଏ ଜନ୍ମଦାତାର ଆନନ୍ଦ, ଆତ୍ମତୃପ୍ତି ।

ତେବେ ଯେଉଁଦିନ ମୋର ପ୍ରଥମ ସାରସ୍ୱତ-ଶିଶୁ ଭୂମିଷ୍ଠ ହେଲା, ସୃଷ୍ଟିର ଏ ସବୁ ଅବଧାରିତ ଅବସ୍ଥା ଅତିକ୍ରମ କରି, ମୋର ସେ ଆତ୍ମତୃପ୍ତି ଓ ଅନୁଭବକୁ ଠିକ୍ ଭାବେ ପ୍ରକାଶିବା ଶବ୍ଦ ଶକ୍ତିର ଅଭାବ ଓ ଅନୁଭବ କଲି ସତେ ଯେମିତ ନିଷ୍ଫଳ ଗଛଟିଏ ଫଳ ପ୍ରସବ କରିଛି । ଭାବନାର ବାହକ ଶବ୍ଦ ମନର ଭାବକୁ ଶହେ ଶତାଂଶ ପ୍ରକାଶିବାକୁ ମୋର ଆୟତ ଶବ୍ଦ ହୁଏତ ଯଥେଷ୍ଟ ନଥିଲା । ତଥାପି କିଛି ରହିଯାଏ ଅକୁହା, ଉହ୍ୟ ଶବ୍ଦ ଭିତରେ । ଲୋଡ଼ାହୁଏ ଉହ୍ୟକୁ ବୁଝାଳା ଭଳି ଶବ୍ଦଟିଏ, ଆଉ ସେହି ଶବ୍ଦ ପଛରେ ଧାଇଁ ଧାଇଁ ହୋଇଯାଏ ଅଣାୟତ । କିନ୍ତୁ ଯେତେବେଳେ ଲୋଡ଼ା ଶବ୍ଦଟିଏ ଧରାଦିଏ ବା ବ୍ୟବହୃତ ଶବ୍ଦ ପୁଞ୍ଜ ପରିବର୍ତ୍ତେ ନୂତନ ଶବ୍ଦାବଳୀ ମିଳିଯାଏ, ଆତ୍ମତୃପ୍ତିର ସୀମା ନଥାଏ, ଏହି ଶବ୍ଦ ଅନ୍ୱେଷଣ ମସ୍ତିଷ୍କ ଓ ମନକୁ ମାଡ଼ିବସେ, ଆକ୍ରାନ୍ତ କରେ, ବହୁ ସମୟ ବ୍ୟୟିତ ହୁଏ, ତଲ୍ଲୀନତା ମୋଟେଇଯାଏ । ମନଚାହିଁ ଶବ୍ଦର ଯେ ଯେତେ ଅଧିକାରୀ, ସେ ସେତେ ସଫଳ ଲେଖକ

ବୋଲି ମୋର ବିଚାର ଓ ମତ । କହିଗଲା ପରେ ଯାହା ବାକି ରହିଲା ବୁଝିବାକୁ ସେହି ପାଠକୀୟ ବୁଝାଶକ୍ତିରେ ଥାଏ ଲେଖକର ପରିଭାଷା ଓ ସାଫଲ୍ୟ । କହିବାକୁ ଦ୍ୱିଧା ବା ସଙ୍କୋଚ କରୁନାହିଁ ଯେ, ଲେଖକ ତା ସୃଷ୍ଟି-ସୃଜନର ବୋଧହୁଏ ପ୍ରଥମ ପାଠକ ।

ଜୀବନର ପ୍ରଥମ ସୃଜନର ଅନୁଭବର ଗୋଟିଏ ତୁଳନା ଦେଇ କହିଲେ ହୁଏତ ପ୍ରକାଶର ପାଖାପାଖି ହୋଇପାରେ। ମୋ ଅନୁଭୂତିଟି ଯେମିତି ପ୍ରଥମେ କୁମାରୀ ଗର୍ଭରେ ଭ୍ରୂଣାଙ୍କୁର-କମ୍ପନ ଶିହରଣ କଲାଭଳି। କହିଛି, ସ୍ୱର୍ଗୀୟ ସେ ଅନୁଭବ । ପୁସ୍ତକଟି ମୁଦ୍ରିତ ନ ହେଲା ପର୍ଯ୍ୟନ୍ତ ଗର୍ଭଧାରିଣୀ ମାଆର ଯେଉଁ ଅନୁଭବ ଓ ଅବସ୍ଥା, ପ୍ରତିକ୍ଷଣରେ ଗର୍ଭପାତର ଆଶଙ୍କା ସବୁବେଳେ ଢାଙ୍କି ରହିଥାଏ । ସବୁଗୁଡ଼ିକର ଅବସାନ ଘଟେ ଆତ୍ମପ୍ରକାଶ ଓ ଲୋକାର୍ପଣର ସେହି ମାହେନ୍ଦ୍ର ମୁହୂର୍ତ୍ତରେ । ବହୁଦିନ ପର୍ଯ୍ୟନ୍ତ ମାନସ ସନ୍ତାନର କୁଆଁ କୁଆଁ ଶବ୍ଦ କାନରେ ଗୁଞ୍ଜରି ଉଠେ ଶୟନେ, ସପନେ, ଜାଗରଣରେ ଯାହା ପରବର୍ତ୍ତୀ ଆଗମୀ ସନ୍ତାନଗୁଡ଼ିକୁ ଆମନ୍ତ୍ରଣ କରିବାରେ ପ୍ରଚୁର ପ୍ରେରଣା ଦିଏ । ମୋର ମନେ ଅଛି, ମୋର ଚତୁର୍ଥ ଉପନ୍ୟାସ 'ତମସା ତୀର୍ଥ'ର ନାଭିଛେଦନ ଓ ଲୋକାର୍ପଣ ଉତ୍ସବ ଅବସରରେ ଉଦ୍‌ଘାଟକ ସ୍ୱନାମଧନ୍ୟ ମହନାନୁଭବ ଲେଖକଔପନ୍ୟାସିକ ଚନ୍ଦ୍ରଶେଖର ରଥ ମହାଶୟ କହିଥିଲେ, 'ଆଶୀର୍ବାଦ କରୁଛି, ଲେଖକ ରାଧାମୋହନ ବାବୁଙ୍କ ପ୍ରତି ପରିବାର ସଙ୍କୋଚନ ନୀତି ଲାଗୁ ନ ହେଉ କେବେ । ସେ ଶତପୁତ୍ରର ଜନକ ହୁଅନ୍ତୁ...'। ଏହା ୧୯୯୩ ସାଲ କଥା । ଇତିମଧ୍ୟରେ ୨୧ବର୍ଷ ବିତିଯାଇଛି । ବୟସ ବର୍ତ୍ତମାନ ୬୯ । ଏ ଜୀବ କାଳରେ ଶତକ ସଂଖ୍ୟା କ'ଣ ଛୁଇଁବା ସମ୍ଭବ କେବେ ? ଚନ୍ଦ୍ରଶେଖର ବାବୁ ମୋର ଶିକ୍ଷକ-ଗୁରୁ। କହନ୍ତି, ଗୁରୁବାଣୀ ହୁଏନି ଅନ୍ୟଥା । କାରଣ ଗୁରୁ ବ୍ରହ୍ମା, ଗୁରୁ ବିଷ୍ଣୁ, ଗୁରୁଦେବ ମହେଶ୍ୱର... । ତେବେ ? ପୁନଶ୍ଚ ଘଟଣାଚକ୍ରରେ ଅକ୍ଟୋବର ୨୦୦୧ରେ ମୋ ଜନ୍ମସ୍ଥାନ ବାଙ୍କୀ ମାଟିରେ ମୋତେ ଚର୍ଚ୍ଚିକା ସମ୍ମାନରେ ସମ୍ବର୍ଦ୍ଧିତ କରିଥିଲେ ମୋର ପ୍ରିୟ ବାଙ୍କିବାସୀ । ଏହି ପରିପ୍ରେକ୍ଷୀରେ ମୋର ଗଳ୍ପ ସଙ୍କଳନ 'ସତ ହେଲେ ବି ଗପ' ଉନ୍ମୋଚନ କରିବାର ସୁଯୋଗ-ସୌଭାଗ୍ୟ ଉପସ୍ଥିତ ହୋଇଥିଲା । ପୁଣି ପୁସ୍ତକଟିକୁ ଉନ୍ମୋଚନ ଓ ଲୋକାର୍ପିତ କରିଥିଲେ ମୋର ସେଇ ପୂଜ୍ୟ ଗୁରୁ ଚନ୍ଦ୍ରଶେଖର ବାବୁ । ଏହି ଅବସରରେ ଆଜି ମୁଁ ସ୍ମରଣ କରାଇ ଦେଇ କହୁଛି, 'ରଥେ ତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ଭବେତ୍'କୁ । ମୁଁ ଅସ୍ୱୀକାର କରି ପ୍ରକାଶୁଛି ଯେ ଗୁରୁବାଣୀ କେବେ ଅସତ୍ୟ ହୁଏ ନାହିଁ କାରଣ ସେ ଭଗବାନ ସଦୃଶ । ଯଦି ଶତ ସଂଖ୍ୟା ପହଞ୍ଚିବାକୁ ଏ ଜୀବନରେ ସମ୍ଭବ ହୁଏ ନାହିଁ, ତେବେ ମୋର ଏହି ପୁଣ୍ୟ ଓଡ଼ିଶା ମାଟିରେ ମୁଁ ବାରମ୍ବାର ଜନ୍ମନେବାକୁ ଇଚ୍ଛା କରୁଛି ଗୁରୁବାଣୀ ପୂର୍ଣ୍ଣ ହେବା ପର୍ଯ୍ୟନ୍ତ । ସାରସ୍ୱତ ଅଭିଯାନର ପରିସମାପ୍ତି ସେଇ ଶତକ ସଂଖ୍ୟାରେ- ଲେଖକର ଅନ୍ତିମ ଇଚ୍ଛା-ଅଭିଳାଷ ।






ପୁସ୍ତକ ନାମ : ମିଷ୍ଟର ଖରସେଲ୍

ପ୍ରକାଶକ : ପ୍ରତିଭା ମହାପାତ୍ର, ୧୪୭, ବୁଦ୍ଧେଶ୍ୱରୀ, ଭୁବନେଶ୍ୱର-୬

ପ୍ରକାଶ କାଳ : ୨୦୧୨

ପୃଷ୍ଠା : ୨୭୨

ପ୍ରଚ୍ଛଦ : ପ୍ରତିଭା ମହାପାତ୍ର

ମୂଲ୍ୟ : ୨୫୦/-

# ମିଷ୍ଟର ଖରସେଲ୍

Forest facts and animal behaviours are sometimes stranger than fictions, fantasies and human imaginations.

**- *Writer***



ଜାଙ୍ଗଲିକ ଘଟଣା ଏବଂ ବନ୍ୟ ଅଧିବାସୀ ତଥା ପ୍ରାଣୀ ସମୂହଙ୍କ ଚିତ୍ର-ଚରିତ୍ର ବେଳେବେଳେ ମଣିଷ କଳ୍ପନଠାରୁ ଅଧିକ ବିସ୍ମୟକର ମନେହୁଏ।

*-ରାଧାମୋହନ ମହାପାତ୍ର*

Saroj Kumar Pattnaik, I.F.S.
Former Director, Nandankanan
Former P.C.C.F & Chief Wild Life Warden
Now Member, Central Empowerment Committee, New Delhi

# Opinion on manuscript of jungle novel 'Mr. Kharsel' written by novelist Mr. Radha Mohan Mohapatra

I was indeed spell bound to read the manuscript ' Mr. Kharsel , a unique fact-cum-fiction creation of Sir Radha Mohan Mohapatra. Though he served his entire career in the Finance service, his love for nature and all its living elements has given his unique insight into the behaviour of different wild animals and their interaction with humans. Though Kharsel is a true life elephant, who was rescued from being eliminated , the author has combined his history which he collected painstakingly with his own imagination and literary skill to make him a hero and the central character of this book. He has also been able to bring out character of few individuals in deep interiors of this state.

I had the opportunity to go through few more works of Sir Mohapatra on forest and its inmates, which are indeed very absorbing reading and great contribution to Odia literature on the subject, as there are very few such publications available to nature loving readers.

Fortunately, I was very deeply associated with capture of Kharsel from the Kharsel Forest Block of Bolangir Forest Division, his transfer to Chandka training and again transfer to Debrigarh Wildlife sanctuary. Kharsel is an animal asset of the Forest Department. He is doing great job in forest protection work.

I hope this book shall be widely distributed and circulated which shall create empathly among public for nature and its wildlife.

*Sd/-*

***Saroj Kumar Pattnaik***

[ଶ୍ରୀ ରାଧାମୋହନ ମହାପାତ୍ରଙ୍କର ଘଟଣା ଓ କଳ୍ପନାସୃଷ୍ଟ ' ମିଷ୍ଟର ଖରସେଲ୍'ର ପାଣ୍ଡୁଲିପି ପଢ଼ି ମୁଁ ପ୍ରକୃତରେ ମନ୍ତ୍ରମୁଗ୍ଧ ହୋଇଥିଲି । ଯଦିଓ ସେ ନିଜର ସମ୍ପୂର୍ଣ୍ଣ ଚାକିରିକାଳ ଓଡ଼ିଶା ଅର୍ଥ ସେବାରେ କଟାଇଥିଲେ, ପ୍ରକୃତି ଓ ତା'ର ଜୀବମଣ୍ଡଳ ସମ୍ବନ୍ଧରେ ତାଙ୍କର ସ୍ନେହ ଶ୍ରଦ୍ଧା ତଥା ଗଭୀର ଅନୁଧ୍ୟାନ, ବଣ୍ୟପ୍ରାଣୀମାନଙ୍କର ବ୍ୟବହାର ଓ ସେମାନଙ୍କ ମାନବ ସମାଜ ସହିତ ସମ୍ପର୍କ, ପ୍ରଚୁର ଅନ୍ତଃଦୃଷ୍ଟି (insight) ଦେଇପାରିଛି। ଖରସେଲ୍, ଯେକି ଏକ ପ୍ରକୃତ ଜୀବନ୍ତ ପୁରୁଷ ହାତୀ, ଯାହାକୁ ମାରିଦେବାର ପରିସ୍ଥିତିରୁ ଉଦ୍ଧାର କରାଯାଇଥିଲା, ତା'ରି ଜରିଆରେ ଲେଖକ ଅତ୍ୟନ୍ତ କଷ୍ଟ ସ୍ୱୀକାର କରି ତା'ର ସଂଗୃହୀତ ଇତିହାସ ସହିତ ନିଜର ପରିକଳ୍ପନା ଓ ସାହିତ୍ୟିକ ପ୍ରତିଭା ମିଶାଇ, ତାକୁ ଏହି ଉପନ୍ୟାସର ନାୟକ ଓ କେନ୍ଦ୍ରୀୟ ଚରିତ୍ର କରି ଗଢ଼ି ତୋଳିଛନ୍ତି । ସେ ମଧ୍ୟ ଓଡ଼ିଶାର ଅତ୍ୟନ୍ତ ଅଗମ୍ୟ ଅଞ୍ଚଳର କେତେକ ବ୍ୟକ୍ତିଙ୍କର ବ୍ୟକ୍ତିତ୍ୱ ଓ ଚରିତ୍ରକୁ ନିଖୁଣ ଭାବେ ବର୍ଣ୍ଣନା କରିଛନ୍ତି।

ମୁଁ ଶ୍ରୀ ମହାପାତ୍ରଙ୍କର ବନ ଓ ବନବାସୀ ପ୍ରାଣୀଙ୍କ ଉପରେ ଆଉ କେତେକ ସୃଷ୍ଟିକୁ ଜାଣିବାର ସୁଯୋଗ ପାଇଥିଲି, ଯାହାକି ପ୍ରକୃତରେ ଅତ୍ୟନ୍ତ ମନୋନିବେଶଯୋଗ୍ୟ (absorbing), ସୁଖପାଠ୍ୟ ଏବଂ ଏହି ବିଷୟରେ ଓଡ଼ିଆ ସାହିତ୍ୟକୁ ମହାନ୍ ଅବଦାନ, କାରଣ ଏହି ବିଷୟରେ ପ୍ରକୃତିପ୍ରେମୀ ପାଠକଙ୍କ ପାଇଁ ସେପରି ଖୁବ୍ କମ୍ ପ୍ରକାଶନ ରହିଛି ।

ସୌଭାଗ୍ୟ ବଶତଃ, ମୁଁ ବଲାଙ୍ଗୀର ବନଖଣ୍ଡ ଖରସେଲ୍ ଜଙ୍ଗଲ ବିଭାଗ (Forest Block)ରେ ଖରସେଲ୍‌କୁ ଧରିଯିବା, ତାକୁ ଚନ୍ଦକାକୁ ଅଣାଯିବା, ସେଠାରେ ତାର ତାମିଲ ଓ ଗୋଡ଼ିବାଡ଼ିରୁ ପୁଣିଥରେ ଦେବ୍ରିଗଡ଼ ଅଭୟାରଣ୍ୟକୁ ପଠାଇବା ସହିତ ନିବିଡ଼ ଭାବେ ସଂଶ୍ଲିଷ୍ଟ ଥିଲି। ବର୍ତ୍ତମାନ ସେ ବନ ବିଭାଗର ଏକ ମୂଲ୍ୟବାନ ପ୍ରାଣୀ ସଂପଦ, ବନ ସୁରକ୍ଷା କାମରେ ନୟୋଜିତ।

ମୁଁ ଆଶାକରେ ଏହି ପୁସ୍ତକଟି ବହୁଳ ଭାବେ ପ୍ରସାରିତ,ପ୍ରଚାରିତ ହୋଇ ପ୍ରକୃତି ଓ ତାର ବନ ଜୀବନଙ୍କ ପ୍ରତି ଜନସାଧାରଙ୍କ ଠାରେ ସମ୍ବେଦନା ସୃଷ୍ଟି କରିବ।

-ସରୋଜ କୁମାର ପଟ୍ଟନାୟକ
ପୂର୍ବତନ ନିର୍ଦ୍ଦେଶକ, ନନ୍ଦନକାନନ,
ପୂର୍ବତନ ୱାଇଲଡ ଲାଇଫ୍ ୱାର୍ଡେନ୍, ଓଡ଼ିଶା]

'ଅ' ଠୁଁ 'କ୍ଷ' ବର୍ଣ୍ଣରେ ଜଙ୍ଗଲ, ପରିବେଶ ଓ ପ୍ରାଣୀଜଗତର ସୁରକ୍ଷା ଉପରେ ଲିଖିତ ମିଷ୍ଟର ଖରସେଲ୍‌ର ଇତିବୃତ୍ତ କବିତା ମାଧମରେ:

ଅଭିନନ୍ଦନ ଘେନିବ ହେ ସ୍ରଷ୍ଟା କାହାଣୀକାର 'ମୋହନ' !
କବିତା ଛଳରେ ଅଭିମତଟିଏ ଲେଖୁଅଛି ଦେଇ ଧ୍ୟାନ ।
ଆଜୀବନ ତୁମେ କରିଛ ସାଧନା କଥା ସାହିତ୍ୟକୁ ନେଇ
ଏଯେଉଁ ଆଖ୍ୟାନ କରିଗଲ ସୃଷ୍ଟି ଜଗତେ ତୁଳନା ନାହିଁ ।
ଇଚ୍ଛାମୟଙ୍କର ଇଚ୍ଛା-ଆଶୀର୍ବାଦେ ହୋଇଣ ପରିଚାଳିତ
ଜଙ୍ଗଲ କାହାଣୀ ସହ ସଂଯୋଜିତ କରିଲ ଆତ୍ମଚରିତ ।
ଈଦୃଶ ଭାବନା ଅଭିନବ ସିନା କରିଛ ଉପସ୍ଥାପନ
ପାଠକେ ନିଶ୍ଚୟ କରିବେ ସେଥିରୁ ମୂଲ୍ୟବୋଧ ଆସ୍ୱାଦନ ।
ଉତ୍ସୁକତା ମଧ୍ୟେ ପାଠକ ରହିବ ଆରମ୍ଭରୁ ଶେଷ ଯାଏଁ
ନାମକରଣରୁ ଖୋଜି ଚାଲିଥିବ 'ମିଷ୍ଟର୍ ଖରସେଲ୍' କିଏ ?
ଉର୍ଜ୍ୱସଳ ତୁମ ଭାଷାର ଚାତୁରୀ, ବଳିଷ୍ଠ ଶବ୍ଦ ବିନ୍ୟାସ ।
ବର୍ଣ୍ଣନାର ଚମତ୍କାରିତା କରିଛ ସୁଖପାଠ୍ୟ ଉପନ୍ୟାସ ।
ଋଷି ନୁହେଁ ତମେ ଅଟ ଋଷିକଳ୍ପ କେମିତି ଭାବନା ନେଲ
କାହାଣୀକୁ କିଏ ଡାକିଦେଲା କାନେ, ଲେଖିଲ ବୋଲି କହିଲ ।
ଏତେବଡ ଇଚ୍ଛା ଥିଲା ତୁମ ମନେ କେ କଳିବ ଆଦିଅନ୍ତ
ଐରାବତ ହସ୍ତୀ ଜୀବନକୁ ନେଇ ରଚିଲ ମହାନ ଗ୍ରନ୍ଥ !
ଓଡିଆ ଭାଷାରେ ଅରଣ୍ୟ-କାହାଣୀ ନାହିଁ ବୋଲି କହୁନାହିଁ
ତୁମର କାହାଣୀ ସ୍ୱତନ୍ତ୍ର ମର୍ଯ୍ୟାଦା ଲଭି ହେବ କାଳଜୟୀ ।
ଔପନ୍ୟାସିକର ଗୁଣ ଧର୍ମ ଯାହା ବଜାୟ ରଖିଛ ଭାବ
ରୋମାଞ୍ଚରେ ପୂର୍ଣ୍ଣ ପ୍ରତିଟି ଅଧ୍ୟାୟ ସତେ ବିଚିତ୍ର ବିଭବ !
କଥା-କାରିଗର ଏମିତି ଖଞ୍ଜିଲ କଥା ସହ ଉପକଥା
କଲମ ମୁନରେ ଫୁଟାଇ କମାଣ କହିଗଲ ଆତ୍ମଗାଥା-
'ଖରସେଲ୍' ପାଇଁ ଏତେ ଯେ ଦରଦ ଢ଼ାଳିଦେଲ ମନପ୍ରାଣ
ନ୍ୟାୟ ଜଗତରେ କଲ ପ୍ରତିଷ୍ଠିତ ହସ୍ତୀ ସେ ଯେ ଅନୁଷ୍ଠାନ ।
ଗଛ ଛନ ଛନ ଗହନ ବନର ଆକର୍ଷଣେ ଭୁଲି ହୋଇ
ଅରଣ୍ୟ ସଂସ୍କୃତି ପୃଷ୍ଠଭୂମି ପରେ ଛିଡା କଲ ତାକୁ ନେଇ ।

ଘଟଣା ବହୁଳ ତା' ଜୀବନ ଗାଥା ଅନ୍ତରକୁ ନେଲା କିଣି
ହାତୀ ଓ ମଣିଷ ଏକାତ୍ମତା ଭାବ ପାରୁନାହୁଁ ଆମେ ଜାଣି ?
ଚରାଭୂଇଁଠାରୁ ନ୍ୟାୟଳୟ ଯାଏଁ ମାନବୀୟ ଆବେଦନ-
ଚାଞ୍ଚଲ୍ୟ ଖେଳାଇ ଫୁଟାଇ ଦେଇଛ ପଶୁ ପ୍ରୀତିର ସୁମନ ।
ଛାଇ ଆଲୁଅର ଲୁଚକାଳି ଖେଳ ଭିତରେ ଜୀବନ ଲିପି
ଲେଖିଗଲ ସ୍ରଷ୍ଟା ଅଙ୍ଗେନିଭା କଥା ପଶୁ ଜୀବନକୁ ମାପି ।
ଜୀବନ ଯୁଦ୍ଧରେ ହେ ସଂଗ୍ରାମୀ ସେନା ଗଣିନ କେବେ ପ୍ରମାଦ
ଯାଇ ନାହଁ କେବେ ଅନୁସରିବାକୁ କାହାରି ସୃଷ୍ଟି ସମ୍ପଦ ।
ଜନରବ କେତେ ନ ଉଠିଲା ସତେ 'ଖରସେଲ୍' ଜୀବନ ନେଇ
ଜନ୍ମ ଅଧିକାର କରିଲ ସାବ୍ୟସ୍ତ ଲଢ଼ି ଜିମାଦାର ହୋଇ ।
ଝୁଣ୍ଟିପଡିନାହଁ ସଂଗ୍ରାମ ପଥେ ଅଧ୍ୟାୟ ପରେ ଅଧ୍ୟାୟ
ବାଢ଼ିଲ ଏମିତି ଯୁକ୍ତି ତା' ସପକ୍ଷେ ହୋଇଲା ସେ ବନ୍ଦନୀୟ ।
ଟାଣପଣ କେବେ ହୋଇନାହିଁ ଊଣା ବିଚିତ୍ର ବର୍ଣ୍ଣନା ଶୈଳୀ
ଟୀକା ଟୀପ୍ପଣିରେ ଭରା ତୁମ ଲେଖା କେତେ ଯେ ଢଗଢମାଳି ।
ଠୁଳ କରିଅଛ ଉପନ୍ୟାସ ମଧ୍ୟେ ଲାଗେ ବିରଳ ସର୍ଜନା
ଉତ୍କଣ୍ଠାରେ ପୂର୍ଣ୍ଣ କାହାଣୀ ପ୍ରବାହ ସୃଷ୍ଟିକରେ ଉନ୍ମାଦନା ।
ଡଉଲ ଡାଉଲ ଶଙ୍କର ବେଟାକୁ ଅସୀମ ଶକତି ଦେଇ
ପ୍ରଭୁଭକ୍ତ ଭାବେ ଛିଡା କରାଇଲ ରବୀନ୍ଦ୍ରର ମୁକ୍ତି ପାଇଁ ।
ଢଳଢଳ ତା'ର ସରଳ ଚାହାଣୀ ନେଲା ପୁଣି ଉଗ୍ର ରୂପ
ପ୍ରତିଶୋଧ ବହ୍ନି ଜଳିଲା ତା' ମନେ ବଢ଼ିଲା ତା'ଠାରେ କୋପ ।
ତଥ୍ୟ ତ ଅନେକ, କି ବର୍ଣ୍ଣିବି ଅବା ଶଙ୍କର ବେଟାର ଗୁଣ
ମଣିଷ ପଣିଆ ଭୁଲିଛି ମଣିଷ ପଶୁ କିନ୍ତୁ ବ୍ୟତିକ୍ରମ !
ଥଇଥାନ ପାଇଁ ନନ୍ଦନକାନନ ହେଲା ତା' ଆଶ୍ରୟ ଧାମ
ଉଚ୍ଚ ନ୍ୟାୟାଳୟେ ସରକାରଙ୍କର ବୁଦ୍ଧି ହୋଇଗଲା ବାମ !
ଦରଦ ତା ପାଇଁ ଝରିଗଲା ସିନା ଫୁଲ ଚନ୍ଦନର ମାଳା ।
ମୁକୁଳା ଜୀବନ ବିତାଇଲା ସିଏ ମୁକ୍ତିର ଆନନ୍ଦ ଶାଳା ।
ଧନୀ-ମାନୀ-ଗୁଣୀଠାରୁ ବଡ କଲ ତାକୁ ହେ ସ୍ରଷ୍ଟା ମୋହନ
'ଜୀବେ ଦୟା' ବ୍ରତେ ହୋଇ ଦୀକ୍ଷିତ କଲ ତାକୁ ମହୀୟାନ ।

ନିରୀହ ନୀତିଜ୍ଞ କନ୍ଧ ସୁବଳକୁ ଦେଲ ପୁଣି ଉଚ୍ଚାସନ
ପ୍ରମାଣିତ କଲ ଭାଗ୍ୟ-ଭଗବାନ ସମୟତ ବଳବାନ ।
ପମାଣିତ କଲ ଭାଗ୍ୟ-ଭଗବାନ ସମୟ ତ ବଳବାନ।
ପଶୁହନ୍ତା ହାତୁ ଖସିଲା ବନ୍ଧୁକ କେଡ଼େ ସେ ବିଚିତ୍ର କଥା
ପାରିଲାନି ଜିଣି ମରଣ ତା' ଆଗେ ନୁଆଇଁ ଦେଲା ସେ ମଥା ।
ପର୍ଯ୍ୟବେକ୍ଷଣର ଦୃଷ୍ଟିଭଙ୍ଗୀ ତବ ଲେଖାରେ ସମ୍ପ୍ରସାରିତ
ପଶୁ ହୋଇ ମଧ ଚେତାଇ ଦିଅନ୍ତି ଶୁଭ ଅଶୁଭ ସଙ୍କେତ ।
ଫିଟାଇ ଦେଇଛ କଥା ଓ ଲଥାର କେତେ ଯେ ଗୁମର ପେଡ଼ି
ଦେଇଛ ପ୍ରେରଣା ସଂସ୍କାରର ପଥ ମଣିଷ ନ ଯାଉ ହୁଡ଼ି ।
ବହି-ବନ୍ଧୁକର ମିତ ସାଜିଅଛ ଶବ୍ଦଗୁଳା ଯାଦୁକର
କିମିଆ କରିଛ କେତେ ଯେ ମନକୁ ହେ ନମସ୍ୟ କଥାକାର ।
ବଂଶୀଧାରୀ ତୁମେ ସ୍ୱର-ଲହରୀରେ ଯଥାର୍ଥ କରିଛ ନାମ
ତ୍ରିବେଣୀ ସଙ୍ଗମ ଘଟିଛି ଜୀବନେ ତୁମେ ଶ୍ରୀରାଧାମୋହନ ।
ବହୁ ଗବେଷଣା ତର୍ଜମା ବିଷୟ କରିଛ ଲେଖାରେ ଠୁଳ
ଧନ୍ୟ ତୁମ ଶ୍ରମ ଧନ୍ୟ ସେ ସାଧନା, କେ ଦେଇପାରିବ ମୂଲ ?
ଭୂତୁଣୀ ହାତୀର ବିରଳ ଜୀବନ ବୃତ୍ତାନ୍ତ ଶୁଣାଇ ଗଲ
ସୁବଳର ଗଜ ଉଦ୍ଧାର କାହାଣୀ ଲେଖି ସ୍ତମ୍ଭୀଭୂତ କଲ ।
ମଣିଷଠୁଁ ଶ୍ରେୟସ୍କର ମନେ କରି ଜୀବକୁ ନକରି ଛୋଟ
ସେହିମାନେ ପରା ସୃଷ୍ଟିର ରକ୍ଷକ ବିପଦେ ଦେଖାନ୍ତି ବାଟ ।
ମଣିଷମୟ ଏ ଜଗତ ଭିତରେ ନାହିଁ ପଶୁଙ୍କର ସ୍ଥାନ
ମୃତ୍ୟୁକୁ ନଡରି ଅଣ୍ଟା ଭିଡିଛନ୍ତି ନତୁବା ହେବେ ନିଶ୍ଚିହ୍ନ ।
ଯତ୍ନ ସହକାରେ ବିବିଧ ଚରିତ୍ର କାହାଣୀରେ ଖଞ୍ଜିଦେଲ
'ନାଥଶର୍ମା'ଠାରୁ 'ଅନ୍ୱାର ଅଲ୍ଲା' ଶେଷ ପୁଣି 'ଖରସେଲ୍' ।
ରକ୍ଷାକର୍ତ୍ତା ସିନା ଜଗତ କରତା ସବୁତ ତାଙ୍କ ସୃଜନ
ରଚନା ଯା'ର ଦୁର୍ବୋଧ୍ୟ ଅଟଇ କେ କରିବ ଆକଳନ ।
ଲେଖନୀରେ ତୁମ ପୁରାଣ, ଧର୍ମ, ସଂସ୍କୃତି, ଲୋକବିଶ୍ୱାସ
ଚିକିତ୍ସା ବିଜ୍ଞାନ, ଦର୍ଶନ ତତ୍ତ୍ୱ ଯୋଡ଼ି ପୁଣି ଇତିହାସ ।
ଲକ୍ଷ୍ୟ ତୁମର ହୋଇଛି ସଫଳ ବାର୍ତ୍ତା ଦେଇ ସମାଜକୁ
ପରିବେଶ ଭାରସାମ୍ୟ ରକ୍ଷାହେଉ ସୁରକ୍ଷା ଦେଇ ଜନ୍ତୁକୁ ।

ବଧ କରିବାନି ଜଙ୍ଗଲ ଜୀବକୁ ଦେଖାଇବା ସ୍ନେହ ପ୍ରୀତି
ଆଗାମୀ ପୃଥିବୀ ତିଷ୍ଠି ରହିବାର ଏହା ତୁମ ଅଭିବ୍ୟକ୍ତି ।
ଶିକାରକୁ ଭୁଲି ଜଙ୍ଗଲ ଜୀବକୁ ଏତେ ଆପଣାର କଲ
ସୁରକ୍ଷା ନିମନ୍ତେ ଆତ୍ମା ତୁମର ହୋଇଉଠିଛି ବ୍ୟାକୁଳ ।
ଷଡ଼ଭିଜ୍ଞ ଭଳି ବହୁ ଅଭିଜ୍ଞତା ବହୁ ସତ୍ୟ-ତଥ୍ୟ କଥା
ଅଜାଡି ଦେଇଛ ଉପନ୍ୟାସ ମଧ୍ୟେ ହୃଦୟ ବେଦନା ବ୍ୟଥା ।
ସାରଳାଙ୍କ ମହାଭାରତ ଅଟଇ ଏ ଜାତିର 'ବିଶ୍ୱକୋଷ'
ବିଶ୍ୱ ଜନତାଙ୍କ ଆଖି ଖୋଲିଦେବ ତୁମର ଏ ଉପନ୍ୟାସ ।
ସାମ୍ପ୍ରତିକ ପରିବେଶ,ପରିସ୍ଥିତି ବିଶ୍ୱକୁ କରିଛି ନିଃସ୍ୱ
ବିଶ୍ୱ ଦରବାରେ ଦିଗ୍‌ଦର୍ଶନ ଦେବ ତୁମ କୃତି-ଇତିହାସ ।
ହେ ସ୍ରଷ୍ଟା ମୋହନ, କଥା-ସାହିତ୍ୟରେ ଅପୂର୍ବ ତୁମର ସୃଷ୍ଟି
ଏମିତି ସର୍ଜନା ସମ୍ଭବ ସିନା କୃପାକଲେ ପରମେଷ୍ଠି !
କ୍ଷମାର ସାଗର ସେ ପରମେଶ୍ୱର ଅପାର କରୁଣା ଲଭି-
ଲେଖନୀ ତୁମର ସାର୍ଥକ ହେଉ, ଖରସେଲ୍ ଦୀର୍ଘଜୀବୀ ।

-ବୈକୁଣ୍ଠନାଥ ଶତପଥୀ
ଇନଷ୍ଟିଚ୍ୟୁଟ ଅଫ ସାଇନ୍ସ
ଆଣ୍ଡ ଟେକ୍ନୋଲୋଜି, ବାଲେଶ୍ୱର

◆



# ଶତାବ୍ଦୀର ଅନ୍ୟତମ ଶ୍ରେଷ୍ଠ ଉପନ୍ୟାସ: 'ମିଷ୍ଟର ଖରସେଲ୍'

- ଜାନକୀ ବଲ୍ଲଭ ପଟ୍ଟନାୟକ
ମାନ୍ୟବର ଆସାମ ରାଜ୍ୟପାଳ

ସ୍ଥଳଭାଗର ବୃହତ୍ତମ ଜୀବ ହାତୀର ଜୀବନଶୈଳୀକୁ ଅତି ଚମତ୍କାର ଭାବେ ଚିତ୍ରଣ କରାଯାଇଛି ଔପନ୍ୟାସିକ ରାଧାମୋହନ ମହାପାତ୍ରଙ୍କ ୧୪ତମ ଉପନ୍ୟାସ "ମିଷ୍ଟର ଖରସେଲ୍" ମାଧ୍ୟମରେ । ଏହି ଉପନ୍ୟାସକୁ ଆସାମ ରାଜ୍ୟପାଳ ତଥା ବିଶିଷ୍ଟ ସାହିତ୍ୟବିତ୍ ଜାନକୀ ବଲ୍ଲଭ ପଟ୍ଟନାୟକ ଲୋକାର୍ପିତ କରି ଜଙ୍ଗଲ ଓ ଜନ୍ତୁ ସମ୍ବନ୍ଧୀୟ ଏହା ଏକ ଅନନ୍ୟ, ଅନୁପମ ବୋଲି ମତବ୍ୟକ୍ତ କରି କହିଥିଲେ ଯେ, ଏପରି ଏକ ବିରଳ ଉପନ୍ୟାସ ଓଡ଼ିଆ ଭାଷାରେ ସୃଷ୍ଟି ହୋଇଥିବାରୁ ଏହାକୁ ଲୋକାର୍ପିତ କରିବାର ସୁଯୋଗକୁ ହାତଛଡା କରିଥିଲେ ଜୀବନରେ ହୁଏତ ଏକ ଅବଶୋଷ ଓ ଅଭାବବୋଧ ହୋଇଥାନ୍ତା । ଦେଶ କ୍ରମଶଃ ବନ ବିରଳ ଓ ଜନ ବହୁଳ ହେଉଥିବାରୁ ଆଜି ବନ୍ୟଜୀବ ସଂପୂର୍ଣ୍ଣ ବିପର୍ଯ୍ୟସ୍ତ । ମଣିଷମୟ ପୃଥିବୀରେ ବନ ଓ ବନ୍ୟଜନ୍ତୁ ପ୍ରକୃତି-ପରିବେଶର ଏକ ଅବିଚ୍ଛେଦ୍ୟ ଅଙ୍ଗ । ମଣିଷ ସେମାନଙ୍କ ସୁରକ୍ଷା ପାଇଁ ସଚେତନ ନ ହେଲେ, ଭବିଷ୍ୟତରେ ଏହି ଐତିହ୍ୟ ପ୍ରାଣୀ ନିଶ୍ଚିହ୍ନ ହୋଇଯିବାର ଆଶଙ୍କା ଉପସ୍ଥିତ ହେଲାଣି ଯାହାକି ଏହି ଉପନ୍ୟାସର ଅନ୍ତର୍ବାଣୀ । କେବଳ ହାତୀ ନୁହେଁ, ପ୍ରତ୍ୟେକ ବନ୍ୟଜନ୍ତୁକୁ ସୁରକ୍ଷା ଦେବା ସାହିତ୍ୟ ରଚନା ମଧ୍ୟରେ ରାଧାମୋହନ ବାବୁଙ୍କ ସାରସ୍ୱତ ଉଦ୍ୟମ ପ୍ରଶଂସନୀୟ । ଏହିପରି ଘଡ଼ିସନ୍ଧି ବେଳେ ଜଙ୍ଗଲ ଜୀବନ ସହିତ ଓତପ୍ରୋତଃ ଭାବେ ଜଡିତ ଲେଖକ ରାଧାମୋହନଙ୍କ ଉପନ୍ୟାସ 'ମିଷ୍ଟର ଖରସେଲ୍' ଏକ ଅପୂର୍ବ କୀର୍ତ୍ତି ଓ ଚିର ସ୍ମରଣୀୟ ଅବଦାନ । ଏଭଳି ଅନବଦ୍ୟ ସୃଷ୍ଟିକୁ କେବଳ ଉପନ୍ୟାସ କହି ସୀମିତ ରଖି ହେବ ନାହିଁ । ଏଥିରେ ଜୀବନୀ, ଜୀବନ ଦର୍ଶନ, ସତ୍ୟ ତଥ୍ୟ ସମ୍ବଳିତ ଜନ୍ମ ମୃତ୍ୟୁର ରହସ୍ୟ ବିଜ୍ଞାନ, ସାଂପ୍ରଦାୟିକ ସଂହତି, କବିତା, ଗବେଷଣାତ୍ମକ ପ୍ରବନ୍ଧ, ରମ୍ୟରଚନା, ଫିଚର ସାହିତ୍ୟ, ଜୀବ କ୍ରମବିକଶ ଓ ସର୍ବୋପରି ପ୍ରାଣୀ ପ୍ରେମର ଗ୍ରନ୍ଥାଘର କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରକୃତିର ପରିବର୍ତ୍ତନ ଓ ସନ୍ତୁଳନ ଏବଂ ମଣିଷର ଆଚରଣର ବଳୟ ଭିତରେ ହସ୍ତୀ 'ଖରସେଲ୍'କୁ ପ୍ରତୀକ ଭାବେ ଉପସ୍ଥାପିତ କରାଯାଇ ଆଜି ଓ କାଲିର ବନ୍ୟଜନ୍ତୁ ସୁରକ୍ଷା ପ୍ରତି ଜନସଚେତନତା ଓ ମାର୍ଗଦର୍ଶନରେ ସହାୟକ ହୋଇଛି ବୋଲି ମତବ୍ୟକ୍ତ କରିବା ସହିତ ଶତାବ୍ଦୀର ଏକ ଅନ୍ୟତମ ଶ୍ରେଷ୍ଠ ପୁସ୍ତକକୁ ପ୍ରତ୍ୟେକ ସାହିତ୍ୟପ୍ରେମୀ ଓ ପାଠକ ପାଠିକା ପାଖେ ପହଞ୍ଚାଇବା ଉଚିତ୍ । ପୁସ୍ତକରେ ପୃଥିବୀର ସାପମାନଙ୍କ ସମ୍ବନ୍ଧରେ ଏକ ଗବେଷଣାତ୍ମକ ସନ୍ଦର୍ଭ ଲେଖକର ଜ୍ଞାନ ଗଭୀରତା ପ୍ରମାଣ କରେ । ଆମ ଦେଶୀୟ କୁକୁରମାନଙ୍କର ହୃଦୟବତ୍ତା ପୁସ୍ତକରେ ଚମତ୍କାର ଭାବେ ନିଜ ଅନୁଭୂତିରୁ ବର୍ଣ୍ଣିତ ହୋଇଛି ଏବଂ ଗାଈକୁ ପୃଥିବୀର ଶ୍ରେଷ୍ଠ ପ୍ରାଣୀ ବୋଲି ଅଭିହିତ କରାଯାଇଛି- "ଗୋମାତା ସର୍ବାରାଧ୍ୟା ସକଳ ସୁରଗଣ୍ୟଃ, ଦିବ୍ୟନ୍ତେପି ସର୍ବାଙ୍ଗେ.. ।"

ଔପନ୍ୟାସିକ ରାଧାମୋହନ ମହାପାତ୍ର କେବଳ ଜଣେ ଲେଖନୀଚାଳକ ନୁହନ୍ତି; ସେ ବନ୍ଧୁକ ଚାଳନାରେ ଯେତିକି ଧୁରନ୍ଧର, ବଂଶୀବାଦନରେ ସେତିକି ନିପୁଣ । ପୁସ୍ତକ ଲୋକାର୍ପଣ ଦିନ ଶ୍ରୋତୃମଣ୍ଡଳୀକୁ ତାଙ୍କ କ୍ଷୁଦ୍ର ବଂଶୀଟିରେ ମନ୍ତ୍ରମୁଗ୍ଧ କରିଥିଲେ । ଏପରି ଜଣେ ସ୍ରଷ୍ଟା କଳାକାର ପାଖେ ସଂଘଟିତ ହୋଇଛି ତ୍ରିବେଣୀର ସମାହାର - 'ବହି, ବନ୍ଧୁକ, ବଂଶୀ' ଯାହା ଲେଖକ ରାଧାମୋହନ ମହାପାତ୍ରଙ୍କ ବୈଶିଷ୍ଟ୍ୟ । ସେ କେବଳ 'ଭୂମିତୃଷ୍ଣା' ଉପନ୍ୟାସ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇନାହାନ୍ତି, ଅର୍ଦ୍ଧ ଶତକ ସାହିତ୍ୟ ଅନୁଷ୍ଠାନ ଦ୍ୱାରା ମାନପତ୍ର ସହିତ ସମ୍ବର୍ଦ୍ଧିତ ହୋଇଛନ୍ତି । ଓଡ଼ିଶା ସାହିତ୍ୟକୁ ଉର୍ଦ୍ଧ୍ୱାୟିତ କରିବା ତାଙ୍କର ଦୃଢ ସଂକଳ୍ପ; କହନ୍ତି, ପାଠକର ପୋଷ୍ଟକାର୍ଡଟିଏ ବିମଳତାର ପ୍ରତୀକ, ତାହା ତାଙ୍କର ଶ୍ରେଷ୍ଠ ପୁରସ୍କାର । 'ବନ୍ଧୁକରେ ଯେତେ ଗୁଳିଅଛି ଫୁଟାଇ ଦିଅ ମୋ ଛାତିରେ, ହୃଦୟରେ ଯେତେ ସ୍ନେହ ଅଛି, ଅଜାଡି ଦିଅ ମୋ ମାଟିରେ... ମୋ ଦେହରେ ଅଛି ଯେତେ ରକ୍ତ ବିନ୍ଦୁ, ନିୟୋଜିତ ହେଉ ଓଡ଼ିଆ ସାହିତ୍ୟ ସିନ୍ଧୁରେ' -ତାଙ୍କ ଅବଶିଷ୍ଟ ଜୀବନର ଆଭିମୁଖ୍ୟ ।



(Odisha News, 16-31, 2013)
Log in-www.youtube.com mister kharsel/radhamohan mohapatra.
Google : radhamohan mahapatra writer




ଆସାମ ରାଜ୍ୟପାଳ ତଥା ଓଡିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ଲେଖକ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ଦ୍ୱାରା 'ମିଷ୍ଟର ଖରସେଲ୍' ଉନ୍ମୋଚନବେଳେ ।

## ପ୍ରମେୟ ୮-୨-୨୦୧୩
## ବିପନ୍ନ ଗଜରାଜ ବଂଶକୁ ସଂପନ୍ନ କରିବା ଲେଖକର ଆହ୍ୱାନ
## 'ମିଷ୍ଟର ଖରସେଲ୍' ଉନ୍ମୋଚିତ

ଭୁବନେଶ୍ୱର,୭।୨(ବ୍ୟୁରୋ): ପଶୁ ପ୍ରତି ସମ୍ବେଦନଶୀଳ ହେଲେ ସମାଜରୁ ପାଶବିକତା ଦୂର ହେବ । ଏଥିସହିତ ସହାବସ୍ଥାନ ରହିଲେ ପଶୁ ମଣିଷର କ୍ଷତି କରିବ ନାହିଁ । ଉତ୍କଳ ସଭା କକ୍ଷରେ ରାଧାମୋହନ ମହାପାତ୍ରଙ୍କ ଜଙ୍ଗଲଭିତ୍ତିକ ଉପନ୍ୟାସ 'ମିଷ୍ଟର ଖରସେଲ୍'କୁ ଉନ୍ମୋଚିତ କରି ମୁଖ୍ୟ ଅତିଥି ଆସାମ ରାଜ୍ୟପାଳ ଜାନକୀ ବଲ୍ଲଭ ପଟ୍ଟନାୟକ ଏହା କହିଛନ୍ତି । ମିଷ୍ଟର ଖରସେଲ୍ ଉପନ୍ୟାସ ଏକ ହାତୀ ଉପରେ ପର୍ଯ୍ୟବସିତ । ହାତୀକୁ ଯଦି ମଣିଷ ନିଜର ବନ୍ଧୁ କରିପାରିବ, ତେବେ ହାତୀ ମଣିଷର କ୍ଷତି କରିବ ନାହିଁ । ଜଙ୍ଗଲ କ୍ଷୟ ଯୋଗୁଁ ହାତୀ ଜନବସତି ଅଞ୍ଚଳକୁ ଚାଲିଆସୁଛନ୍ତି । ଧନଜୀବନର କ୍ଷତି ଘଟୁଛି । ତେଣୁ ଜଙ୍ଗଲ ସୃଷ୍ଟି ସହିତ ପଶୁପକ୍ଷୀଙ୍କ ସୁରକ୍ଷା ଦେବା ଆମର କର୍ତ୍ତବ୍ୟ ବୋଲି ଆସାମ ରାଜ୍ୟପାଳ କହିଥିଲେ । ଅନ୍ୟତମ ଅତିଥି ସାହିତ୍ୟିକ ଡ.ଶାନ୍ତନୁ କୁମାର ଆଚାର୍ଯ୍ୟ କହିଥିଲେ, ଓଡ଼ିଆ ଭାଷାରେ ଜଙ୍ଗଲଭିତ୍ତିକ ରଚନା କମ୍ ଥିବାବେଳେ ଶ୍ରୀ ମହାପାତ୍ରଙ୍କ ଉପନ୍ୟାସ ଏହାର ଆବଶ୍ୟକତା ପୂରଣ କରିଛି । ସାହିତ୍ୟିକ ଦାଶ ବେନହୂର କହିଥିଲେ, ହାତୀର ମନସ୍ତତ୍ତ୍ୱ ବୁଝିବା ପାଇଁ ଏହି ଉପନ୍ୟାସ ଏକ ଚମତ୍କାର ପ୍ରୟାସ । ସ୍ତମ୍ଭକାର ତଥା ଗାଳ୍ପିକ ଅଧ୍ୟାପକ ବିଶ୍ୱରଂଜନ କହିଥିଲେ, ଖରସେଲ୍ ଜଙ୍ଗଲରୁ ମିଳିଥିବାରୁ ହାତୀର ନାଁ ଖରସେଲ୍ ରହିଥିଲା । ଏହାର ମାହୁନ୍ତ ରବିନ୍ଦ୍ରର ଜୀବନୀ ସହ ହାତୀର କାହାଣୀ ସୁନ୍ଦର ଭାବେ ବର୍ଣ୍ଣନା ହୋଇଛି ବୋଲି ସେ କହିଥିଲେ । ଅନ୍ୟତମ ଅତିଥି 'ସମ୍ବାଦ'ର ସଂପାଦକ ସୌମ୍ୟରଂଜନ ପଟ୍ଟନାୟକ କହିଥିଲେ, ଲେଖକ ରାଧାମୋହନ ବାବୁଙ୍କ 'ଖରସେଲ୍' ଏକ ଅମଡ଼ା ବାଟର ସଫଳ କୃତୀ ହୋଇଥିବାରୁ ଏହା ପ୍ରଶଂସନୀୟ । ଲେଖକ ରାଧାମୋହନ ମହାପାତ୍ର କହିଥିଲେ, ଚାକିରି କାଳରେ ଓଡ଼ିଶାରେ ଅନେକ ଆଭ୍ୟନ୍ତର ଅଂଚଳ ବୁଲିଥିବାରୁ ଗଛଲତା, ପଶୁପକ୍ଷୀ ସହ ସଂପୃକ୍ତିର ଅନେକ ଘଟଣା ଏଥିରେ ଲିପିବଦ୍ଧ ହୋଇଛି । ଖରସେଲ ସହ ତାଙ୍କର ବିତିଥିବା ସମୟକୁ ଉପନ୍ୟାସ ରୂପ ଦେଇଛନ୍ତି ବୋଲି ପ୍ରକାଶ କରିଥିଲେ । ହାତୀ ଆମ ଐତିହ୍ୟର ପ୍ରତୀକ । ମୋର ଅନୁଭୂତି ଅଛି ଜଙ୍ଗଲ ଭିତରେ ହାତୀ ଦଳକୁ ନମସ୍କାର କଲେ ଏବଂ ସେମାନଙ୍କ ପ୍ରତି ନମ୍ରଭାବ ପ୍ରଦର୍ଶନ କଲେ, ସେମାନେ ରାସ୍ତା ଛାଡ଼ି ଦିଅନ୍ତି ।

**ବିପନ୍ନ ଗଜରାଜ ବଂଶକୁ ସଂପନ୍ନ କରିବା ଲେଖକର ଆହ୍ୱାନ ସ୍ୱାଗତଯୋଗ୍ୟ ।**



*ଧରିତ୍ରୀ, ତା.୫.୩.୨୦୧୩*

ଦ୍ରୁତ ଅବକ୍ଷୟ ଘଟୁଛି ଜଙ୍ଗଲର। ବିପଦମୁଖୀ ହେଉଛନ୍ତି ବନ୍ୟ ପ୍ରାଣୀଜଗତ। ଏହି ପରିପ୍ରେକ୍ଷୀରେ ଅରଣ୍ୟ ସଂସ୍କୃତି ପୃଷ୍ଠଭୂମିରେ ରଚିତ ହୋଇଛି ଏହି ଉପନ୍ୟାସ ମିଷ୍ଟର ଖରସେଲ୍। ଉପନ୍ୟାସର ନାୟକ ଏକ ହାତୀ, ଯାହାର ନାମ ଔପନ୍ୟାସିକ ଦେଇଛନ୍ତି ଖରସେଲ୍। ଏହି ହାତୀ ସମ୍ବନ୍ଧରେ ଏକ ଅନୁଭୂତି ଭିତ୍ତିକ ଜଙ୍ଗଲ ଉପନ୍ୟାସ ଯାହା ଜଙ୍ଗଲ, ଜନ୍ତୁ ଜୀବନ ଓ ଜୀବନୀ ସମ୍ପର୍କରେ ଅନେକ ସତ୍ୟ ତଥ୍ୟ ପଦାକୁ ଆଣିଛି। ପୁସ୍ତକଟି ଅନେକତଃ ମାନବୀୟ ଚିନ୍ତାଧାରା ଉପରେ ପର୍ଯ୍ୟବସିତ। ଏଥିରେ ଲେଖକର ଭାବନା ଓ କଳ୍ପନାର ପୁଟଦେଇ ତାହାକୁ ଉପନ୍ୟାସର ପଦବାଚ୍ୟ କରି ଦେଇଛନ୍ତି। ବିଶେଷ କରି ପରିବେଶ ସୁରକ୍ଷା ଦିଗରେ କର୍ମରତ ଜୀବ ହିତୈଷୀମାନେ ଏହାକୁ ପାଠକ ରି ପ୍ରୋତ୍ସାହିତ ହେବେ ବୋଲି ଆଶା।



***ସମ୍ବାଦ, ୨୧-୪-୧୩***
***ବିରଳ ଏକ ଉପନ୍ୟାସ: ମିଷ୍ଟର ଖରସେଲ୍***

'ବିପଦରେ ଗଜରାଜ', ' ସୁରକ୍ଷିତ ନୁହଁନ୍ତି ହାତୀ', 'ହାତୀ ମାତିଛି', 'ହାତୀ ମଣିଷ ଯୁଦ୍ଧ' - ଏମିତି କିଛି ଶୀର୍ଷକରେ ପାଠକମାନେ ହାତୀର ବିପଦ, ସୁରକ୍ଷା, ଆକ୍ରମଣ ଆଦିର ଖବର ପଢ଼ିଛନ୍ତି । ତେବେ ହାତୀର ପ୍ରକୃତି, ପ୍ରବୃତ୍ତିକୁ ନେଇ ଏକ ମନୋଜ୍ଞ ଉପନ୍ୟାସଟିଏ ଲେଖିଛନ୍ତି ଲେଖକ । ମିଷ୍ଟର୍ ଖରସେଲ ଜଣେ ମଣିଷ ନୁହେଁ, ଗୋଟିଏ ହାତୀ । ସେ ହେଉଛି ଏ ଉପନ୍ୟାସଟିର ନାୟକ । ତା' ଭିତରେ ରହିଛି ମଣିଷ ଭଳି ଆବେଗ, ପ୍ରବୃତ୍ତି ଆଉ ପ୍ରେମ । ତା' ଭିତରେ ବି ଅଛି ବିଦ୍ରୋହ, ବିପ୍ଳବର ଶକ୍ତି । ତା'କୁ ବନ୍ଦୀ କରାଯାଏ ତ କେହି ଖୁସି ହୁଅନ୍ତି, ହେଲେ ଅନେକ ତା'ର ମୁକ୍ତି ଲୋଡନ୍ତି । ଗୋଟିଏ ପଶୁକୁ ନାୟକ କରି ଲେଖକ ପାଠକଙ୍କ ଠାରୁ ତା'ପାଇଁ ସମବେଦନା ଯୋଗାଡ଼ କରିବାରେ ଯେପରି ସଫଳ ହୋଇଛନ୍ତି, ତାହା ଜୀବଜନ୍ତୁ ପ୍ରେମୀଙ୍କୁ ଅଭିଭୂତ କରିବ । ପ୍ରକୃତି ମଣିଷର ଅବିଚାର ଦିନକୁ ଦିନ ବଢ଼ି ଚାଲିଥିବା ବେଳେ ଏ ଉପନ୍ୟାସଟି ମଣିଷକୁ ତା' ଦାୟିତ୍ୱବୋଧ ପ୍ରତି ସଚେତନ କରାଇବ । ଉପନ୍ୟାସଟିରେ ବାସ୍ତବତା ଆଉ କଳ୍ପନାକୁ ମିଶ୍ରଣ କରି ଯେପରି ଉପସ୍ଥାପିତ କରାଯାଇଛି, ତାହା ଲେଖକଙ୍କର ଏକ କଳାତ୍ମକ ଚାତୁର୍ଯ୍ୟ । ଉପନ୍ୟାସଟି ଭଲ ଲାଗିବ ପଢ଼ିବାକୁ । ଏଥିରେ ମଧ୍ୟ ସ୍ଥାନ ପାଇଛି ହାତୀ ସହ ଲେଖକଙ୍କ ଅନ୍ତରଙ୍ଗ ମୁହୂର୍ତ୍ତର କିଛି ଫଟୋଗ୍ରାଫ୍ ଯାହା ଉପନ୍ୟାସ ମର୍ଯାଦାକୁ ନେତ୍ରଗ୍ରାହୀ କରି ପାରିଛି ।

◆



*ସମାଜ, ୪-୯-୧୩*

ଏହି ଅନୁଭୂତିଭିତ୍ତିକ ଜଙ୍ଗଲ ଉପନ୍ୟାସର ନାୟକ 'ଖରସେଲ୍' ଯେକି ଏକ ପୁରୁଷ ହାତୀ, ଯାହାକୁ ମାରିଦେବାର ପରିସ୍ଥିତିରୁ ଉଦ୍ଧାର କରାଯାଇଥିଲା, ତା'ରି ଜରିଆରେ ସଂଗୃହୀତ ଇତିହାସକୁ ଔପନ୍ୟାସିକ ଯେଭଳି ରୂପ ଦେଇଛନ୍ତି ସେଥିରେ ଭରିରହିଛି ଉତ୍ସୁକତା, ପୁଣି ଜଙ୍ଗଲ, ଜନ୍ତୁ ଓ ଜୀବନ ପ୍ରତି ଅଛି ଆତ୍ମୀୟତା । ସତ୍ୟ ଓ ତଥ୍ୟ ଉପରେ ଏହା ପର୍ଯ୍ୟବସିତ ହୋଇଥିବାରୁ ସୁଖପାଠ୍ୟ । ଓଡ଼ିଶାର ଅତ୍ୟନ୍ତ ଅଗମ୍ୟ ଅଞ୍ଚଳର କେତେକ ବ୍ୟକ୍ତିଙ୍କର ବ୍ୟକ୍ତିତ୍ୱ ଓ ଚରିତ୍ରରେ ନିଖୁଣ ବର୍ଣ୍ଣନା ଆକର୍ଷଣୀୟ । ଅରଣ୍ୟ ସମ୍ପଦ ଓ ପ୍ରାଣୀଜଗତ ପ୍ରତି ଯେତେବେଳେ ବିପଦ ଘନେଇ ଆସୁଛି ସେତିକିବେଳେ ଏଥିପ୍ରତି ଉନ୍ମୁଖ ହେବାର ଭାବନା ଏଥିରେ ପ୍ରତିଫଳିତ । ଅତି ଦୁରୂହ ଓ ଜଟିଳ ମାନବୀୟ ଆବେଗକୁ ପଶୁଜଗତର ମନ ଓ ହୃଦୟକୁ ଏଠି ସ୍ଥାନାନ୍ତରିତ କରାଯାଇଛି ।





***ଅନୁରାଗ (ମାସିକ ସାହିତ୍ୟ ପତ୍ରିକା)***
***ଅକ୍ଟୋବର ୧୪, ୨୦୧୪***

***ବିରଳ ଗଦ୍ୟସ୍ରଷ୍ଟା: 'ଖରସେଲ୍' ପଶୁପ୍ରେମର ଦ୍ରଷ୍ଟା : ରାଧାମୋହନ***

ଜଣେ ଥିଲେ କାବ୍ୟ କବିତାର ନାୟକ: ଛନ୍ଦକବି ରାଧାମୋହନ ଗଡନାୟକ ।

ଇଏ ଆଉ ଜଣେ ବାଣୀପୁତ୍ର, ବନ ଉପବନର ମିତ୍ର: ରାଧାମୋହନ ମହାପାତ୍ର...

ଯିଏ ଲେଖିଛନ୍ତି: 'ଖରସେଲ୍' (ହାତୀପାଇଁ) ଉପନ୍ୟାସ । ଯାହା ଚତୁର୍ଦ୍ଦିଗରୁ ପ୍ରଶଂସା ଲାଭ କରିଛି । ଏଇଟି ଗୋଟିଏ Docufiction କାରଣ ଚରିତ୍ରଟି ସ୍ରଷ୍ଟା ସହ ଆମ ଆଗରେ ଉପସ୍ଥିତ । 'ଖରସେଲ୍' ଓଡ଼ିଆ ଗଦ୍ୟରେ ଏକ ବିରଳ ସର୍ଜନା କହିଲେ ଅତ୍ୟୁକ୍ତି ହେବନାହିଁ । ଏହାଛଡା ଶ୍ରୀ ମହାପାତ୍ରଙ୍କର 'ଜଙ୍ଗଲର ଜମାନବନ୍ଦୀ', ବ୍ୟାଘ୍ରନିନାଦ, 'ଭୂମିଦ୍ରଷ୍ଟା', 'ଅରଣ୍ୟ ଅତିଥି' ପରି ଉଚ୍ଚକୋଟୀର(ବଣଜଙ୍ଗଲ ଆଧାରରେ) ଉପନ୍ୟାସ ଚର୍ଚ୍ଚାର ପରିସରକୁ ଆସିଥିଲା । 'ଭୂମିଦ୍ରଷ୍ଟା' ଉପନ୍ୟାସ ରାଜ୍ୟ ସାହିତ୍ୟ ଏକାଡେମି ପୁରସ୍କାର ଲାଭ କରିଥିଲା ।

ମାଟିକୁ, ଧରିତ୍ରୀର ସବୁଜିମାକୁ ଆଉ ସେଇ ପରିସରର ପଶୁପକ୍ଷୀକୁ ରାଧାମୋହନଙ୍କ ଛଡା ଚିହ୍ନେ ଅଧିକ କିଏ ? ନଚେତ୍ ଏମିତି ଗୋଟି ଗୋଟି ସର୍ଜନା ସମ୍ଭବିନଥା'ନ୍ତା । ଶ୍ରୀ ମହାପାତ୍ର ଅରଣ୍ୟକଥା କହୁକହୁ 'ଅରଣ୍ୟ ଅତିଥି'ରେ ଆମର ଐତିହ୍ୟ କଥା କହି ଚମକାଇ ପାରନ୍ତି । ଯାହା ସବୁ ଓଡ଼ିଆ ଜାଣିବା ଉଚିତ୍ । (ପୃ: ୫୪) 'ସେତେବେଳେ ଓଡ଼ିଶାର ରାଜଧାନୀ ଥିଲା ବୀରାନାସୀ । ସେଇ ବୀରାନାସୀ-ବାରଣାସୀର ଅପଭ୍ରଂଶ ଆଜିର କଟକ ବିଡ଼ାନାସୀ ।'

ଏଥି ସହିତ ଆଦିବାସୀ ତୁଣ୍ଡରୁ ମିଠାଭାଷା 'ଅରଣ୍ୟ ଅତିଥି'ରୁ ପଢିବାକୁ ମିଳେ । "କାନ୍ କହିମି ବାବୁ ! ଥର୍‌କେ ଦି'ଟା ଛୁଆ ଦେଲାଇ ଝରଣା ତରାସେ । ଦିନ୍ ବେଲା ମୁଇ ଗାଏ ଚରାଇଲି । ଛଇଲା ଜୋରସେ ଭୁକ୍‌ଲା । ତା'ର ଛୁଆ ଜନମ କଥା ନାଇଁ ଜାନେ ।"

ଜଙ୍ଗଲ ଜୀବନ ତଥା ବନ୍ୟଜନ୍ତୁ ଆଚରଣ ସମ୍ବନ୍ଧରେ ରାଧାମୋହାନ ମହାପାତ୍ର ଜଣେ ଅପ୍ରତିଦ୍ୱନ୍ଦ୍ୱୀ ସାହିତ୍ୟିକ ସ୍ରଷ୍ଟା ଓ ଦ୍ରଷ୍ଟା- ମୁକ୍ତ କଣ୍ଠରେ କୁହାଯାଇ ପାରେ ।

ଔପନ୍ୟାସିକ ରାଧାମୋହନ ମହାପାତ୍ରଙ୍କ ଓଡ଼ିଆ ସାହିତ୍ୟର ଭଣ୍ଡାର ଓ ପ୍ରକୃତି ସୁରକ୍ଷା ଆନ୍ଦୋଳନରେ 'ମିଷ୍ଟର ଖରସେଲ' ଏକ ଅନନ୍ୟ ଉପହାର ।

◆

**-ଡକ୍ଟର ଚିନ୍ମୟ ରାୟ**
ଅନୁରାଗ, ଶାସନ ଗଡ଼ିଆ, ଭୁବନେଶ୍ୱର-୨

*ସମୟ ତା ୪-୫-୧୩*

*ବିରଳ ଅନୁଭୂତିର ପ୍ରତିଫଳନ: ମିଷ୍ଟର ଖରସେଲ୍*

ଲେଖକ ରାଧାମୋହନ ମହାପାତ୍ର ସାମସାମୟିକ ଓଡ଼ିଆ ସାହିତ୍ୟର ଜଣେ ସୁପରିଚିତ ନାମ । ଆଲୋଚିତ ଉପନ୍ୟାସଟି ଲୋକଙ୍କର ଦୀର୍ଘ ଜାଙ୍ଗଲିକ ଅନୁଭୂତିର ସଦ୍ୟତମ ପ୍ରତିଫଳନ । ଇତିପୂର୍ବରୁ ଶ୍ରୀ ମହାପାତ୍ର ଓଡ଼ିଶାର ବନାନୀ ଉପରେ ଏକାଧିକ ଗଳ୍ପ ଓ ଉପନ୍ୟାସ ରଚନା କରି ପାଠକୀୟ ଆଦୃତି ଲାଭ କରିସାରିଛନ୍ତି । ନିଜର କର୍ମମୟ ଜୀବନରେ ସେ ରାଜ୍ୟର ବିଭିନ୍ନ ଜିଲ୍ଲାର ଦୁର୍ଗମ ଅଞ୍ଚଳରେ କାର୍ଯ୍ୟ କରିଛନ୍ତି । ରାଜକାର୍ଯ୍ୟର ବୃତ୍ତି ଭିତରେ କିନ୍ତୁ ପ୍ରକୃତି ଓ ପରିବେଶ ପ୍ରତି ତାଙ୍କ ମଧ୍ୟରେ ଥିବା ଶ୍ରଦ୍ଧା ଓ ମୋହ ଆଜି ତାଙ୍କୁ ଜଣେ ଶ୍ରେଷ୍ଠ ପ୍ରକୃତି ପ୍ରେମୀ ଲେଖକର ମାନ୍ୟତା ପ୍ରଦାନ କରିଛି । 'ମିଷ୍ଟର ଖରସେଲ୍' ଉପନ୍ୟାସରେ ସେ ବାସ୍ତବ ଅନୁଭୂତି ଓ ଲେଖକୀୟ କଳ୍ପନାକୁ ସରଳ ଓ ସାବଲୀଳ ଭାଷାରେ ଏପରି ଭାବେ ଫେଣ୍ଟାଫେଣ୍ଟି କରି ଉପସ୍ଥାପନ କରିଛନ୍ତି ଯେ ତାହା ପଢିଲେ ପ୍ରତ୍ୟେକ ପାଠକଙ୍କ ମନରେ ଘନ ବନାନୀ, ଏବଂ ଅରଣ୍ୟର ଜୀବଜନ୍ତୁଙ୍କ ପ୍ରତି ସ୍ୱତଃ ଏକ ମୋହ ସୃଷ୍ଟି ହେବ । ଜଙ୍ଗଲର ପଶୁପକ୍ଷୀ ହିଂସ୍ର ନୁହନ୍ତି ବରଂ ସେମାନେ ମଣିଷର ପ୍ରିୟ ସହଚର ପରି ପ୍ରତ୍ୟୟମାନ ହେବେ । ଏକ ଜଙ୍ଗଲୀ ହାତୀକୁ ମିଷ୍ଟର ଖରସେଲ୍ ଭାବେ ଲେଖକ ଯେଉଁଭଳି ଭାବେ ଅବତାରଣା କରିଛନ୍ତି ତାହା ତାଙ୍କ ଅକପଟ ପ୍ରକୃତି ପ୍ରୀତି ଓ ହାତୀଟି ପ୍ରତି ଥିବା ଶ୍ରଦ୍ଧାର ନିଚ୍ଛକ ନମୁନା । ଏକବିଂଶ ଶତାବ୍ଦୀର ପ୍ରାରମ୍ଭରେ ହାତୀମାନଙ୍କ ଦୁଃଖଦ ମୃତ୍ୟୁ ଏବେ ଗଣମାଧ୍ୟମରେ ମୁଖ୍ୟ ଖବର ପାଲଟିଥିବା ବେଳେ ସେମାନଙ୍କ ସୁରକ୍ଷା ପାଇଁ ସରକାର କୂଳକିନାରା ପାଉନାହାନ୍ତି । ସେତେବେଳେ ଶ୍ରୀ ମହାପାତ୍ର ଗଜରାଜଙ୍କୁ ମୁଖ୍ୟ ଚରିତ୍ର କରି ଏକ ପୂର୍ଣ୍ଣାଙ୍ଗ ଓ ସଫଳ ଉପନ୍ୟାସ ରଚନା କରିବା ସ୍ୱାଭାବିକ ପ୍ରଶଂସନୀୟ । ପ୍ରତ୍ୟେକ ପାଠକ ଏହି ଉପନ୍ୟାସଟିକୁ ପଢିବା ପରେ ଯେ ଅରଣ୍ୟ ଓ ଅରଣ୍ୟ ଜୀବଜନ୍ତୁଙ୍କ ପ୍ରତି ଆକୃଷ୍ଟ ହେବେ, ଏହା ଦୃଢତାର ସହ କୁହାଯାଇପାରେ ।



*କାଦମ୍ବିନୀ*
*ଓଡ଼ିଶାର ସର୍ବପ୍ରଥମ ମାସିକ ପାରିବାରିକ ପତ୍ରିକା*
*ଡିସେମ୍ବର, ୨୦୧୪ ସଂଖ୍ୟା*

ଜଙ୍ଗଲ ଆଉ ସେଠାରେ ବସବାସ କରୁଥିବା ପ୍ରାଣୀକୁ ଆଧାର ଭାବେ ନେଇ ରଚନା କରାଯାଇପାରେ ଏକ ଭିନ୍ନସ୍ୱାଦର ଉପନ୍ୟାସ, ଏହାର ଏକ ଅନନ୍ୟ ଉଦାହରଣ ଲେଖକ ରାଧାମୋହନ ମହାପାତ୍ରଙ୍କ ରଚିତ ଉପନ୍ୟାସ 'ମିଷ୍ଟର ଖରସେଲ୍' । ଅରଣ୍ୟ ଏହାର ପୃଷ୍ଠଭୂମି ଓ ଅରଣ୍ୟର 'ମିଷ୍ଟର ଖରସେଲ୍' ଏହାର ମୁଖ୍ୟନାୟକ । ଖରସେଲ୍ ମଣିଷ ନୁହେଁ, ମଣିଷ ଭଳି ଆଚରଣ କରୁଥିବା ଏକ ବୃହତ୍‌କାୟ ଅସାଧାରଣ ହାତୀ । ତା'ର ପ୍ରକୃତି, ପ୍ରବୃତ୍ତି, ଆଚରଣ, ବୁଦ୍ଧିମତା ଏବଂ ଆବେଗ ଆଦିର କଥା ଉପନ୍ୟାସଟିରେ ସୁନ୍ଦର ଭାବରେ ଉପସ୍ଥାପିତ ହୋଇଛି । ଉପନ୍ୟାସଟି ଅତ୍ୟନ୍ତ ରୋମାଞ୍ଚକର ଏବଂ ଆବେଗଭରା । ଏହାକୁ ପଢ଼ିବା ବେଳେ ମନରେ ଆସୁଥିବା ଉତ୍କଣ୍ଠା ହିଁ ପରିଣତି ଯାଏ ବାଟ କଢ଼ାଇନିଏ । ଏକ ଭିନ୍ନ ଭାବାଭୂମିରେ ରଚିତ ଏହି ଅନୁଭୂତିଭିତ୍ତିକ ଉପନ୍ୟାସଟି ପାଠକମାନଙ୍କୁ ପାଠକୀୟ ସୁଖ ଦେବ ନିଶ୍ଚୟ ।



*ଗ୍ରନ୍ଥ ବିଚାର ୨୩.୧୧.୨୦୧୪*

ଅନେକ ଜଙ୍ଗଲ ଉପନ୍ୟାସର ରଚୟିତା ରାଧାମୋହନ ମହାପାତ୍ରଙ୍କ ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର ପରିଚିତି ରହିଛି। ଘଟଣା ଓ କଳ୍ପନାକୁ ଫେଣ୍ଟାଫେଣ୍ଟି କରି ଜଙ୍ଗଲଭିତ୍ତିକ ଗଦ୍ୟ ସାହିତ୍ୟରେ ଚମକ ସୃଷ୍ଟି କରନ୍ତି ସେ। ତାଙ୍କ ଉପନ୍ୟାସ ଜଙ୍ଗଲର ଜମାନବନ୍ଦୀ, ବ୍ୟାଘ୍ର ନିନାଦ, ଅରଣ୍ୟ ଅତିଥି, ଭୂମିତୃଷ୍ଣା, ରକ୍ତର ରଙ୍ଗ ଏହା ପ୍ରମାଣ କରେ। ଆଲୋଚିତ ଉପନ୍ୟାସ 'ମିଷ୍ଟର ଖରସେଲ' ସଦ୍ୟତମ ପ୍ରତିଫଳନ।

ମିଷ୍ଟର ଖରସେଲ ଜଣେ ମଣିଷ ନୁହେଁ, ଗୋଟିଏ ସୁଦୀର୍ଘ ଦାନ୍ତଯୁକ୍ତ ହାତୀ। ସେ ହେଉଛି ଏ ଉପନ୍ୟାସର ନାୟକ; ମାଙ୍କଡ଼, କୁକୁର, ସାପ, ଗାଈ, ଭାଲୁ ଆଦିବାସୀ ମଣିଷ ଓ ମହିଳା ଇତ୍ୟାଦି ପାର୍ଶ୍ୱଚରିତ୍ର ରହିଛି। ହାତୀ ଭିତରେ ରହିଛି ମଣିଷ ଭଳି ଆବେଗ, ଆଚରଣ, ପ୍ରବୃତ୍ତି ଆଉ ପ୍ରେମ। ତା' ଭିତରେ ବି ଅଛି ବିଦ୍ରୋହ ଓ ବିପ୍ଳବର ଶକ୍ତି। ତାକୁ ବନ୍ଦୀ କରାଯାଏ ତ କେହି ଖୁସି ହୁଅନ୍ତି, ହେଲେ ଅନେକ ତାର ମୁକ୍ତି ଲୋଡ଼ନ୍ତି। ଗୋଟିଏ ପଶୁକୁ ନାୟକ କରି ଲେଖକ ପାଠକଙ୍କଠାରୁ ତା' ପାଇଁ ସମବେଦନା ଯୋଗାଡ଼ କରିବାରେ ଯେପରି ସଫଳ ହୋଇଛନ୍ତି ତାହା ଜୀବଜନ୍ତୁ ପ୍ରେମୀଙ୍କୁ ଅଭିଭୂତ କରିବ। ଜଙ୍ଗଲ ଜନ୍ତୁ ହିଂସ୍ର ନୁହନ୍ତି, ବରଂ ସେମାନେ ମଣିଷର ପ୍ରିୟ ସହଚର ବୋଲି ପୁସ୍ତକରେ ପ୍ରତୀୟମାନ। ମଣିଷ ଅବିବେକୀ ଓ ହିଂସ୍ର ହେଲେ ଜନ୍ତୁ ମଧ୍ୟ ପ୍ରତିହିଂସା ପ୍ରଦର୍ଶନ କରିଥାଏ – ଖରସେଲ୍ ତାହା ପ୍ରମାଣ କରେ। ନିଜ ଅନୁଭୂତିକୁ ଆଧାର କରି ଏକ ଜଙ୍ଗଲୀ ହାତୀକୁ ତାଙ୍କ ଲେଖକୀୟ କଳା-କଳ୍ପନାକୁ ସରଳ ଓ ସାବଲୀଳ ଭାଷାରେ ଏପରି ଭାବେ ଉପସ୍ଥାପନା କରିଛନ୍ତି ଯେ ତାହା ପଢ଼ିଲେ ପ୍ରତ୍ୟେକ ପାଠକ ମନରେ ଅରଣ୍ୟର ଜୀବଜନ୍ତୁଙ୍କ ପ୍ରତି ସ୍ୱତଃ ଅପରିମିତ ମୋହ ଜାତ ହେବ। ଏହା ଲେଖକଙ୍କ ଅକପଟ ପ୍ରକୃତି ପ୍ରୀତି ଓ ହାତୀଟି ପ୍ରତି ଶ୍ରଦ୍ଧାର ନିଛକ ନମୁନା। ଜଙ୍ଗଲ ଜୀବନର ଦରଦୀ ଦସ୍ତାବିଜ କହିଲେ ଅତ୍ୟୁକ୍ତି ହେବ ନାହିଁ।

ପୁସ୍ତକଟିରେ ଭରି ରହିଛି ଗଜଗର୍ଜନ ଉତ୍କଣ୍ଠା ଓ ଜଙ୍ଗଲ ଜୀବନର ଐନ୍ଦ୍ରଜାଲିକ ପ୍ରତ୍ୟକ୍ଷ ଅନୁଭୂତି ଓ ଅନୁଭବର ଚିତ୍ରଶାଳା। କେତେ ତଥ୍ୟରେ ପରିପୂର୍ଣ୍ଣ। ଜଣକର ଅନୁଭୂତି ନ ଥିଲେ କଳ୍ପନାରେ ଗଳ୍ପ ଲେଖାଯାଇପାରେ, କିନ୍ତୁ ଅରଣ୍ୟ ଓ ଆରଣ୍ୟକ ମଣିଷ ଓ ଜୀବଜନ୍ତୁ ବିଷୟରେ ଲେଖାଯାଇ ନ ପାରେ – ମିଷ୍ଟର ଖରସେଲ୍ ଉପନ୍ୟାସରୁ ପ୍ରତୀୟମାନ। ରାଧାମୋହନ ବାବୁଙ୍କ ସବୁତକ ଜଙ୍ଗଲ ଉପନ୍ୟାସ ପାଠକଲେ ଜିମ୍ କରବେଟଙ୍କର କାମୁୟୁଁର ନରଖାଦକ, ରୁଦ୍ର ପ୍ରୟାଗର ବାଘ ଆଦି ମନେପକାଇ ଦିଏ।

ଶ୍ରୀ ମହାପାତ୍ର ଗଜରାଜଙ୍କୁ ମୁଖ୍ୟ ଚରିତ୍ର କରି ଏକ ପୂର୍ଣ୍ଣାଙ୍ଗ ଓ ସଫଳ ଉପନ୍ୟାସ ରଚନା କରିବା ପ୍ରଶଂସନୀୟ। ପ୍ରତ୍ୟେକ ପ୍ରକୃତିପ୍ରେମୀ ଏହାକୁ ପାଠ କରିବା ଉଚିତ୍।



***ବେଦାନ୍ତୀ (ମୁମ୍ବାଇ) ଜୁନ୍ ସଂଖ୍ୟା-୨୦୧୬***

***ଜାଙ୍ଗଲିକ ଉପନ୍ୟାସ ମିଷ୍ଟର ଖରସେଲ - ଏକ ବିହଙ୍ଗାବଲୋକନ***

ଶ୍ରୀଯୁକ୍ତ ରାଧାମୋହନ ମହାପାତ୍ର - ଜାଙ୍ଗଲିକ ଉପନ୍ୟାସ ଜଗତର ବାଦ୍‌ଶାହ ସେ। ବଂଶୀ-ବନ୍ଧୁକ-ବହି, ଏ ତିନୋଟି ସାଧନ ସହିତ ଆପଣାର ସମଗ୍ର ଜୀବନକୁ ବିତାଇ ଦେଇଥିବା ଜଣେ ସାଧକ ସେ। ଓଡ଼ିଶାର ଘଞ୍ଚ ଅରଣ୍ୟପୂର୍ଣ୍ଣ ଅଞ୍ଚଳ କଳାହାଣ୍ଡି, କୋରାପୁଟ, ରାୟଗଡ଼ା ଇତ୍ୟାଦିରେ ସେ ବିତାଇ ଦିଅନ୍ତି ତାଙ୍କ ଜୀବନର ଅଧିକାଂଶ ସମୟ ଜଣେ ଉଚ୍ଚପଦସ୍ଥ ସରକାରୀ ଚାକିରିଆ ଭାବରେ; ହଜାଇ ଦିଅନ୍ତି ଆପଣାକୁ ସେଇ ଗିରିବହୁଳା, ତଟିନୀ ପଖଳା ଅରଣ୍ୟର ବାଙ୍‌ମୟ ନିର୍ଜ୍ଜନତାରେ, ପକ୍ଷୀମାନଙ୍କର କୂଜନ-କାକଳି କଳରବରେ ଏବଂ ବନଜଗତର ଅପୂର୍ବ ଶ୍ୟାମଳ ଶୋଭାରେ।

ଶ୍ରୀଯୁକ୍ତ ମହାପାତ୍ରଙ୍କର ଏ ଉପନ୍ୟାସର ନାୟକ ହେଉଛି ଏକ ଦନ୍ତାହାତୀ ଯାହାକୁ ସେ ତାର ପିଲାବେଳେ ଶଙ୍କର ବେଟା ଓ ଯୌବନ ବେଳେ ମିଷ୍ଟର ଖରସେଲ ଭାବରେ ନାମିତ କରିଛନ୍ତି। ଉପନ୍ୟାସଟିକୁ ଆରମ୍ଭରୁ ଶେଷଯାଏ ପାଠକରି ବସିଲେ ମନେହେଉଛି ସତେ ଯେପରି ଏହା ଏକ ଭ୍ରମଣ କାହାଣୀ। ହଁ, ସେ ଭ୍ରମଣସ୍ଥାନ କେଉଁ ତୀର୍ଥସ୍ଥଳ ନୁହେଁ, ପ୍ରଖ୍ୟାତ ଦେବାଦେବୀଙ୍କ ମନ୍ଦିର ନୁହେଁ, ମସ୍‌ଜିଦ୍ ନୁହେଁ ବା ଗୀର୍ଜାସ୍ଥଳ ନୁହେଁ, ବରଂ ସେ ଭ୍ରମଣ ହେଉଛି ବ୍ୟାଘ୍ର, ଭଲ୍ଲୁକ, ବନ୍ୟହସ୍ତୀ ଇତ୍ୟାଦି ହିଂସ୍ରଜନ୍ତୁ ତଥା ବିଷଧର ସର୍ପରେ ପରିପୂର୍ଣ୍ଣ ଘଞ୍ଚ ଅରଣ୍ୟାଞ୍ଚଳ।

ଉପନ୍ୟାସଟିର ଅୟମାରମ୍ଭ ଶ୍ରୀଯୁକ୍ତ ମହାପାତ୍ରଙ୍କର ଗଲା ଶତାବ୍ଦୀର ଷାଠିଏ, ସତୁରୀ ଦଶକ ବେଳେ ରାୟଗଡ଼ା ସହରରେ (ସେତେବେଳର କୋରାପୁଟ ଜିଲ୍ଲା ଅନ୍ତର୍ଗତ) ଅବସ୍ଥାନ କାଳରେ ସେ ଅଞ୍ଚଳଠାରୁ ପ୍ରାୟ ଏକଶତରୁ ଉର୍ଦ୍ଧ୍ୱ କିଲୋମିଟର ଦୂରବର୍ତ୍ତୀ ଜଙ୍ଗଲ ପରିପୂର୍ଣ୍ଣ ଓ ପାହାଡ଼ ପର୍ବତ ଘେରା ବେଲଘର ଡାକବଙ୍ଗଳାକୁ ଭ୍ରମଣ ଉଦ୍ଦେଶ୍ୟରେ କିଛି ବନ୍ଧୁମାନଙ୍କ ସହିତ ଯିବା ସମୟର ଅନୁଭୂତିକୁ ନେଇ। ଶ୍ରୀଯୁକ୍ତ ମହାପାତ୍ର ରାୟଗଡ଼ାରୁ ବେଲଘର ଡାକବଙ୍ଗଳାକୁ ସାଥୀମାନଙ୍କ ସହିତ ଜିପ୍‌ରେ ବାହାରୁ ବାହାରୁ ସନ୍ଧ୍ୟା ହୋଇଯାଇଛି। ରାୟଗଡ଼ାରୁ କୁମାରମୁଣ୍ଡା ପ୍ରାୟ ୯୮ କିଲୋମିଟର ଓ କୁମାରମୁଣ୍ଡାରୁ ବେଲଘର ୧୯ କିଲୋମିଟର। କୁମାରମୁଣ୍ଡାରୁ ୫ କିମି ଗଲେ ପଡ଼େ ପିତାପଲ୍ଲୀ ପଟାପୋଲ। ହଁ, ସାଥିରେ କୁମାରମୁଣ୍ଡା ଗାଆଁର ସୁବଳ ଭୋଇ ବି ସହଯାତ୍ରୀ। ପଟାପୋଲ ଅତିକ୍ରମ କରି ଜିପ୍‌ରେ ପ୍ରାୟ ୯ କିଲୋମିଟର ବାଟ ଯିବା ପରେ ଏକ ପାହାଡ଼ୀ ରାସ୍ତାରେ ତଳକୁ ଗଡ଼ୁଥିବା ଅବସ୍ଥାରେ ସେମାନେ ଦେଖିଲେ କଚ୍ଚା ମୋରମ ରାସ୍ତାକୁ ଅବରୋଧ କରି କିଛି ଦୂରରେ ଠିଆ ହୋଇଛନ୍ତି ଦଳେ ବଣୁଆ ହାତୀ। ମାଈ ହାତୀଟିଏ ଛୁଆ ଜନ୍ମ କରୁଥିବାରୁ ଅନ୍ୟ ହାତୀମାନେ ତା ଚାରିପାଖରେ ରାସ୍ତା ଉପରେ ତାକୁ ଜଗି ରହିଥିଲେ। ବାଧହୋଇ ଏମାନେ ସେଠାରେ ଅପେକ୍ଷା କରି ରହିଲେ। ହାତୀମାନେ ଚାଲିଯିବା ପରେ ସେମାନେ ଅବଶିଷ୍ଟ ୫ କିଲୋମିଟର ରାସ୍ତା ଅତିକ୍ରମ କରି ବେଲଘର ଡାକବଙ୍ଗଳାରେ

ପହଞ୍ଚିଲେ ପ୍ରାୟ ମଧ୍ୟରାତ୍ରି ବେଳକୁ। ପରଦିନ ସକାଳେ କେତେଘଣ୍ଟାର ବନ ଭ୍ରମଣ ଓ ମଧ୍ୟାହ୍ନ ପରେ ପରେ ପୁନର୍ବାର ଗୃହ ପ୍ରତ୍ୟାବର୍ତ୍ତନ। ଦୁଇଅଙ୍କ ବିଶିଷ୍ଟ ଉପନ୍ୟାସଟିର ଏଇ ହେଉଛି ପ୍ରଥମ ଅଙ୍କ ଯାହାକି ଉପନ୍ୟାସଟିରେ ଅର୍ଦ୍ଧାଧିକ ସ୍ଥାନ ଅଧିକାର କରିଛି (୧ରୁ ୧୪୨ ପୃଷ୍ଠା ପର୍ଯ୍ୟନ୍ତ) । ଉକ୍ତ ପ୍ରଥମ ଅଙ୍କଟିରେ ଔପନ୍ୟାସିକ ଶ୍ରୀଯୁକ୍ତ ମହାପାତ୍ର ନିଜର ବଣରାଇଜର ଅନୁଭୂତିଗୁଡ଼ିକୁ ବର୍ଣ୍ଣନା କରିଚାଲିଛନ୍ତି ସାଥିମାନଙ୍କୁ। କଥାରୁ କଥାକୁ ଖିଅ ଯୋଡ଼େ ଲେଖକ କେତେକୁଆଡ଼େ ମାଡ଼ିଯାଇଛନ୍ତି। କିନ୍ତୁ ସବୁ କଥାଗୁଡ଼ାକ ପାଠକମାନଙ୍କର ଖୁବ୍ ଶିକ୍ଷଣୀୟ ଏବଂ ଚିତ୍ତାକର୍ଷକ ମଧ୍ୟ। ହାତୀ ଦଳ ବାଟ ଓଗାଳିଥିବା ବେଳେ ଜିପ୍ ଭିତରେ ଲେଖକ ନିଜେ ଝାରସୁଗୁଡ଼ାର ଚିରାମରା ଗାଆଁରେ କିପରି ଅତୀତରେ ଥରେ ଭାଲୁ ଆକ୍ରମଣର ଶିକାର ହୋଇଥିଲେ, ତାହା ବର୍ଣ୍ଣନା କରିଛନ୍ତି (ପୃଷ୍ଠା-୨୨)। ତା'ପରେ ପରେ ସେ ଆଦିବାସୀ ଯୁବକ ସୁବଳ ଭୋଇର ସରଳତା, ସଚ୍ଚୋଟତା, ନିରୀହତା ଓ ନିଷ୍କପଟତା ତଥା ନିଃସ୍ୱାର୍ଥପରତାକୁ ଦର୍ଶାଇଛନ୍ତି ଏବଂ ଆଦିବାସୀ ସମ୍ପ୍ରଦାୟର ପୋଢ଼ ପର୍ବ, ବିବାହ ପ୍ରଥା ଇତ୍ୟାଦି ସମ୍ବନ୍ଧରେ ମଧ୍ୟ ବର୍ଣ୍ଣନା କରିଛନ୍ତି। ବାସ୍ତବରେ ଲେଖକଙ୍କର 'ଧନୀ କିଏ ?'ର ବ୍ୟାଖ୍ୟାକୁ ଆଜିର ଆଧୁନିକ ମଣିଷର ଯଥେଷ୍ଟ କିଛି ଶିକ୍ଷା କରିବାର ଅଛି। (....ଏତେ ବାଟ ବସ୍ ଭଡ଼ା ଖର୍ଚ୍ଚ କରି ମୋ ପାଖକୁ ଆସିଛି, କିନ୍ତୁ ପଇସା ଯାଚିଲେ ନେଉନାହିଁ। ସତରେ ଧନୀ କିଏ ? ମୁଁ ନିଜକୁ ଦରିଦ୍ର ମନେକଲି। କେତେ ବିଶାଳ ଏ ସରଳ ଆଦିବାସୀ ହୃଦୟ...। ଆମେ ନିଜକୁ ଜ୍ଞାନୀ, ଅର୍ଥନୈତିକ ଧନ ଓ ଜ୍ଞାନରେ ଧନୀ ବୋଲାଉ, କିନ୍ତୁ ସେମାନେ ମନରେ ଧନୀ (ପୃଷ୍ଠା-୩୧) । ଲେଖକ ପୁଣି ଗୋଟାଏ ସ୍ଥାନରେ ଲେଖୁଛନ୍ତି... ତେବେ ଯିଏ ଅଳ୍ପରେ ସନ୍ତୁଷ୍ଟ ରହେ, ସେ ହିଁ ପ୍ରକୃତରେ ଧନୀ ବିବେଚିତ ହୋଇଥାଏ (ପୃଷ୍ଠା-୩୪)। ଏ ଦ୍ୱିତୀୟ ସୂତ୍ରଟି ମାଛ ଧରାଳି ଭଗିଆର ଜୀବନ କଥାକୁ ବର୍ଣ୍ଣନା କରି ଲେଖକ କହିଛନ୍ତି। ଏହାପରେ ଲେଖକ ରାୟଗଡ଼ା ସହରରେ ଏକ ଜିଲ୍ଲାସ୍ତରୀୟ କର୍ମନିଯୁକ୍ତି କର୍ମଶାଳାରେ ନିଜର ଭାଷଣ ଦେବା ସମୟରେ ଶ୍ରମକୁ ସର୍ବଶ୍ରେଷ୍ଠ ମର୍ଯ୍ୟାଦା ଦେଇ ଶ୍ରୋତାମାନଙ୍କୁ ଶ୍ରୀଜଗନ୍ନାଥ-ମହାଲକ୍ଷ୍ମୀଙ୍କ କଥା କହିଛନ୍ତି (ଶ୍ରମଠାରୁ ନାହିଁ ବଡ଼ ପୁଣ୍ୟ ଶ୍ରମରେ ପୂରଇ ଶୂନ୍ୟସ୍ଥାନ। ଓଁ ଶ୍ରମ ଏବ ଜୟତେ, ଓଁ ଶ୍ରମ ଏବ ଜୟତେ - ପୃ.-୩୭) ।

ପୁଣି ସେଇ ଜିପ୍ ଗାଡ଼ି ଅପେକ୍ଷାରତ ଯାତ୍ରୀମାନଙ୍କୁ ସେ ଚନ୍ଦକା ଅଭୟାରଣ୍ୟର ପାଗଳାହାତୀକୁ ତାଙ୍କର ଶିକାରୀ ବନ୍ଧୁ ଆର୍ତ୍ତତ୍ରାଣ ଗୁଳି କରି ହତ୍ୟା କରିବା କଥା ଓ ଶିକାରୀ ବନ୍ଧୁ ପ୍ରେମଙ୍କ ଠେକୁଆ ଶିକାର କଥା ମଧ୍ୟ ଶୁଣାଇଛନ୍ତି। ପରେ ପରେ ବନ୍ଧୁମାନଙ୍କ ଅନୁରୋଧରେ ବଡ଼ରମ୍ଭା ଉଷାକୋଠିରେ ସେ କିପରି ଏକଦା ରାତିରେ ବଣୁଆ ହାତୀମାନଙ୍କ କବଳରେ ପଡ଼ି ଏକ ଗଛରେ ଚଢ଼ିଯାଇ ଅହିରାଜ ସାପ ହାବୁଡ଼ରେ ପଡ଼ିଥିଲେ ଓ ଅହିରାଜ ସାପକୁ ଗୁଳିକରି ମାରିଥିଲେ ଏବଂ ଶ୍ୱାସରୋଗୀଙ୍କର ପଥ୍ୟ ବାଦୁଡ଼ି ମାଂସ ପାଇଁ ସିଏ ଗଛରେ ଝୁଲିଥିବା କେତୋଟି ବାଦୁଡ଼ି ଶିକାର କରିଥିଲେ, ତାହା ମଧ୍ୟ ବର୍ଣ୍ଣନା କରିଛନ୍ତି। ଏ କାହାଣୀ ପରେ ଏକଦା ଅତୀତରେ ଶିମିଳିପାଳ ଅଭୟାରଣ୍ୟରେ ନହଣା ବଙ୍ଗଳା ପାଖରେ କିପରି ବଣୁଆ ହାତୀ ତାଙ୍କ ଜିପ୍‌କୁ ଆକ୍ରମଣ କରିଥିଲା, ସେ କାହାଣୀ ମଧ୍ୟ କହିଛନ୍ତି।

ଏହାପରେ ଅଭିଜ୍ଞ ସୁବଳ ଭୋଇ ଆରମ୍ଭ କରିଛି କୁମାରମୁଣ୍ଡା ଗାଁ ପାଖରେ ଥିବା ଭୂତଖିଆ ପାହାଡ଼ କଡ଼ର ପୁଷ୍କରିଣୀରୁ ଭୂତୁଣୀ ହାତୀକୁ ଉଦ୍ଧାର କରିବାର କାହାଣୀ। ଏଥର ଲେଖକ ବର୍ଣ୍ଣନା କରିଛନ୍ତି ପ୍ରଖ୍ୟାତ ଶିକାରୀ ଓ ହାତୀଖେଦା ଓସ୍ତାଦ୍ ଫ୍ରାଙ୍କ ନିକୋଲାସଙ୍କର ବାଘ ଆକ୍ରମଣରେ କ୍ଷତାକ୍ତ ହୋଇଥିବା ହାତୀ କିପରି ତାଙ୍କର ସାହାଯ୍ୟ ଲୋଡ଼ିଥିଲା, ତାହାର କାହାଣୀ ଓ ରାୟଗଡ଼ାର ଡାକ୍ତର ପଡ଼ିହାରୀଙ୍କର ସାହାଯ୍ୟ ଲୋଡ଼ି ଏକ ଦନ୍ତାହାତୀ କିପରି ଏକ ମାଈହାତୀର ଗୋଡ଼ରୁ ବାଉଁଶ କୀଳାଟିଏ କାଢ଼ିଥିଲା, ତାହାର କାହାଣୀ।

ବେଲଘର ବଙ୍ଗଳାରେ ଅର୍ଦ୍ଧରାତ୍ରରେ ପହଞ୍ଚିବା ପରେ ଦିଆସିଲି ନ ଥିବାରୁ ପୂଜାରୀ ସନାତନ ରୋଷେଇ କରିବାକୁ ଅସମର୍ଥ ବୋଲି ଜଣାଇଛି। ଅଗ୍ନିର ଆବଶ୍ୟକତା ସମ୍ବନ୍ଧରେ ନାନା ପୁରାଣ ଶାସ୍ତ୍ରର ସହାୟତାରେ ସେ ନାନା କଥା ବର୍ଣ୍ଣନା କରିଛନ୍ତି ଓ ଶିକାରୀ ବନ୍ଧୁ ପ୍ରେମ୍ କିପରି ଏକଦା ଦିଆସିଲି ଟି ବର୍ଷାରେ ଭିଜିଯାଇଥିବାରୁ ମଶାଣିରେ ଜଳୁଥିବା ଚିତାଗ୍ନିରୁ ଅଗ୍ନି ନେଇ ସେଥିରେ ଠେକୁଆକୁ ପୋଡ଼ି ତାର ମାଂସ ଖାଇଛନ୍ତି ତାହାର କାହାଣୀ କହିଛନ୍ତି। ଅଗ୍ନିକଥାରୁ ଖିଅ ବାହାର କରି ଲେଖକ ବନାଗ୍ନିର ଭୟାବହତା କଥା ଆଡ଼କୁ ତଥା ଝିଙ୍କପକ୍ଷୀ ଆଡ଼କୁ ମାଡ଼ିଯାଇଛନ୍ତି। ପୁଣି ଝିଙ୍କପକ୍ଷୀକୁ ନେଇ ନାନା ପ୍ରକାର ପୌରାଣିକ ବ୍ୟାଖ୍ୟା।

ବେଲଘର ବଙ୍ଗଳାରେ ରାତ୍ରିଯାପନର ପରଦିନ ସକାଳେ ବନ ପରିକ୍ରମା ସମୟରେ ପକ୍ଷୀମାନଙ୍କର କଳନାଦ ଶ୍ରବଣ କରି ଲେଖକ ବର୍ଣ୍ଣନା କରିଛନ୍ତି ଆକାଶରେ ଉଡୁଥିବା ପକ୍ଷୀମାନଙ୍କର ସଂଖ୍ୟା ନିର୍ଣ୍ଣୟ କରିବାର ସୂତ୍ର। ପରେ ପରେ ଆଣ୍ଠୁଗଣ୍ଠି ବାତ ଭଲ ହେବା ପାଇଁ କୋଚିଲାଖାଇ ଚଢ଼େଇର ମାଂସର ଆବଶ୍ୟକତା ଓ ସେ ପକ୍ଷୀ ସମ୍ବନ୍ଧୀୟ ନାନା ତଥ୍ୟ। ତା ପରେ କୋଚିଲାଖାଇ ପକ୍ଷୀର ଶିକାର ମଧ୍ୟ ସେ କରିଛନ୍ତି। ତା ପରେ ବଜ୍ରକାପ୍ତା ସ୍ତନ୍ୟପାୟୀ ପ୍ରାଣୀ ସମ୍ବନ୍ଧରେ ନିଜ ସୃଷ୍ଟି ପୌରାଣିକ ବ୍ୟାଖ୍ୟା। ଏହାପରେ ଲେଖକ ବର୍ଣ୍ଣନା କରିଛନ୍ତି ଅଜଗର ସାପ କଥା। ଲେଖକଙ୍କର ଘର ବାଙ୍କୀ ଅଞ୍ଚଳରେ ଏକଦା ଭୀଷଣ ବନ୍ୟା ସମୟରେ ଶତ୍ରୁଘ୍ନ ନାମକ ଚାକର ପିଲା କିପରି ବନ୍ୟାଜଳରେ ଭାସି ଆସୁଥିବା ଅଜଗର ସାପକୁ କାଠମୁଣ୍ଡା ଭାବି, ସାପ ଉପରେ ବସି ସେ ଅଞ୍ଚଳର ଶେଠ ବିଶିନଲାଲ କାପାଡ଼ିଆଙ୍କୁ ବନ୍ୟାଜଳ ଘେରରୁ ଉଦ୍ଧାର କରିଛି ଓ କୃପଣ ଶେଠ୍ ବିଶିନଲାଲଙ୍କର ଏହାପରେ 'ଧନୀ-ଗରିବର ଭେଦଭାବ ନାହିଁ' ବୋଲି ହୃଦ୍‌ବୋଧ ହୋଇଛି, ଏକଥା ଲେଖକ ବର୍ଣ୍ଣନା କରିଛନ୍ତି। (...ହନୁ ମଲାବେଳେ ସତ କହିଲା ଭଳି ଧନୀ-ଗରିବର ପାର୍ଥକ୍ୟ ନାହିଁ, ଧନୀର ଅଛି ଧନ, ଗରିବର ଅଛି ମନ... ପୃଷ୍ଠା-୧୦୫)। ଅଜଗର ସାପକଥାରୁ ଖିଅ ଲମ୍ବାଇ ଲେଖକ ବର୍ଣ୍ଣନା କରିଛନ୍ତି ସର୍ପକୁଳ ସମ୍ବନ୍ଧୀୟ ଅନେକ ଶିକ୍ଷଣୀୟ କଥା। ତା ପରେ ବର୍ଣ୍ଣନା କରିଛନ୍ତି ତାଙ୍କର ପିଲାବେଳର କଖାରୁଚୋରା କଥା, ଡାମଣା ସାପର ଗାଈ ସ୍ତନରୁ ଓ ଜଣେ ସ୍ତ୍ରୀ ଲୋକର ସ୍ତନରୁ କ୍ଷୀର ପିଇବା କଥା।

ପ୍ରଥମ ଅଙ୍କର ଶେଷ ବେଳକୁ ଲେଖକ ସୁବଳ ମୁହଁରୁ ଜାଣିବାକୁ ପାଇଛନ୍ତି ଭୂତୁଣୀ ହାତୀ ଓ ତାର ଛୁଆ ଶଙ୍କର ବେଟାର ଜନପ୍ରିୟତାର କଥା ଓ ଭୂତୁଣୀ ହାତୀର ମୃତ୍ୟୁର କଥା: ମାଆର ମୃତ୍ୟୁ ପରେ ଶଙ୍କର ବେଟାକୁ ଡେକାନ୍ ସର୍କସର ମାଲିକ ନେଇଯାଇଥିବାର କଥା। ପ୍ରଥମ ଅଙ୍କର ଶେଷ ବେଳକୁ ହିଁ ଉପନ୍ୟାସର ନାୟକ 'ମିଷ୍ଟର ଖରସେଲ' ବା ଶଙ୍କର ବେଟାର ଆବିର୍ଭାବ ହୋଇଛି। ଏଇ ପ୍ରଥମ ଅଙ୍କରେ ନିଜର

ଅନୁଭୂତି ସବୁ ବର୍ଣ୍ଣନା କରିବା ଅବସରରେ ଲେଖକ ପାଠକ ପାଠିକାମାନଙ୍କର ମନୋରଞ୍ଜନ ପାଇଁ ମଧ୍ୟ କିଛି ହାସ୍ୟୋଦ୍ଦୀପକ ସାମଗ୍ରୀ ଯୋଗାଇ ଦେବାକୁ ଭୁଲିଯାଇ ନାହାନ୍ତି। ଯଥା: ଅମ୍ଳରୋଗୀ ଆଲୋକ ଘୋଷଙ୍କର (ଜଣେ ସହଯାତ୍ରୀ) ଅନ୍ତର୍ବସ୍ତ୍ର ଓ ପ୍ୟାଣ୍ଟରେ ବୁଢ଼ ହୋଇଯିବା (ଗୋଟେ ବଡ଼ ଦୁର୍ବାୟୁ ବାୟୁମଣ୍ଡଳକୁ ଦୂଷିତ କଲା। ତାପରେ ତରଳ ବିଷ୍ଠାର ଗନ୍ଧ। ପ୍ୟାଣ୍ଟ ଭିତରେ ଅନ୍ତର୍ବାସ ଚଢ଼ି ଉଦର ବର୍ଜିତ ତରଳ ପଦାର୍ଥରେ ଓଦା ହେଲା, ପାଦ ପର୍ଯ୍ୟନ୍ତ ବୋହିଗଲା - ପୃ.୬୯) । ଏବଂ କୃପଣ ଶେଠ୍ ବିଶନଲାଲଙ୍କ ବନ୍ୟାଞ୍ଚଳରେ ଉଲଗ୍ନ ହେବା କଥା (ଗୃହରେ ତାଙ୍କର ପରିଧାନ କେବଳ ଗାମୁଛା ଖଣ୍ଡିକ। ଏଣେ ପାଣି ତାଙ୍କର ଛାତି ଛୁଇଁଲାଣି। ଶିଢ଼ି ଉଠିଲା ବେଳେ ଅଣ୍ଟାର ଗାମୁଛାଟି ଶିଢ଼ିରୁ ବାହାରିଥିବା ଲୁହାରଡ଼ରେ ଗୁଡ଼େଇ ହୋଇଗଲା। ଜଳ ଭିତରେ। ହାତ ଲଗାଇ ତାକୁ ଖୋଜିବା ସମ୍ଭବ ନ ଥିଲା, କାରଣ ଗୋଟିଏ ହାତରେ ଟଙ୍କାଥଳି ଓ ଅନ୍ୟ ହାତ ମୁଣ୍ଡର ଟଙ୍କା ବାକ୍ସ ଉପରେ ଥିଲା। ଅଗତ୍ୟା ଗାମୁଛାଟିକୁ ଜଳରେ ବିସର୍ଜନ କରି ଉଲଗ୍ନ ଦେହରେ କୋଠା ଉପରକୁ ଉଠିଥିଲେ। (ପୃ୧୦୧) କ୍ରମଶଃ...

**ଅଗଷ୍ଟ ସଂଖ୍ୟା**

**ମିଷ୍ଟର ଖରସେଲ-୧୨**

**ଜାଙ୍ଗଲିକ ଉପନ୍ୟାସ ମିଷ୍ଟର ଖରସେଲ - ଏକ ବିହଙ୍ଗାବଲୋକନ**

ଏଥର ଆସିବା ଉପନ୍ୟାସଟିର ଦ୍ୱିତୀୟ ଅଙ୍କକୁ। ଶଙ୍କରବେଟା ଡେକାନ୍ ସର୍କସରେ ଯୋଗଦେବାର ପ୍ରାୟ ୨୦ ବର୍ଷ ବିତିଯିବା ପରେ ଦୈବାତ୍ ଲେଖକ ବୌଦ୍ଧ ସହର ଉପକଣ୍ଠରେ ରବୀନ୍ଦ୍ର ପରମାଣିକ ନାମକ ମାହୁନ୍ତର ଏକ ଦନ୍ତାହାତୀ, ମାଈ କୁକୁର (ମୋତି) ଓ ପୁରୁଷ ପାତିମାଙ୍କଡ଼ (ମନ୍ନୁ)ର ଚମତ୍କାର ଖେଳ ଦେଖିବାର ସୁଯୋଗ ପାଆନ୍ତି ଓ ଦନ୍ତାହାତୀ ତାର ଥୋଡ଼ପାରେ ଲେଖକଙ୍କ ମୁଣ୍ଡରେ ସିନ୍ଦୂର ବୋଳିଦିଏ। ରବୀନ୍ଦ୍ର ପରମାଣିକଠାରୁ ଲେଖକ ଅବଗତ ହୁଅନ୍ତି ଯେ ଏହି ଦନ୍ତାହାତୀ ହେଉଛି ଶଙ୍କର ବେଟା। ଏକଥା ଶୁଣି ଆନନ୍ଦରେ ଆତ୍ମହରା ହୋଇଯାଆନ୍ତି ସେ। କୁକୁର ମୋତିକୁ ଆଖି ଆଗରେ ରଖି ତା ଉପରେ ଲେଖକ ବର୍ଣ୍ଣନା କରିଛନ୍ତି କୁକୁର ଜାତିର ପ୍ରଭୁଭକ୍ତି ସମ୍ବନ୍ଧରେ ଅନେକ ସବୁ ଉଦାହରଣ ମାଧ୍ୟମରେ। ନିଜେ ପ୍ରତିଷ୍ଠା କରିଥିବା 'ସତ୍ୟାଶ୍ରମ'ରେ ଲେଖକ ପୋଷିଥିବା କୁକୁର 'ବାଘା' ଓ 'ଟୀକା' - ଏ ଦ୍ୱୟଙ୍କ କଥା କହିବାକୁ ମଧ୍ୟ ସେ ଭୁଲିଯାଇନାହାନ୍ତି। ମାଙ୍କଡ଼ ମୋତିର କଥା କହିବାକୁ ଯାଇ ପଶୁମାଆର ବି ପର ଛୁଆ ପ୍ରତି କିଭଳି ମାତୃସ୍ନେହ ପରିପୂର୍ଣ୍ଣ ହୋଇ ରହିଛି, ସେ କଥାର ବର୍ଣ୍ଣନା ଦେଇଛନ୍ତି। ରବୀନ୍ଦ୍ର ପରମାଣିକର ଏ ତିନୋଟି ଜୀବଙ୍କ ସହିତ କିପରି କ୍ଷୀର ନୀର ସମ୍ପର୍କ, ନିବିଡ଼ ଆତ୍ମୀୟତା ଓ ଅନ୍ତରଙ୍ଗ ଭଲପାଇବା ତାହା ଲେଖକ ବର୍ଣ୍ଣନା କରିଛନ୍ତି ଅତି ଚମତ୍କାର ଭାବରେ। ଏକ ପୌରାଣିକ ଆଖ୍ୟାନରେ ଉପସ୍ଥାପନା ଦ୍ୱାରା (...ଏହି ପୌରାଣିକ କାହାଣୀର ଅବତାରଣ କରିବାର ଉଦ୍ଦେଶ୍ୟ, ଶୁକମୁନି ତାଙ୍କ ମହାଜ୍ଞାନ ତପ ବଳରେ ଜନକ ରାଜାଙ୍କ ମନ ଭିତରେ ପ୍ରବେଶ କରିପାରିଥିଲେ।

କିନ୍ତୁ ଏଠି ରବୀନ୍ଦ୍ର ମାତ୍ର ତା ପାଳିତ ପ୍ରାଣୀମାନଙ୍କୁ ଭଲପାଉଥିବା ଜଣେ ସାଧାରଣ ମଣିଷ । ସେମାନଙ୍କୁ ଆନ୍ତରିକ ଅନାବିଳ ସ୍ନେହ, ଶ୍ରଦ୍ଧା ବଳରେ ହିଁ ହୁଏତ ସେ ପଶୁଙ୍କ ମନ ଭିତରକୁ ପ୍ରବେଶ କରିପାରୁଛି । ଶ୍ରଦ୍ଧା ତାର ମନ୍ତ୍ର, ଆନ୍ତରିକତା ତାର ବ୍ରତ । ଠିକ୍ ପିତା ଭଳି ସେମାନଙ୍କ ସୁଖ, ଦୁଃଖ, ସୁବିଧା, ଅସୁବିଧା, ମନ ଇଚ୍ଛାଦିକୁ ବୁଝିପାରିଛି ଏବଂ ଶିକ୍ଷା ଦେଉଛି (ପୃ.୧୭୫) ।

ଏହା ପରେ ପରେ ଲେଖକ ବର୍ଣ୍ଣନା କରିଛନ୍ତି ତାଙ୍କର ବିଲାତ ଗସ୍ତ କଥା ଏବଂ ନିରାମିଷ ଭକ୍ଷଣର ଉପକାରିତା ସମ୍ବନ୍ଧରେ ଦେଇଛନ୍ତି ବୈଜ୍ଞାନିକ ବ୍ୟାଖ୍ୟା । ବୈଜ୍ଞାନିକ ଏବଂ ଐତିହାସିକ ବ୍ୟାଖ୍ୟା ଦ୍ୱାରା ନିରାମିଷ ଆହାରର ବର୍ଣ୍ଣନାରୁ ଲେଖକ ମାଡ଼ିଯାଇଛନ୍ତି ଜନ୍ମ ମୃତ୍ୟୁ, ବ୍ରହ୍ମଜ୍ଞାନ ଇତ୍ୟାଦି ଆଡ଼କୁ । (...ହେଲେ ଏ ବ୍ରହ୍ମଜ୍ଞାନ କଣ ?... ଯିଏ ଜନ୍ମ ହୋଇଛି ତାର ମୃତ୍ୟୁ ନିଶ୍ଚିତ ଏବଂ ଯିଏ ମରିଛି, ତାର ଜନ୍ମ ନିଶ୍ଚିତ । ମୃତ୍ୟୁ ଏକ ଘର ପରିବର୍ତ୍ତନ ମାତ୍ର (ପୃଷ୍ଠା-୧୮୭) । ଲେଖକ ବର୍ଷେ ପରେ ବିଲାତରୁ ପ୍ରତ୍ୟାବର୍ତ୍ତନ କରିଛନ୍ତି ଭୁବନେଶ୍ୱରକୁ ଏବଂ ଖବରକାଗଜରୁ ପଢ଼ିଛନ୍ତି 'ମିଷ୍ଟର ଖରସେଲ' ଶିରୋନାମାରେ ପ୍ରକାଶିତ ଖବର । ମିଷ୍ଟର ଖରସେଲ୍ ନାମକ ଦନ୍ତାହାତୀ କିପରି ବଲାଙ୍ଗୀର, ବୌଦ୍ଧ ଜିଲ୍ଲା ଇତ୍ୟାଦିରେ ଅତ୍ୟନ୍ତ ହିଂସ୍ର ହୋଇ ଅନେକ କ୍ଷୟକ୍ଷତି ଘଟାଇଛି ଏବଂ ତାର ହିଂସ୍ରତା ଯୋଗୁଁ କେତେଜଣ ମଣିଷ ମଧ୍ୟ ମୃତ୍ୟୁବରଣ କରିଛନ୍ତି, ସେକଥା ଖବରକାଗଜରୁ ପଢ଼ିବା ପରେ ଲେଖକ ରବୀନ୍ଦ୍ର ପରମାଣିକର ଅନ୍ୱେଷଣରେ ବାହାରିଛନ୍ତି । ନିର୍ଦ୍ଦୋଷ ରବୀନ୍ଦ୍ରକୁ ପୋଲିସ ନକ୍ସଲ ବୋଲି ସନ୍ଦେହରେ ବାନ୍ଧି ନେଇ ଜେଲ୍ ଭିତରେ ରଖିଥିବାରୁ ଶଙ୍କରବେଟା ଓରଫ ମିଷ୍ଟର ଖରସେଲର ଏପରି ହିଂସାକାଣ୍ଡ । ଲେଖକଙ୍କର ସହାୟତାରେ ରବୀନ୍ଦ୍ର ପରମାଣିକ ଜେଲ୍‌ରୁ ମୁକ୍ତ ହୋଇଛି । ମୋତି ଓ ମନୁର ସନ୍ଧାନ ମଧ୍ୟ ମିଳିଛି ଓ ବନ୍ଧନଗ୍ରସ୍ତ ଖରସେଲକୁ ରବୀନ୍ଦ୍ର ନନ୍ଦନକାନନରେ ଦେଖା କରିଛି ଓ ପୁଣି ସେମାନଙ୍କର ସଂସାର ହସିଉଠିଛି । ଏତଦ୍‌ବ୍ୟତୀତ ଲେଖକ ମଧ୍ୟ ବର୍ଣ୍ଣନା କରିଛନ୍ତି ଚାର୍ଲସ ଡାରଉଇନଙ୍କର ବିବର୍ତ୍ତନବାଦ କଥା ଏବଂ ବଣର ରାଜା କିଏ ? ହାତୀ ନା ବାଘ - ଏ ସମ୍ବନ୍ଧରେ ଏକ ବିତର୍କ ।

ବାସ୍ତବରେ ଉପନ୍ୟାସଟିର ଦ୍ୱିତୀୟ ଅଙ୍କରେ ହାତୀ ସମ୍ବନ୍ଧରେ ଲେଖକ ବାଢ଼ିଦେଇଛନ୍ତି ଅନେକ ତଥ୍ୟାବଳୀ । ଏଇ ଯେମିତି ହାତୀମାନଙ୍କର ଓଜନ ପ୍ରାୟ ୫ ଟନ୍, ଉଚ୍ଚତା ପ୍ରାୟ ୧୩ ଫୁଟ, ସେମାନଙ୍କର ସହବାସର ସମୟ ୭ ଦିନ ଯାଏଁ ଓ ଗର୍ଭଧାରଣର ସମୟ ୨୨ ମାସ; ସେମାନଙ୍କର ହାରାହାରି ବୟସ ୮୦ରୁ ୧୦୦ ବର୍ଷ ଇତ୍ୟାଦି (ପୃଷ୍ଠା-୨୬୩/୨୬୪/୨୬୫) ।

ନାନା ପ୍ରକାରର ସୁନ୍ଦର ଚିତ୍ରରେ ପରିପୂର୍ଣ୍ଣ ୨୭୨ ପୃଷ୍ଠାର ଏ ଉପନ୍ୟାସଟିକୁ ପାଠକଲେ ଜାଣିହୁଏ ଶ୍ରୀଯୁକ୍ତ ମହାପାତ୍ରଙ୍କର ହୃଦୟର ଖୁବ୍ ପିଲାବୟସରୁ ପୋଷା ତଥା ବନ୍ୟଜନ୍ତୁ ଓ ପଶୁପକ୍ଷୀଙ୍କ ସମ୍ବନ୍ଧର କିପରି ଏକ ଅତ୍ୟୁତ୍ସାହ ଓ ଭଲପାଇବା ପୂରିରହିଛି । ସେହି ଅତ୍ୟୁତ୍ସାହ ଓ ଅଫୁରନ୍ତ ଭଲପାଇବା ଯୋଗୁଁ ସେ ପ୍ରକୃତିର ନିଘଞ୍ଚ ଅରଣ୍ୟ ମଧ୍ୟରେ ନିଜର ଜୀବନକୁ ବିପନ୍ନ କରି ଭ୍ରମଣ କରିଛନ୍ତି ଖୁବ୍ ବେପରବାୟ ଭାବରେ ଏବଂ ସେଇ ଭ୍ରମଣ ଅନୁଭୂତିକୁ ଅନେକ ସବୁ ବୈଜ୍ଞାନିକ ଓ ପୌରାଣିକ ତଥ୍ୟର ସହାୟତାରେ

ଅଜାଡ଼ି ଦେଇଛନ୍ତି ପାଠକମାନଙ୍କ ଆଗରେ 'ଜଙ୍ଗଲର ଜମାନବନ୍ଦୀ', 'ଅରଣ୍ୟ ଅତିଥି', 'ବ୍ୟାଘ୍ରନିନାଦ' ଏବଂ 'ମିଷ୍ଟର ଖରସେଲ୍' ଇତ୍ୟାଦି ଉପନ୍ୟାସ ମାଧ୍ୟମରେ। ପ୍ରକୃତରେ ଆପଣାର ଜୀବନକୁ ଯିଏ ଯେତିକି ପରିମାଣରେ ଯାହା ସହିତ ମିଶାଇ ଦେଇଛି, ସେ ସେହି ଅନୁପାତରେ ତାହାକୁ ଅନୁଭବ କରିପାରିଛି। ଶ୍ରୀଯୁକ୍ତ ମହାପାତ୍ରଙ୍କର ଏ ଉପନ୍ୟାସଟି ପଢ଼ି ଯେକେହି ମଧ୍ୟ ଅନୁଭବ କରିପାରିବ ସେ କିପରି ବଣଜଙ୍ଗଲ, ବନ୍ୟଜନ୍ତୁ ତଥା ପୋଷ୍ୟ ପ୍ରାଣୀମାନଙ୍କ ଅନୁଭବ ସହିତ ନିଜର ଅନୁଭବକୁ ମିଶାଇ ଦେଇଛନ୍ତି। ନଚେତ୍ ଜୀବଜନ୍ତୁମାନଙ୍କ ସମ୍ବନ୍ଧରେ ଏତେସବୁ ଅନୁଭୂତିମୂଳକ ବ୍ୟାଖ୍ୟା ଓ ତଥ୍ୟାବଳୀର ଉପସ୍ଥାପନା ଉପନ୍ୟାସଟିରେ ସମ୍ଭବ ହୋଇପାରିଛି କିପରି ? ସେ ଉପନ୍ୟାସଟିରେ ଗୋଟିଏ ସ୍ଥାନରେ ଲେଖିଛନ୍ତି - ପଶୁପକ୍ଷୀ କୀଟପତଙ୍ଗମାନେ, ଏପରିକି ବୃକ୍ଷମାନେ ମଧ୍ୟ ନିଜ ନିଜ ମଧ୍ୟରେ ବାର୍ତ୍ତାଳାପ କରନ୍ତି। ସ୍ୱର ମାଧ୍ୟମରେ ଓ ଅଙ୍ଗଭଙ୍ଗୀ ଦ୍ୱାରା ବାର୍ତ୍ତା, ଭାଗ ବିନିମୟ, ପରସ୍ପର ଇଚ୍ଛା ଆବେଗ ଇତ୍ୟାଦିକୁ ପ୍ରକାଶ କରନ୍ତି। ସେମାନଙ୍କର ଭାବ ଅଛି, ଭାଷା ଅଛି, ଭାବନା ଅଛି, କିନ୍ତୁ ମଣିଷକୁ ତାହା ଅଜଣା। ଜ୍ଞାନୀ ବୋଲାଉଥିବା ସର୍ବଜ୍ଞାନତା ମଣିଷ ସେମାନଙ୍କ କୂଜନ-କାକଳୀର ଭାଷା ଓ ଭାବ କେତେ ପରିମାଣରେ ବୁଝି ପାରିଥାଏ ? ....କିନ୍ତୁ ପଶୁପକ୍ଷୀ ନିଶ୍ଚିତ ଭାବେ ବୁଝିପାରନ୍ତି ଭଲପାଇବାର ଭାଷା, ଶ୍ରଦ୍ଧାର ପରିଭାଷା - ଏହାର ମଧ୍ୟ ଶତାଧିକ ଦୃଷ୍ଟାନ୍ତ ରହିଛି। ମୋର ମଧ୍ୟ ନିଜସ୍ୱ ଅନୁଭୂତି ଅଛି... (ପୃଷ୍ଠା-୧୪୮)

ସର୍ବଶେଷରେ ଉପନ୍ୟାସଟିର ନାମକରଣକୁ ନେଇ ଓ ଉପନ୍ୟାସର ତଥ୍ୟାବଳୀକୁ ତଥା କାହାଣୀକୁ ନେଇ କିଛି କଥା ଏଠାରେ ଉପସ୍ଥାପନା ନ କରି ରହିପାରୁନି। ଉପନ୍ୟାସଟିର ନାମ 'ମିଷ୍ଟର ଖରସେଲ' ରଖିବା ପଛରେ ଯେଉଁ କାରଣ ରହିଛି ତାହା ହେଲା ଲେଖକଙ୍କ ହସ୍ତୀମାନଙ୍କ ପ୍ରତି ଥିବା ଅହେତୁକ ପ୍ରେମ ଓ ଆକର୍ଷଣ। ଲେଖକ ପୁସ୍ତକର ଆରମ୍ଭରୁ ତାଙ୍କର ଉତ୍ସର୍ଗ ପୃଷ୍ଠାଟିରେ ମଧ୍ୟ ହସ୍ତୀମାନଙ୍କ ସମ୍ବନ୍ଧରେ ବିଭିନ୍ନ ଆଖ୍ୟାନମାନ ଉପସ୍ଥାପନା କରିଛନ୍ତି। ଏହା ସୂଚାଇ ଦେଉଛି ତାଙ୍କର ଗଜରାଜ ପ୍ରତି ଥିବା ପ୍ରେମଭାବକୁ ଏବଂ ଉପନ୍ୟାସଟିରେ ନାୟକ ମଧ୍ୟ ଏକ ଦନ୍ତାହାତୀ। ସ୍କୁଲର ଭଲ ଛାତ୍ରକୁ ଯଦି ବାଘ ସମ୍ବନ୍ଧରେ ରଚନାଟିଏ ଲେଖିବାକୁ ଦିଆଯାଏ, ଭଲ ଛାତ୍ର ଭାବେ ବାଘ ସହିତ ଭାଲୁ, ସିଂହ, ହାତୀ, ହରିଣ ଇତ୍ୟାଦି ଜନ୍ତୁମାନଙ୍କ ସମ୍ବନ୍ଧରେ ଯେହେତୁ ତାହାର ଗଭୀର ଜ୍ଞାନ, ତେଣୁ ଅତ୍ୟୁତ୍ସାହରେ ବାଘ ସହିତ ଅନ୍ୟ ଜନ୍ତୁମାନଙ୍କ ସମ୍ବନ୍ଧରେ ବି ସେ ଗୁଡ଼ାଏ ଲେଖିପକାଇବାର ସମ୍ଭାବନା ରହିଛି ଓ ସେ ସମ୍ଭାବନା ସତ୍ୟ ହେଲେ 'ବାଘ' ରଚନାଟିରେ ଶୃଙ୍ଖଳାରେ ବ୍ୟାଘାତ ପହଞ୍ଚିଥାଏ। ଏଠାରେ 'ମିଷ୍ଟରେ ଖରସେଲ' ଉପନ୍ୟାସଟିରେ ଶ୍ରୀଯୁକ୍ତ ମହାପାତ୍ରଙ୍କର ଅବସ୍ଥା ତାହା ହିଁ ହୋଇଛି। ଜଣେ ଦକ୍ଷ ଶିକାରୀ ଓ ଅତ୍ୟୁତ୍ତମ ଅରଣ୍ୟ ତଥା ବନ୍ୟଜନ୍ତୁ ପ୍ରେମୀ ଛାତ୍ର ଭାବରେ ସେ 'ମିଷ୍ଟର ଖରସେଲ' ଓ ହାତୀମାନଙ୍କ ସମ୍ବନ୍ଧରେ କହିବାକୁ ଯାଇ କେତେ କୁଆଡ଼କୁ ଅତ୍ୟୁତ୍ସାହରେ ଡଗ ଡଗ ହୋଇ ମାଡ଼ିଯାଇଛନ୍ତି ଏବଂ ପୌରାଣିକ ଓ ବୈଜ୍ଞାନିକ ତଥ୍ୟକୁ ଆଧାର କରି କେତେ କେତେ ବନ୍ୟଜନ୍ତୁ ଓ ସରୀସୃପଙ୍କ କଥା ସହିତ ଅନ୍ୟ ଅନେକ କଥା କହିପକାଇଛନ୍ତି। ଉପନ୍ୟାସଟିରେ ହାତୀମାନଙ୍କ ସମ୍ବନ୍ଧରେ ଲେଖକଙ୍କର ପୌରାଣିକ

ଓ ବୈଜ୍ଞାନିକ ତଥ୍ୟ ସମ୍ବଳିତ ବର୍ଣ୍ଣନାର ଚମତ୍କାରିତାକୁ ବୁଝିହେଉଛି। ହେଲେ ହାତୀ କଥା କହୁ କହୁ ଯେଉଁ ଅନ୍ୟାନ୍ୟ ଅନୁଭୂତି ଗୁଡ଼ିକୁ (ପ୍ରଥମ ଅଙ୍କରେ - ଲେଖକଙ୍କୁ ଭାଲୁ ଆକ୍ରମଣ କରିବା କଥା, ଆଦିବାସୀ ମାନଙ୍କର ଗାଆଁ ଜୀବନ ଓ ପର୍ବପର୍ବାଣୀର ବର୍ଣ୍ଣନା, ମାଛଧରାଳୀ ଭଗିଆ କଥା, ଶ୍ରମ ସମ୍ବନ୍ଧରେ ଲେଖକଙ୍କର ଭାଷଣ, ଅନୁଭୂତିମୂଳକ ଗପ ବାଦୁଡ଼ି ଓ ଅହିରାଜ ସାପ ଶିକାର, ଅଗ୍ନି ସମ୍ବନ୍ଧରେ ବର୍ଣ୍ଣନା, ଝିଙ୍କ, କୋଚିଲାଖାଇ ଚଢ଼େଇ, ବଳୁକାପ୍ତା କଥା, ଅଜଗର ସାପ, ଢାମଣା ସାପ ଓ ସର୍ପକୂଳ ସମ୍ବନ୍ଧରେ ବର୍ଣ୍ଣନା, ନିଜର ବାଲ୍ୟାବସ୍ଥା କଥା, ସହଯାତ୍ରୀ ନାଥଶର୍ମାଙ୍କର ଜ୍ୟୋତିଷ ବିଦ୍ୟା କଥା ଏବଂ ଦ୍ୱିତୀୟ ଅଙ୍କରେ - କୁକୁରମାନଙ୍କର ପ୍ରଭୁଭକ୍ତି ଓ ପ୍ରକାରର ବର୍ଣ୍ଣନା, ନିଜ ବିଲାତ ଗସ୍ତ, ନିରାମିଶ ଭୋଜନର ଉପକାରିତା, ମୃତ୍ୟୁ ପରେ ଜୀବନ, ବ୍ରହ୍ମଜ୍ଞାନ, ସତ୍ୟାଶ୍ରମ ନିକଟସ୍ଥ ମଉନବାବାଙ୍କ କଥା, ମଣିଷର ବୟସ କିପରି ୧୦୮ ବର୍ଷ, ସେ କଥା, ପଶୁପକ୍ଷୀମାନଙ୍କର ଆତ୍ମହତ୍ୟା ପ୍ରସଙ୍ଗ, ବିବର୍ତ୍ତନବାଦ, ଚାକରରୁ ଚକ୍ରବର୍ତ୍ତୀ ହେବା ପ୍ରସଙ୍ଗ ଇତ୍ୟାଦି ଇତ୍ୟାଦି) ଅତ୍ୟୁତ୍ସାହରେ ଲେଖକ ଉପନ୍ୟାସଟିରେ ଉପସ୍ଥାପିତ କରିଛନ୍ତି ସେସବୁ କାହାଣୀ ପାଠପାଠିକାମାନଙ୍କର ହସ୍ତୀମାନଙ୍କୁ ଜାଣିବାର ଆଗ୍ରହରେ ହସ୍ତକ୍ଷେପ କରୁଥିବାର ଏବଂ 'ମିଷ୍ଟର ଖରସେଲ୍' ନାମକରଣର ଶୃଙ୍ଖଳାରେ ବ୍ୟାଘାତ ସୃଷ୍ଟି କରୁଥିବାର ହୋଇପାରେ। କିନ୍ତୁ ରଚନାଟିକୁ ସେ କେବଳ ହାତୀ ଭିତରେ ରଖି ନାହାନ୍ତି। ବରଂ ବିଭିନ୍ନ ଜନ୍ତୁଙ୍କ ସହିତ ତାଙ୍କର ସମ୍ପର୍କ ଏବଂ ଜୀବନ ଦର୍ଶନ ଓ ବିଶ୍ୱବନ୍ଧୁତାର ପ୍ରମାଣ ଦିଏ। କହନ୍ତି ପୁସ୍ତକରେ ଉଲ୍ଲିଖିତ 'ଝିଙ୍କୋପାଖ୍ୟାନ' ଓ 'ବଳୁକାପ୍ତା' ଉପାଖ୍ୟାନ ତାଙ୍କ ନିଜ ସୃଷ୍ଟି, ଯେମିତି ତପସ୍ୟାରତ ଋଷିମାନେ ଉପାଖ୍ୟାନ ସୃଷ୍ଟି କରୁଥିଲେ । ସେତେବେଳେ କେଉଁ ପୁସ୍ତକ, ଜ୍ଞାନକୋଷ ବା ଇଣ୍ଟରନେଟ୍ ଥିଲା କି ?

ଅବଶ୍ୟ ଶ୍ରୀଯୁକ୍ତ ମହାପାତ୍ର 'ଗଛ ଛନ ଛନ ଗହନ ବନ' ନାମଟିକୁ ପ୍ରଥମେ ବିଚାର କରିଥିଲେ ଏବଂ ପରେ ନିଜର ବିଚାରଧାରାରେ ପରିବର୍ତ୍ତନ ଆଣି ତଦନୁସାରେ ତଥ୍ୟ ଓ ବର୍ଣ୍ଣନାର ମିଶ୍ରଣ କରି 'ମିଷ୍ଟର ଖରସେଲ' ନାମରେ ଉପନ୍ୟାସଟିକୁ ନାମିତ କରିଛନ୍ତି। ତେଣୁ ଅନୁଭୂତିସବୁର ଉପସ୍ଥାପନା ଓ ନାମକରଣକୁ ନେଇ ପ୍ରଥମରୁ ଲେଖକ ଦ୍ୱନ୍ଦ୍ୱାତ୍ମକ ଅବସ୍ଥାରେ ଥିବାର ମନେହୁଏ। ତେବେ ଏହାକୁ ସ୍ୱୟଂ ଅନୁବାଦ ଓ ବର୍ଦ୍ଧିତ କରି 'ୱାଇଲଡ ମିରର୍' ନାମକରଣ କରି ବର୍ତ୍ତମାନ ଯନ୍ତ୍ରସ୍ଥ ଯାହା ମୁଁ ରାଧାମୋହନ ବାବୁଙ୍କଠୁ ଶୁଣିଲି। ଅତ୍ୟୁତ୍ତମ କଥା। ଅନ୍ୟ ଭାଷାଭାଷୀ ବ୍ୟକ୍ତି ଆମ ଓଡ଼ିଆ ମସଲାର ଗୁଣ ଓ ସୃଜନର ମିଠା ଚାଖିବା ଉଚିତ। ସେ ଯାହା ହେଉନା କାହିଁକି, କେବଳ ଓଡ଼ିଆ ସାହିତ୍ୟାକାଶରେ ନୁହେଁ, ବରଂ ବିଶ୍ୱ ସାହିତ୍ୟାକାଶରେ ଶ୍ରୀଯୁକ୍ତ ମହାପାତ୍ରଙ୍କର ଜାଙ୍ଗଲିକ ଉପନ୍ୟାସ 'ମିଷ୍ଟର ଖରସେଲ୍' ଏକ ଧ୍ରୁବତାରା ବୋଲି ସ୍ୱୀକାର କରିବାକୁ ହେବ।

- **ବଟକୃଷ୍ଣ ମହାପାତ୍ର,** ସମ୍ପାଦକ, ଭିନ୍ନ ମଣିଷ - ଭିନ୍ନ ପୃଥିବୀ ଓ ଅସୀମ ଓଡ଼ିଶା ମୁଖପତ୍ର, ରାମକୃଷ୍ଣ ଷ୍ଟ୍ରୀଟ, ଆଦାମ୍ବକମ, ଚେନ୍ନାଇ-୬୦୦୦୮୮, ଫୋନ୍ : ୦୯୮୪୦୬୭୮୮୪୭






ପୁସ୍ତକ ନାମ : ୱାଇଲଡ୍ ମିରର୍

ପ୍ରକାଶକ : ପ୍ରତିଭା ମହାପାତ୍ର, ୧୪୭, ବୁଦ୍ଧେଶ୍ୱରୀ, ଭୁବନେଶ୍ୱର-୬

ପ୍ରକାଶ କାଳ : ୨୦୧୫

ପୃଷ୍ଠା : ୩୮୪

ପ୍ରଚ୍ଛଦ : ସମୀର୍ ସିଂହ

ମୂଲ୍ୟ : ୪୦୦/-

# A testimony of jungle life

**By Basanta Satpathy**

## I

To set this present volume of translation *Wild Mirror* by Radhamohan Mohapatra (originally written in Odia as *Mister Kharsel* by the same author) in proper context, let us have an overview of some of the trends and traditions relating to hunting narrative writings of the last century.

The legacy of British colonial wildlife narrative tradition was formed by two eminent hunters, James Edward Corbett (1875-1955) and Kenneth Anderson (1910-1974) who put on record their experiences of stalking and shooting big games in Indian jungles. In the seven books1 by Corbett, published between 1944 and 1960 and eight books2 by the Scottish hunter Anderson (his first book published in 1959) we get a vivid and true picture of the land they operated on. While Corbett confined his activities to the lower Himalayas- Kumaon and Nainital– Anderson chose the jungles adjacent to Bangalore, in thFe Madras and Mysore Presidencies. A genuine response to their narratives has been recorded by a blogger3 as given below:

Corbett tells the story as seen by the hunter with his eye just above the barrel and finger on the trigger. Anderson, on the other hand, is a more vivid student of nature. One gets an intimate picture of the forest, its inhabitants (including the flora) and their behavior patterns when reading Anderson.

Murali Sivaramakrishnan, in one of his essays 4 published in January, 2014 observes that their works play a greater role than merely providing amusement to the reader through exciting details: To this extent their hunting narratives are more than mere adventure tales, they need to be re-read as documents of environmental history, leading us toward a bio-ethical & aesthetic sense of belonging.

It is true that the history of hunting is very old. "Hunting runs so deeply in us that we cannot easily separate it from blood", says Charles Bergman5. The primitive man killed animals out of necessity, either to protect himself or for food. As civilization advanced, hunting became a way of life, a source of earning a fast buck by selling the hunt's body-parts. Melville's *Moby Dick* shows hunting as an occupation, besides being an adventure. Captain Ahab's whale-hunt turns into a nightmare; he pursues Moby Dick to avenge the loss of one of his legs ripped off by the monster.

Ernest Hemingway's *The Old Man and the Sea* struggles to establish a peculiar kind of relation between the hunter and the hunt, that of love and hate :

Santiago: Fish, I love you and respect you very much. But I will kill you dead before the day ends.

Over the years the paradigm has shifted; the perception of the hunter has changed considerably. Massive destruction offorests and indiscriminate killing of wildlife have taught that nature has its own law, and to interpret nature through human law is not only erroneous but also suicidal. Therefore, hunting narratives have become a document of transformation, transformation from a quest for romantic excitement to an earnest appeal for conservation and preservation of wilderness. Dr. Salim Ali, the renowned ornithologist and the author of *The Fall of a Sparrow*, explains how the death of a sparrow changed the course of his life, his perception towards the non-human world. No surprise that his book delivers a message of preservation and conservation of nature with its bio-diversity intact.

The Vedas insist on the unity of creation and the interdependence of all created beings, that everything is related to everything else. Even one of the Vedas**6** speaks on clear terms: The earth is full of energy, and the same energy flows through its herbs and other medicinal plants, the clouds carry energy in the form of thunder, and also there is energy inside stone, and the same energy is prevalent among peoples and animals in the form of hunter. May that energy sustain us. In other words it emphasizes on the importance of bio-ethical and aesthetic sense of belonging.

## II

In this regard *Wild Mirror* stands as the champion of wildlife preservation and eco-consciousness. Radhamohan Mohapatra, in translating his own Odia version *Mister Kharsel*, has demonstrated here how hunting is a matter of heritage and culture, a revelation of the Supreme Soul and a document of self realization.

Going through Radhamohan's *Wild Mirror* is like passing through a maze of mirrors– mirrors that reflect not only images of wildlife, but also human passions at its height. Here is a man with the heart of a poet and skills of a huntsman– flute in one hand and gun in the other. The message that he sends through the text is loud and clear, that the fate of wildlife and wild nature is certainly linked to the fate of the entire universe.His love for nature, even while he is in the process of hunting, is expressed thus : Whenever I got a little time and opportunity I used to get pleasure in spending it in the dense forest where my flute, gun and books were my close companions xxxx. I kept my senses open to the wonderful nature around xxxx. It appeared as if the tree had lowered its fruits nearer to me to my mouth's reach like a mother - cow lowering her udder for the hungry calf to suck milk to its heart's content. (**Wild Mirror p-14**)

It is amazing to note that the canvas of *Wild Mirror* is wider than all other hunting narratives written so far, in India and abroad. Its broad spectrum ranges from dinosaur to hornbill bird, (elephants, tigers, bears, snakes, dogs, monkeys in between), from great hunters like Mohapatra and Prem to Subal and Khema, from ancient myths to the theory of transcendentalism. In the process, he has created two immortal characters of the animal world: Mister Kharsel the tusker and the pivotal the pivotal character who claimed a berth in the *Guinness Book of World Records*, and Saeba, the tiger with a saint's heart. This is how a newspaper reports on Kharsel - "He was not a king, yet he created a storm of controversy in the forum of the state legislature. Nor was he a criminal, but many cases were filed in the court of law against him. There was nation-wide clamour: Kill him! xxx But there were many who loved him; they argued, he should be allowed to go free. He was the most discussed and debated hero– Mister Kharsel." (Wild Mirror: p.159)

Kharsel's shift to Nanadankanan and the establishment of Kharsel Elephant safari at Nandankanan Zoological Park are such activities through which the identity of the hunter and that of an environmentalist are merged together. Such a necessity was felt by Justin Herman7, as recorded in his book *Hunting and the American Imagination* : Hunters and environmentalists must learn to share a tent with one another. *Wild Mirror* is highly innovative in nature. First of all, people of the world will have an opportunity to see the hills and jungles of eastern India, of Odisha in particular. It can be well pictured as a sparkling glow of the jungle-life of the eastern world. Secondly, it is a fictionalisation of facts, not the reverse. Characters are developed to the full as it happens in case of Subal. Relationships are prioritised, be it Rabindra (mahaut)– Shankar Beta aka Kharsel(a huge elephant) or Subal – Sunki, foster mother Rangi Apa – monkey child Manu or man-animal relationship. Here is an example of the milk of human kindness in the context of Saeba: " When it became dark we left the tiger [ Saeba ] where it was and returned to our place. We had no desire to take dinner as it happened to a host whose guests remained unfed. Next day we went to Jhampi with lamb meat to feed the tiger with. The tiger ate all of it greedily, gnawing bones with a cracking noise. I felt as if my own hunger had disappeared." (Wild Mirror: p.157)

In chapter 8 while describing the behavior of snake-world, he could be able to hatch some snake eggs by country method and 'scrupulously left the new burns in their places from where they had been stolen'(page181) . This speaks of the heart and mind of a hunter where indiscriminate destruction is prescribed.

Now, the question that looms large over us in gigantic proportions is how to determine the position of Mohapatra as a hunter in the present scenario, or, in other words, what kind of hunting he is doing, taking into consideration that he has

killed only a bear and a man-eater and a few snakes, that too under duress, in his life-time? Considering the amount of spirituality and intent of universal happiness in it I would like to join hands with David Peterson to call it "honourable hunting":

... honourable hunting is a spiritual sacrament, a humbling genuflection to our evolutionary design, genetic plan and nutritional needs, as well as a sacred affirmation of our ancient blood bond with the wildings that for millions of years fed us, fed on us, and, in time, made us human. Thus we are created.

A word about translation. For a long time a debate has been continuing over the role of the translator. It is generally accepted that the translator is 'secondary'; he must be faithful to the author as a dog to his master. On the other hand, there are scholars who argue that translator's position should be elevated to that of a creator. But here is the fear that excess liberty might spoil the work of art. In his attempt to find a middle path Liu Jiangang9 of Zhejiang University of Technology states the following : Hu Gengshen, one of the key proponents Of eco-translatology, particularly emphasises the translator's central role in translation. He the translator in a position equal to that of the advocates that eco-translatology should place author.

In relation to *Wild Mirror* the author and the translator are one and the same person. Mr. Mohapatra has done a great job as a translator and he deserves to occupy a berth in eco-translatology. In his view hunting is as holy as an act of prayer, as spiritual as the melody of a flute and as rapturous as the beauty of nature. He used hunting as a lens through which to view the world of nature and the non-human beings.

I wish the author all success.

## References

1. **Corbett's books :** *The Temple Tiger, Man- Eaters of Kumaon, The Man-Eating Leopard of Rudraprayag, My India, Jungle Lore, Tree Tops.*

2. **Anderson's books :** *Nine Man-eaters and One Rogue, The Black Panther of Sivanipalli and other Adventure of the Indian Jungle, Jungles Long Ago, Man-Eaters and Jungle Killers, The Tiger Roars, Tales from Indian Jungle, This is the Jungle, The Call of the Man-eater.*

3. http://ramawarrier.com/books/anderson-and-corbett/

4. **Murali Sivaramakrishnan :** *True chronicles: The Jungle Narratives of Jim Corbett and Kenneth Anderson- from Big Game Hunting to conservation of Wild life and Biodiversity*

5. **Charles Bergman :** *Orion's legacy: A Cultural History of Man as Hunter*

6. **Atharva Veda:** *Verse 19*

7. **Daniel Justin Herman :** *Hunting and the American Imagination*

8. **David Peterson:** *Heartsblood: Hunting, Spirituality and Wildness in America*

9. **Liu Jiangang :** *The Ecology of Ecotranslation: The Importance of Titles and Pronouns.*

**Prof. Basant K. Tripathy**
Department of English
Ravenshaw University, Cuttack



**କାଦମ୍ବିନୀ, ଫେବୃୟାରୀ ୧୭**

ସୁପରିଚିତ କଥାଶିଳ୍ପୀ ରାଧାମୋହନ ମହାପାତ୍ରଙ୍କ ଦ୍ୱାରା ଓଡିଆ ଭାଷାରେ ରଚିତ ମୂଳ ପୁସ୍ତକ 'ମିଷ୍ଟର ଖର୍ସେଲ'ର ଇଂରାଜୀ ଅନୁବାଦ। ଅରଣ୍ୟ-ପ୍ରକୃତି ଓ ତାହାରି କୋଳରେ ବସବାସ କରୁଥିବା ସକଳ ପ୍ରାଣୀମାନଙ୍କୁ ନେଇ କେବଳ ରୋଚକପୂର୍ଣ୍ଣ କାହାଣୀ ନୁହେଁ ବରଂ ସେଥିରେ ମଣିଷର ସ୍ୱେଚ୍ଛାଚାର, ବିରଳ ପ୍ରାଣୀମାନଙ୍କ କ୍ଷୟ ଏବଂ ପ୍ରକୃତିର ଅନୁରଣିତ ପରିସ୍ଥିତି ସମ୍ପର୍କରେ ସୁନ୍ଦର ବର୍ଣ୍ଣନା ସବୁ ରହିଛି। ପ୍ରଶୁପକ୍ଷୀମାନଙ୍କର ତ୍ରସ୍ତ ଧ୍ୱନୀ ଗୁଞ୍ଜନ ଅନୁରଣିତ ହୋଇ ସମ୍ବେଦନଶୀଳ ପାଠକଙ୍କୁ ଏଥିପ୍ରତି ସଚେତନ କରିଦିଏ। ମୂଳ ଓଡିଆ ପାଠର ଇଂରାଜୀ ଅନୁବାଦ ଦେଶ ବିଦେଶର ପାଠକ ପାଠିକାମାନଙ୍କ ନିକଟରେ ଏହି ଅରଣ୍ୟ ପରିବେଶ ସମ୍ପର୍କିତ ପାଠକୀୟ ତୃପ୍ତି ଦେବା ସହିତ ଏକ ସଚେତନମୂଳକ ସ୍ପନ୍ଦନ ଜାଗ୍ରତ କରାଇବ ବୋଲି ଆଶା କରାଯାଏ। ମୂଳ ଓଡିଆ ରଚନାର ଏହି ସୁନ୍ଦର ନିଜେ ନିଜର ବହି ଅନୁବାଦ ପାଇଁ ଧନ୍ୟବାଦାର୍ହ।



ପୁସ୍ତକ ନାମ : ଜଙ୍ଗଲର ଜମାନବନ୍ଦୀ

ପ୍ରକାଶକ : ପ୍ରତିଭା ମହାପାତ୍ର,
୧୪୭, ବୁଦ୍ଧେଶ୍ୱରୀ,
ଭୁବନେଶ୍ୱର-୬

ପ୍ରକାଶ କାଳ : ୫.୨.୧୯୯୪

ପୃଷ୍ଠା : ୧୬୪

ପ୍ରଚ୍ଛଦ : ଅସୀମ ବସୁ

ମୂଲ୍ୟ : ୪୫/-






'ଜଙ୍ଗଲର ଜମାନବନ୍ଦୀ' ଉନ୍ମୋଚନ ବେଳେ। ଉନ୍ମୋଚନ କରୁଛନ୍ତି ଡଃ ପ୍ରସନ୍ନ ପାଟ୍ଟଶାଣୀ, ଓଡିଶା ରାଜ୍ୟପାଳ ଶ୍ରୀ ସତ୍ୟନାରାୟଣ ରେଡ୍ଡି।

# ଅରଣ୍ୟର ଅନ୍ତରଙ୍ଗ ଚିତ୍ର, ଜଙ୍ଗଲର ଜମାନବନ୍ଦୀ

*- ବିଭୂତି ପଟ୍ଟନାୟକ*

ମଣିଷର ଆଦି ବାସଭୂମି ଅରଣ୍ୟ । ପୃଥିବୀ ସୃଷ୍ଟିର ଅନେକ ଅନେକ ବର୍ଷ ପରେ ଏନ୍‌ଜିସ୍ପୋର୍ମ ବା ଉଦ୍‌ଭିଦ ଗୋଷ୍ଠୀର ଜନ୍ମ । କେତେବର୍ଷ ପରେ କିଏ ଜାଣେ ? ଉଭିଦ ବିଜ୍ଞାନୀମାନଙ୍କ ଧାରଣା, ପ୍ରାୟ ଦଶ କୋଟି ବର୍ଷ ଆଗେ ରୁକ୍ଷ ଧୂଷର, ଜଳ କଲ୍ଲୋଳିତ ପୃଥିବୀ ସବୁଜ ଗଛପତ୍ର ଆଉ ରଂଗୀନ ଫୁଲ ଫଳରେ ପ୍ରଥମେ ପରିଶୋଭିତ ହୋଇଥିଲା । ଦଶ କୋଟି ବର୍ଷ ! ଏତେ ବଡ ସଂଖ୍ୟା ହିସାବ କଲାବେଳେ ବୋଧଶକ୍ତି କ୍ଲାନ୍ତ ହୋଇଯାଏ । ପ୍ରଖର ରୌଦ୍ରରୁ ସ୍ୱତଃ ଧୋଇଯାଏ । ଦଶ କୋଟି ବର୍ଷର ପରିସଂଖ୍ୟାନର ଜଟିଳତା ଛାଡି ମନ ଛୁଟିଯାଏ ରାମାୟଣ ପାଖକୁ ।

ରାମାୟଣରେ ତ ବର୍ଣ୍ଣିତ ହୋଇଛି ସୀତାଙ୍କୁ ରାବଣ ଧରିନେଲାବେଳେ ଅପହୃତା ସୀତା ବୃକ୍ଷମାନଙ୍କୁ ହିଁ ସମ୍ବୋଧନ କରି କହିଲେ, ହେ ବୃକ୍ଷଗଣ ! ଏ ପାଷାଣ୍ଡ ରାବଣ ମୋତେ ଧରି ନେଉଯାଉଛି । ଏକଥା ତମେ ମୋର ପତି ଦେବତାଙ୍କୁ କହିବ । ସେ ଏଇ ପରନାରୀ ଅପହରଣକାରୀ ରାବଣଙ୍କୁ ବଧକରି ମୋତେ ଉଦ୍ଧାର କରିବେ । ଲଙ୍କାର ରାକ୍ଷସପୁରୀରେ ସୀତା ଯେଉଁଠି ବନ୍ଦିନୀ ହୋଇ ରହିଥିଲେ, ସେ ତ ଏକ ଅରଣ୍ୟ, ଅଶୋକ କାନନ ! ପୁଣି ସ୍ୱାମୀ ପରିତ୍ୟକ୍ତା ସୀତାଙ୍କୁ ଜ୍ୟେଷ୍ଠଭ୍ରାତା ରାମଚନ୍ଦ୍ରଙ୍କ ନିର୍ଦ୍ଦେଶରେ ଲକ୍ଷ୍ମଣ ଯେଉଁଠି ଛାଡିଦେଇ ଆସିଥିଲେ ସେ ତ ଏକ ଗହନ ଅରଣ୍ୟ । ପରିତ୍ୟକ୍ତା ଭୂମିକନ୍ୟା, ଅନ୍ତସତ୍ତ୍ୱା ସୀତା ନିଃସହାୟତାରେ କ୍ରନ୍ଦନ କରୁଥିବା ବେଳେ ତ ତାଙ୍କୁ ସାନ୍ତ୍ୱନା ଦେଇଥିଲେ ଅରଣ୍ୟର ଗଛଲତା, ଅରଣ୍ୟଚାରୀ କ୍ଷିପ୍ର-ଚାରଣ ମୃଗ ।

ସେଦିନ ହୁଏତ ଅରଣ୍ୟର ଗଛଲତା, ପଶୁପକ୍ଷୀ ମଣିଷ ସହିତ ଭାବ ବିନିମୟ କରିପାରୁଥିଲେ, ସେମାନଙ୍କ ସୁଖ ଦୁଃଖରେ ଭାଗ ନେଉଥିଲେ । କିନ୍ତୁ ବସତି ସ୍ଥାପନ ପାଇଁ ବୁଦ୍ଧିଭ୍ରଷ୍ଟ ମଣିଷ ଯେଉଁଦିନ ବଣ ଅରଣ୍ୟ କାଟି ସଫା କରିବାକୁ ଲାଗିଲା ସେଇଦିନୁ ଗଛଲତା, ବଣ୍ୟପଶୁମାନଙ୍କ ସହିତ ମଣିଷର ତୁଟିଗଲା ଆତ୍ମୀୟ ସଂପର୍କ । ସୃଷ୍ଟିହେଲା ଖାଦ୍ୟ ଖାଦକର ନୂତନ ଜଟିଳ ସମ୍ବନ୍ଧ । ଗଛକାଟିବା ଆଉ ପଶୁ ଶିକାର ମଧ୍ୟରେ ପ୍ରକଟିତ ହେଲା ଆଦିମ ହିଂସ୍ରତା । ପଶୁ ଓ ମଣିଷ ମଧ୍ୟରେ ପ୍ରକୃତିଗତ ପାର୍ଥକ୍ୟ କ୍ରମଶଃ ହ୍ରାସ ହେବାକୁ ଲାଗିଲା ।

ତଥାପି ମୋ ଭଳି ମଣିଷକୁ ଘଞ୍ଚ ଅରଣ୍ୟର ନିବିଡ ଶୀତଳତା ହାତଠାରି ଡାକେ । ଜଙ୍ଗଲର ନାମ ଶୁଣିଲେ ମୋ ଭିତରେ ଏକ ଆଦିମ ଆନନ୍ଦ ସ୍ୱତଃ ଉଦ୍ବରିତ ହୋଇଯାଏ । ସେଇଭଳି ଏକ ଆକର୍ଷଣରେ ମୁଁ ଟାଣି ହୋଇଯାଇଥିଲି ରାଧାମୋହନ ମହାପାତ୍ରଙ୍କ ଜଙ୍ଗଲର ଜମାନବନ୍ଦୀ ଉପନ୍ୟାସ

ପାଖକୁ । ଶହେ ଚଉଷଠି ପୃଷ୍ଠାର ସେଇ ଉପନ୍ୟାସ ପଢ଼ିଲା ବେଳେ ଏକ ଜାଙ୍ଗଲିକ ସୌନ୍ଦର୍ଯ୍ୟର ଦୀପ୍ତିରେ ମୋର ମନ ଉଦ୍‌ଭାସିତ ହୋଇଯାଉଥିଲା ।

ରାଧାମୋହନ ମହାପାତ୍ର ଓଡ଼ିଆ କଥା ସାହିତ୍ୟରେ ନୂତନ ନୁହଁନ୍ତି । ଜଙ୍ଗଲର ଜମାନବନ୍ଦୀ ଉପନ୍ୟାସ ଆଗରୁ ତମସାତୀର୍ଥ, ସତ୍ୟମ୍ ଏବ, ପ୍ରଥମ ପ୍ରଭାତ ଓ 'ଝରେ ଶ୍ରାବଣ ଝୁରେ ଫଗୁଣ' ପ୍ରଭୃତି କେତେଖଣ୍ଡ ଉପନ୍ୟାସ ପ୍ରକାଶିତ ହୋଇସାରିଛି । ଏସବୁ ଉପନ୍ୟାସ ମୁଁ ପଢ଼ିନାହିଁ । କିନ୍ତୁ ପଢ଼ିସାରିଛି ତାଙ୍କର 'ଝରେ ଶ୍ରାବଣ ଝୁରେ ଫଗୁଣ' ଉପନ୍ୟାସର ସାବଲୀଳ ଭାଷା, ରୋମାଣ୍ଟିକ୍ ଭାବପ୍ରବଣତା ମୋତେ ମୁଗ୍ଧ କରିଛି । ତାହା ଏକ ମୁଖପାଠ୍ୟ ଉପନ୍ୟାସ । ସେଥିରେ ଓଡ଼ିଆ ଭାଷାରେ ପ୍ରକାଶିତ ଅନ୍ୟ କେତେକ ରୋମାଣ୍ଟିକ୍ ଉପନ୍ୟାସଠାରୁ ସେଥିରେ ବିଶେଷ କିଛି ତାରତମ୍ୟ ନାହିଁ । କିନ୍ତୁ ଜଙ୍ଗଲର ଜମାନବନ୍ଦୀ ଉପନ୍ୟାସର ସ୍ୱାଦ ଓ ସୁଗନ୍ଧ ଓଡ଼ିଆ କଥା ସାହିତ୍ୟରେ ସ୍ୱତନ୍ତ୍ର ।

ସାଧାରଣତଃ ଉପନ୍ୟାସ ଦୁଇ ପ୍ରକାର ଲେଖାଯାଏ । କାଳ୍ପନିକ ଉପନ୍ୟାସ ଏବଂ ଅନୁଭୂତି ମୂଳକ ଉପନ୍ୟାସ । ଜଙ୍ଗଲର ଜମାନବନ୍ଦୀ ଏକ ଅନୁଭୂତି ମୂଳକ ଏବଂ କିଛି ପରିମାଣରେ ରାଧାମୋହନ ବାବୁଙ୍କର ଆତ୍ମଜୀବନୀ ମୂଳକ ଉପନ୍ୟାସ । ଲେଖକ ନିଜେ ଜଣେ ଶିକାରୀ ଏବଂ ବଣ୍ୟଜନ୍ତୁ ସଂରକ୍ଷଣର ସକ୍ରିୟ ସଭ୍ୟ । ଜିମ୍ କରବେଟ୍‌ଙ୍କ ବହିପଢ଼ି କିମ୍ବା ଅନ୍ୟମାନଙ୍କ ଶୁଣାକଥା ଉପରେ ନିର୍ଭର କରି ସେ ଏ ଉପନ୍ୟାସ ଲେଖିନାହାନ୍ତି । ନିଜ ତିକ୍ତ ମଧୁର ଅନୁଭୂତିର ଅଭିଜ୍ଞାନ ଏ ଉପନ୍ୟାସକୁ ସେଇଥି ପାଇଁ ଏକ ବାସ୍ତବତା ଆଣିଦେଇଛି ।

ରାଧାମୋହନ ମହାପାତ୍ରଙ୍କୁ ମୁଁ କଲମଧାରୀ ଲେଖକ ଭାବରେ ଜାଣିଥିଲି; କିନ୍ତୁ ସେ ଜଣେ ବନ୍ଧୁକଧାରୀ ଶିକାରୀ, ସେକଥା ଏ ଉପନ୍ୟାସ ପଢ଼ି ଶେଷ କରିବା ଆଗରୁ ଜାଣିନଥିଲି । ଓଡ଼ିଶାର ସୁବିସ୍ତୃତ ଜଙ୍ଗଲ ଏବଂ ଜଙ୍ଗଲବାସୀ ଅଧିବାସୀ ଆଦିମ ମଣିଷ ଓଡ଼ିଶା ଜାତୀୟ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନର ଅଧିକାରୀ । ବନବାସୀ ଆଦିବାସୀମାନଙ୍କର ଜୀବନ ଉପରେ ଆଧାରିତ ଗଳ୍ପ, ଉପନ୍ୟାସ ଏଥିମଧ୍ୟରେ ଅନେକ ରଚିତ ହୋଇଛି, କିନ୍ତୁ ଆଦିବାସୀମାନଙ୍କ ପୂର୍ବରୁ ଅରଣ୍ୟର ଅଧିବାସୀ ବାଘ, ଭାଲୁ ପ୍ରଭୃତି ପଶୁମାନଙ୍କୁ ନେଇ ଓଡ଼ିଆଭାଷାରେ ଉପନ୍ୟାସ ନାହିଁ । ସେ ଦୃଷ୍ଟିରୁ ରାଧାମୋହନଙ୍କ ଜଙ୍ଗଲର ଜମାନବନ୍ଦୀ ଏକ ପୃଥକୃତ ରଚନା ଭାବରେ ଗ୍ରହଣ କରାଯାଇପାରେ ।

ଜଙ୍ଗଲର ଜମାନବନ୍ଦୀ ଉପନ୍ୟାସର କଥାବସ୍ତୁକୁ ମୋଟାମୋଟି ତିନିଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମ, ଜଙ୍ଗଲୀ ଆଦିବାସୀଙ୍କ ସାମାଜିକ, ବ୍ୟକ୍ତିଗତ ଜୀବନଚିତ୍ର; ଦ୍ୱିତୀୟ ସମ୍ବଲପୁରର ଡାଘୋରା ଅଞ୍ଚଳରେ ପଶୁ ଓ ମଣିଷ ଶିକାରରେ ମାତିଥିବା ବାଘବଧର କାହାଣୀ ଏବଂ ତୃତୀୟ, ଲେଖକ ରାଧାମୋହନ ଶିକାରୀ ଜୀବନର ରୋମାଞ୍ଚକର ଇତିବୃତ୍ତ ।

ପ୍ରଥମ ପ୍ରସଙ୍ଗରେ ରଚିତ ଏହି ଉପନ୍ୟାସରେ ଲେଖକ ନିଜେ ହିଁ ପ୍ରଧାନ ନାୟକ । କିନ୍ତୁ ତାଙ୍କ ଶିକାର ଅଭିଯାନର ସହକର୍ମୀ ଅବସରପ୍ରାପ୍ତ ସାମରିକ ଅଫିସର ପ୍ରେମ ସାଗର ତିୱାରୀ, ଶିକାର ସମୟରେ ଗହନ ଅରଣ୍ୟରେ ବାଟ କଢାଇ ନେଉଥିବା ସହଚର ଜଙ୍ଗଲୀ ମଣିଷ ମାଟିରେ ଚିମାଭୋତ୍ରା ମଧ୍ୟ ଉପନ୍ୟାସର ବେଗ ଓ ଆବେଗ ସୃଷ୍ଟି କରିବରେ ମୁଖ୍ୟଭୂମିକା ଗ୍ରହଣ କରିଛନ୍ତି । ରାତି ଶିକାର କାଳରେ ଦୁର୍ଗମ ଜଙ୍ଗଲ ପଥରେ ସେମାନଙ୍କୁ ଦିଗବାରେଣୀ ଯନ୍ତ୍ରଟି ଭଳି ବାଟ କଢାଇ ନେଉଥିବା ଚିମାଭୋତ୍ରାର ଗୋରୁ ଗୁହାଳରେ ଆଗରୁ ଛପି ରହିଥିବା ଚିତାବାଘର ଆକ୍ରମଣ ଓ ଚିମାର ମୃତ୍ୟୁ ପାଠକର ମନକୁ ଅଶ୍ରୁସିକ୍ତ କରିଦିଏ ।

ସେଇଭଳି ଆଉ ଗୋଟିଏ ଚରିତ୍ର ଧୁଡୁ ମୁର୍ମୁ । ଜାତିରେ ମାଙ୍କଡିଆ । ମାଙ୍କଡଧରି ସେ ପେଟ ପୋଷେ । ଜମିବାଡି କଥା ପଚାରିଲେ ଉତ୍ତରଦିଏ- ଜମି ଆମର କ'ଣ ହେବ ହଜୁର ! ଜଙ୍ଗଲ ଥିଲେ ଆମର ସବୁ ଅଛି । ବଣ ବୁଦା ନଟା ଆମର ମା' ବାପା... । ସରକାରଙ୍କର ଆଦିବାସୀ ଉନ୍ନୟନ ଯୋଜନାରେ ଆଦିବାସୀମାନେ କିପରି ସୁଖରେ ଅଛନ୍ତି, ସେକଥା ଦୂରଦର୍ଶନରେ ଦେଖାଇବା ପାଇଁ ଧୁଡୁ ମୁର୍ମୁକୁ ଧରିନିଆଗଲା ଦିଲ୍ଲୀ । ପ୍ୟାଣ୍ଟସାର୍ଟ ପିନ୍ଧାଇ ଦିଆଗଲା । କିନ୍ତୁ ଟି.ଭି. କ୍ୟାମେରା ସାମ୍‌ନାରେ ଠିଆହେଲାବେଳେ ଆଖି ତା'ର ବୁଜି ହୋଇଗଲା । ଫ୍ଲାସ୍ ଲାଇଟ୍‌ର ଆଲୁଅରେ ଆଖି ଅନ୍ଧ ହୋଇଯିବ ବୋଲି ଭୟକରି ପଶାମାଳ ଜଙ୍ଗଲର ଜଙ୍ଗଲୀ ଆଖି ବୁଜି ଦେଇଥିଲା ।

ସେମାନେ ଗହନ ଅରଣ୍ୟ ଅନ୍ଧକାରର ମଣିଷ । ସରକାରୀ ଚାକଚକ୍ୟ ସେମାନଙ୍କର ସହ୍ୟ ହୁଏନାହିଁ । ଫାଶ ବସାଇ ମାଙ୍କଡ ଧରି ନଚାଇଲେ ସେମାନଙ୍କର ପେଟପୋଷା ହୁଏ । ସେଥିପାଇଁ ଟି.ଭି. କ୍ୟାମେରାର ଉଜ୍ଜ୍ୱଳ ଆଲୋକ ସାମ୍ନାରେ ଆଦିବାସୀ ଉନ୍ନୟନର ସାକ୍ଷୀ ହେବା ପାଇଁ ଠିଆ ହୋଇଥିବା ବେଳେ ଧୁଡୁ ମୁର୍ମୁ ତାଙ୍କର ଇଷ୍ଟ ଦେବତା "ବୁଢା ରାଜା"ଙ୍କୁ ଗଞ୍ଜାଦେବ ବୋଲି ମାନସିକତାର ପ୍ରାର୍ଥନା କରୁଥିଲା, ମତେ ଏଠାରୁ ନେଇ ଯା, ନେଇ ଯା ।

ଏ ଉପନ୍ୟାସର ଆଉ ଏକ ସ୍ମରଣୀୟ ଚରିତ୍ର ଗୌନ୍ତିଆ ଶ୍ରୀଚରଣ ଶର୍ମା । ତାଙ୍କ ଅଞ୍ଚଳରେ ହିଁ ବାଘ ମାତିଥାଏ । ଶର୍ମାଙ୍କର ଥାଏ ଗୋଟିଏ ଠୁସା ବନ୍ଧୁକ । ସେ ବନ୍ଧୁକ କେବଳ ଆଭିଜାତ୍ୟର ପ୍ରତୀକ । ଶର୍ମା ତାକୁ କ୍ୱଚିତ୍ ବ୍ୟବହାର କରନ୍ତି । ବାଘ ମାତିଲେ ଆଦିବାସୀ ଲୋକେ ପ୍ରତିକାର ପାଇଁ ଶର୍ମାଙ୍କ ପାଖକୁ ଛୁଟି ଆସନ୍ତି । ଆଉ ଶର୍ମା ଚିଠି ପଠାନ୍ତି ସରକାରୀ ସ୍ୱୀକୃତିପ୍ରାପ୍ତ ଶିକାରୀ ରାଧାମୋହନଙ୍କ ପାଖକୁ । 'ତିନିମାସ ହେଲା ଆମେ ବଡ ବିପଦରେ ଅଛୁ ମହାପ୍ରଭୁ । ଏଠି ଦୁଇଟା ଚିତାବାଘ ସାଙ୍ଗହୋଇ ମାତିଛନ୍ତି । ଏଠି କୋକୁଆଭୟ ପଡିଛି । ଗାଁ ବଏଗା କହିଛନ୍ତି ଏ ବାଘ ନୁହେଁ, କଳିସୁର । କଳି ଏଥର ସମସ୍ତଙ୍କୁ ନିପାତ କରିବ । ଶୀଘ୍ର ଆସନ୍ତୁ ମହାପ୍ରଭୁ ।'

ଶିକାରକୁ ଗଲାବେଳେ ଶର୍ମା ବନ୍ଧୁକ ଉଞ୍ଚାଇ ବୀର ଦର୍ପରେ ଚାଲନ୍ତି କିନ୍ତୁ ବାଘ ତ ଦୂରର କଥା ଭାଲୁଟାଏ ହେଲେ ଜୀବନ ବଞ୍ଚାଇବା ପାଇଁ ଗଛ ଉପରେ ଚଢିଯା'ନ୍ତି ।

ସେଇ ଶର୍ମାଙ୍କ କନ୍ୟା ଜିନି ଦିନେ କୂଅମୂଳେ ଠିଆହୋଇଥିବା ବେଳେ ଚିତା ବାଘ ତୀର ବେଗରେ ଛୁଟିଆସି ତାକୁ ଟେକିନେଲା । ଉଚ୍ଛନ୍ନ ହୋଇଗଲା ଗୌନ୍ତିଆ ଶର୍ମାଙ୍କ ସଂସାର । ପାଗଳା ବାଘକୁ ଶିକାର କରିବା ପାଇଁ ରାଧାମୋହନ ଓ ପୂର୍ବତନ ସାମରିକ ଅଫିସର ପ୍ରେମ୍ ତିୱାରୀଙ୍କ ମନରେ ଜନ୍ମନେଲା ଏକ ଦୃଢ ସଂକଳ୍ପ । ନାନା ବିଧାବିଘ୍ନ ଅତିକ୍ରମ କରି ଅବଶେଷରେ ୫ ଫୁଟ ୩ ଇଞ୍ଚ ଲମ୍ବ ଓ ୩ ଫୁଟ ୩ ଇଞ୍ଚ ସେ ହିଂସ୍ର ବାଘୁଣୀ ହେଲା ରାଧାମୋହନଙ୍କ ଗୁଳିର ଶିକାର ।

ମୃତ ବାଘୁଣୀର ଦୁଇ ଶାବକ ବନରାଜ ଆଉ ଗଙ୍ଗାକୁ ଲେଖକ ସଯତ୍ନରେ ସ୍ୱଗୃହରେ ପାଳନ କରି ଅବଶେଷରେ ନନ୍ଦନକାନନ କର୍ତ୍ତୃପକ୍ଷଙ୍କ ହାତରେ ଅର୍ପଣ କରିଦିଅନ୍ତି ।

ଲେଖକଙ୍କ ଡାହାଣ ଆଣ୍ଠୁରେ ଭାଲୁର ଗଭୀର କାମୁଡା ଦାଗ, ହୃଦୟରେ ଜଙ୍ଗଲର ଆଦି ଅଧିବାସୀ ବାଘ, ଭାଲୁ ଏବଂ ଆଦିମ ମଣିଷଙ୍କ ପାଇଁ ଅନ୍ତହୀନ ଅନୁରାଗ ନେଇ ଏଇ ଉପନ୍ୟାସ ଲେଖିଛନ୍ତି ରାଧାମୋହନ ମହାପାତ୍ର । ଅନୁଭୂତିର ସାନ୍ଦ୍ର ଆବେଗରେ ଉପନ୍ୟାସର ବାତାବରଣର ନିୟମ ଅନେକ ସମୟରେ ବିଘ୍ନ ହୋଇଛି । ପତ୍ର ପତ୍ର ମନେହେଉଛି, ଏହା ଏକ ଉପନ୍ୟାସ ନୁହେଁ, ଖଣ୍ଡିତ ଆତ୍ମଚରିତ । କାହାଣୀ ବିନ୍ୟାସରେ ମଧ ସ୍ଥଳବିଶେଷରେ ଭାରସାମ୍ୟ ସୁରକ୍ଷିତ ହୋଇନଥିବାରୁ ପାଠକର ମନ ଅତୃପ୍ତିରେ ଭରିଉଠୁଛି । କିନ୍ତୁ ଏସବୁ ବ୍ୟତିକ୍ରମ ସତ୍ତ୍ୱେ ଜଙ୍ଗଲର ଜମାନବନ୍ଦୀ ଓଡ଼ିଆ କଥା ସାହିତ୍ୟରେ ଏକ ସଫଳ ସୃଷ୍ଟି ଭାବରେ ବିବେଚିତ ହେବ ।

ଓଡ଼ିଶାର ଅରଣ୍ୟ ପ୍ରକୃତିକୁ ନେଇ ବଙ୍ଗଳାର ବୁଦ୍ଧଦେବ ଗୁହ ପ୍ରମୁଖ ଅନେକ ସାର୍ଥକ ଉପନ୍ୟାସ ରଚନା କରି ଖ୍ୟାତି ଅର୍ଜନ କରିଛନ୍ତି । କିନ୍ତୁ ଏହି ଅରଣ୍ୟ ଓ ଅରଣ୍ୟର ଆଦି ଅଧିବାସୀ ପଶୁପକ୍ଷୀମାନଙ୍କ ଚିତ୍ର ଓଡ଼ିଆ ଉପନ୍ୟାସରେ ଅବହେଳିତ ହୋଇ ରହିଆସିଅଛି । ସୁଖର କଥା ରାଧାମୋହନ ମହାପାତ୍ର ଏହି ଅଭାବ ପୂରଣ କରିବା ପାଇଁ ଏ ଉପନ୍ୟାସରେ ଆନ୍ତରିକ ଉଦ୍ୟମ କରିଛନ୍ତି ।

ବନ୍ଧୁକ ଥିଲେ ଯେପରି ସବୁ ବନ୍ଧୁକଧାରୀ ଶିକାରୀ ହୁଅନ୍ତି ନାହିଁ, ହାତରେ କଲମ ଥିଲେ ସେହିପରି ସବୁ କଲମଧାରୀ ସଫଳ ଲେଖକ ହୋଇପାରନ୍ତି ନାହିଁ । ସେଥିପାଇଁ ଲୋଡାହୁଏ ଦେଖି ଦେଖାଇବା ପାଇଁ ସ୍ରଷ୍ଟାର ଏକ ଅନ୍ତରଭେଦୀ ଦୃଷ୍ଟି । ଜଙ୍ଗଲର ଜମାନବନ୍ଦୀ ରାଧାମୋହନଙ୍କ ସେଇ ଦିବ୍ୟଦୃଷ୍ଟିର ସ୍ୱାକ୍ଷର ବହନ କରିଛି । ସେଥିପାଇଁ ଏ ଉପନ୍ୟାସ ଯେ ପାଠକ ଓ ସମାଲୋଚକମାନଙ୍କ ଦ୍ୱାରା ସମାନ ଭାବରେ ଆଦୃତ ହେବ-ଏଥିରେ ମୋର ସନ୍ଦେହ ନାହିଁ ।



୩-ଏଚ୍, ଲୁଇସ୍ ରୋଡ୍
ଭୁବନେଶ୍ୱର-୧୪

***ସ୍ୱରାଜ୍ୟ, ମାର୍ଚ୍ଚ ୨୨, ୧୯୯୪***
***ଉପନ୍ୟାସ ଓ ଔପନ୍ୟାସିକ***

ନିକଟ ଅତୀତରେ ଔପନ୍ୟାସିକ ରାଧାମୋହନ ମହାପାତ୍ରଙ୍କ ୬ଷ୍ଠ ତମ ଅବଦାନ ଶିକାର ଉପନ୍ୟାସ ଜଙ୍ଗଲର ଜମାନବନ୍ଦୀ ଆତ୍ମପ୍ରକାଶ କରିଛି । ଔପନ୍ୟାସିକ ତାଙ୍କ କାର୍ଯ୍ୟକାଳ ମଧ୍ୟରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଅବସ୍ଥାପିତ ହୋଇ ତାଙ୍କ ଶିକାରୀ ଜୀବନର ବିଭିନ୍ନ ଅନୁଭୂତିକୁ ଉପଜୀବ୍ୟ କରି ରଚନା କରିଛନ୍ତି ସଂପୃକ୍ତ ଉପନ୍ୟାସଟିକୁ । ଏହା ଯେପରି ଭାବବ୍ୟଞ୍ଜକ, ସେହିପରି ପାଠକ ପ୍ରାଣରେ ଆନନ୍ଦର ଫଲଗୁ ସୃଷ୍ଟି କରିବାରେ ସଫଳକାମୀ ହୋଇଛି । ବାଙ୍କୀ ବରେନ୍ଦ୍ର କୃଷ୍ଣ ବିଦ୍ୟାପୀଠରୁ ସ୍କୁଲ ପାଠ୍ୟ ଶେଷ କରି ବିଜେବି କଲେଜରୁ ସ୍ନାତକ(ସମ୍ମାନ) ଓ ବାଣୀବିହାରରୁ ଇତିହାସରେ ସ୍ନାତକୋତ୍ତର ଶିକ୍ଷା ପରିସମାପ୍ତି କରି ଅଧ୍ୟାପକ ଭାବରେ କିଛିଦିନ ବିତାଇବା ପରେ ଓଏଫଏସ୍ ସଂପ୍ରତି ବିତ୍ତ ବିଭାଗର ଜଣେ ୧ମ ଶ୍ରେଣୀ ପଦାଧିକାରୀ । ସମୟ ଚକ୍ରର ବିବର୍ତ୍ତନରେ ତାଙ୍କ ହାତରୁ ବନ୍ଧୁକ ଅପସରିଯାଏ ଏବଂ ତା'ର ସ୍ଥାନ ପରିପୂରଣ କରେ କଲମ । ଶିକାର ବିଦ୍ୟାରେ ସେ ଯେପରି ପାରଙ୍ଗମ ଉପନ୍ୟାସ ରଚନା କରିବାରେ ମଧ୍ୟ ତଦ୍ରୂପ ସିଦ୍ଧହସ୍ତ । ଏକ ଆଭିଜାତ ପରିବାରରେ ଜନ୍ମଲାଭ କରି ସେ ସରଳ, ବନ୍ଧୁ ବତ୍ସଳ, ସ୍ନେହୀ, ଉଦାରଚେତା, ମେଳାପୀ ଓ ସ୍ୱଳ୍ପଭାଷୀ । କର୍ମଜଞ୍ଜାଳ ପରିଧିର ପରିବେଷ୍ଟନୀ ମଧ୍ୟରେ ଅଫିସରୁ ଫେରି କଲମ ଚାଳନାରେ ମଜ୍ଜି ରହିବା ତାଙ୍କର ସହଜାତ ପ୍ରବୃତ୍ତି । ଗୋଟିଏ ଅଧ୍ୟାୟର ପରିସମାପ୍ତି ନ ଘଟିବା ପର୍ଯ୍ୟନ୍ତ ବିଶ୍ରାମ ନଥାଏ ।

ସୂଚନାଯୋଗ୍ୟ ଯେ, ଦଶହରା ଅବକାଶରେ ଭୁବନେଶ୍ୱର ଓ ଅନ୍ୟାନ୍ୟ ସ୍ଥାନରୁ ପ୍ରକାଶ ପାଉଥିବା ସାହିତ୍ୟ ପତ୍ରିକା ଗୁଡିକରେ ଜଙ୍ଗଲର ଜମାନବନ୍ଦୀର କିୟଦଂଶ ପରିବେଷିତ ହୋଇ ଜନମାନସରେ ଆଲୋଡନ ସୃଷ୍ଟି କରିଥିଲା । ସଂପୃକ୍ତ ଉପନ୍ୟାସଟିକୁ ଆମୂଳଚୂଳ ପାଠ କରିବାପରେ ପାଠକ ଭାବରାଜ୍ୟରେ ବିଚରଣ କରିବ । କଣ୍ଟକିତ ବନାନୀ ବିପଦସଂକୁଳ ପରିବେଶ ମଧ୍ୟରେ ଜାଗତିଆର ରହି ପାଦରେ ଚାଲି ଚାଲି ରୋମାଞ୍ଚକର ପରିସ୍ଥିତି ଭିତରେ ଶିକାର କରିବାକୁ ବଡ ଭୟ । "ବାହାରକୁ ବଳବାନ ଦିଶୁଥିବା ବ୍ୟକ୍ତି ଅନ୍ତରରେ ଦୁର୍ବଳ, ମଣିଷ ନିଜର ବଳ ନିଜେ ହିଁ କଳି ଜାଣେ । ବାହାସ୍ଫୋଟ ମାରି କହିବା ଅତି ସହଜ, ମାତ୍ର କାର୍ଯ୍ୟକାରିତାରେ ଫରକ ଅନେକ ଅନେକ । ସମସ୍ତେ ଡରନ୍ତି ଯମକୁ, ଅନ୍ୟର ଶକ୍ତି ଓ ସାହାସକୁ ବାଘ ହିଁ କଳନା କରିପାରେ । ଖାଦ୍ୟର ସ୍ୱାଦ ନଥାଏ ଖାଦ୍ୟରେ, ଥାଏ ଦାତାର ଆନ୍ତରିକତାରେ । ସୌନ୍ଦର୍ଯ୍ୟ ତ ଚିଜରେ ନଥାଏ, ଥାଏ ଚିତ୍ତରେ"ଇତ୍ୟାଦି ଇତ୍ୟାଦି ପ୍ରଣିଧାନଯୋଗ୍ୟ । ଏହା ଜଙ୍ଗଲର ଜମାନବନ୍ଦୀକୁ ଗତିଶୀଳ କରି ଗଢିତୋଳିବାରେ ବେଶ୍ କିଛି ସହାୟକ ହୋଇପାରିଛି । ଜଙ୍ଗଲର ଜମାନବନ୍ଦୀ ଆଗାମୀ ପୀଢିର ଔପନ୍ୟାସିକ ଓ ଗବେଷକଙ୍କୁ ଅନେକ ଖୋରାକ୍ ଯୋଗାଇବ ଓ ସୁଧୀ ପାଠକ ମହଲରେ ଯୁଗପତ୍ ଆଦୃତି ଲାଭ କରିବ । ଓଡ଼ିଶାର ପାଠକ ସମାଜକୁ ଏକ ଭିନ୍ନସ୍ୱାଦର ଉପନ୍ୟାସ-ଉପହାର । "ଶ୍ରେୟାଂସି ବହୁ ବିଘ୍ନାନି" । ତଥାପି ଜଙ୍ଗଲର ଜମାନବନ୍ଦୀ ଯେ ଔପନ୍ୟାସିକଙ୍କ ଏକ ଅନନ୍ୟ କୃତୀ, ଏହା ନିଃସନ୍ଦେହ । ବିଫଳତାର ଗ୍ଳାନି ଯେଉଁ ଔପନ୍ୟାସିକଙ୍କ ହୃଦୟକୁ ସ୍ପର୍ଶ କରି ପାରିନାହିଁ, ଯିଏ ଅବିରାମ ଗତିରେ ଖଣ୍ଡିକ ପରେ ଖଣ୍ଡିଏ ଉପନ୍ୟାସ ଲେଖି ଚାଲିଛନ୍ତି, ଅନ୍ଧ ସମାଜ କ'ଣ ତାଙ୍କ ରଚନାପାଟବତ୍ତାର ଉପଯୁକ୍ତ ମୂଲ୍ୟାୟନ କରିବ ?

***ପ୍ରଜାତନ୍ତ୍ର ସାପ୍ତାହିକୀ ମାର୍ଚ୍ଚ ୧୩-୧୯, ୧୯୯୪***
***ଓଡ଼ିଆ ଉପନ୍ୟାସରେ ଶିକାର, ଶିକାରୀ ଓ ଜଙ୍ଗଲ: ଜଙ୍ଗଲର ଜବାନ ବନ୍ଦୀ***

ଆଦିମ ମାନବର ସମସ୍ତ କ୍ରିୟାକଳାପ ଅଗନାଅଗନି ବନସ୍ତ ମଧ୍ୟରେ ସମ୍ପାଦିତ ହେଉଥିଲା । ଆଧୁନିକତାର ଚୌହଦୀରେ ବାନ୍ଧି ହୋଇଯାଇଥିଲେ ମଧ୍ୟ ସେହି ଆଦିମ ସଂପର୍କ ଆଦି ମାନବର ଅନ୍ତରକୁ ଉଦ୍‌ବେଳିତ କରେ । ଅରଣ୍ୟର ମାୟାରେ ସେ ବାୟା ହୋଇ ଉଠେ । ଜାଙ୍ଗଲିକ ଶୋଭା ସୌନ୍ଦର୍ଯ୍ୟରେ ହୋଇଯାଏ ତଲ୍ଲୀନ । ଶିକାର ଅନ୍ୱେଷୀ ଜଣେ ଉଦ୍ଦାମ ବନଚାରୀ ହେଲେ ତାର ସଂପର୍କ ସ୍ଥାପିତ ହୁଏ ପ୍ରତିଟି ବନ୍ୟ ସଂପଦ, ବନ୍ୟ ପଶୁର ପଦଧ୍ୱନି ଓ ପାଦଚିହ୍ନ ସର୍ବୋପରି ସେମାନଙ୍କ ରକ୍ତମାଂସ ସହ । ବନପ୍ରିୟ ସେହି ବ୍ୟକ୍ତିର ଲେଖନୀ ଯଦି କେବେ କଥା କହେ, ତେବେ ସେ କହିବ ତରୁଲତାଙ୍କ କଥା, ପଶୁ ପକ୍ଷୀଙ୍କ କାହାଣୀ ଏବଂ ଲେଖିବ 'ଜଙ୍ଗଲର ଜମାନବନ୍ଦୀ'-କଥାକାର ରାଧାମୋହନ ମହାପାତ୍ରଙ୍କ ବନଚାରୀ ଜୀବନାନୁଭୂତିର କଳାତ୍ମକ ଅଭିବ୍ୟକ୍ତି ।

ଅଝଟିଆ ଗେହ୍ଲାଝିଅ ଗୁଡୁନାର ଶିଶୁ ସୁଲଭ ଅଳି... 'ବାପା ବାପା ତୁମେ ଭାରି ଖୁସିନା ? ତୁମେ ପରା କୁହ ଗଙ୍ଗା ଆଉ ବନରାଜ ଆମର ବୋଲି । ବାପା ଚାଲ, ସେ କୁନି ଛୁଆ ଦି'ଟାକୁ ଆମ ଘରକୁ ନେଇ ଆସିବା...' (ପୃ-୯) ସ୍ତର ସ୍ତର କରି ଉନ୍ମୋଚିତ କରିଦିଏ ଔପନ୍ୟାସିକଙ୍କ ବିଗତ ଦିନର ଶିକାରୀ ଜୀବନର ପ୍ରତିଟି ସ୍ମୃତିକୁ । ଏକଦା ସନ୍ତାନ ବାତ୍ସଲ୍ୟରେ ପ୍ରତିପାଳିତ ବର୍ତ୍ତମାନ ନନ୍ଦନକାନନର ତାରଜାଲି ଘେରରେ ଜୀବନ ବିତାଉଥିବା ଚିତାବାଘ ଗଙ୍ଗା ଓ ବନରାଜ ଶାବକ ଦ୍ୱୟ ଆଜି ଗୁଡୁନାର ଚପଳମତି ମନରେ ଆନନ୍ଦ ଜୁଆର ସୃଷ୍ଟି କରିଛନ୍ତି ସେହି ସଂପର୍କର ଖିଅଟି ପାଇଁ । ଚିତା ମୁହଁରେ ଜୀବନ ଦେଇଥିବା ଦୁର୍ଗମ ଜଙ୍ଗଲରେ ସ୍ରଷ୍ଟାଙ୍କ ଶିକାରୀ ଜୀବନର ଦିଗବାରିଣୀ ଚିମାଭୋତ୍ରାର ସରଳ ଅନାସକ୍ତ ଭାବ, ବିଧବା ଚିମାଭୋତ୍ରା ଓ ପୁତ୍ରହରା ଶୁକ୍ରୁ । ଆଖିର କରୁଣ ଚାହାଣୀ ଏବଂ ତାଘେରା ପାର୍ବତ୍ୟାଞ୍ଚଳ ଲୋକମାନଙ୍କ ଧନଜୀବନ ବିପନ୍ନ ଭଳି ଚରମ ଦୁଃସ୍ଥିତି ସ୍ରଷ୍ଟାଙ୍କୁ କିପରି ବାଧ୍ୟ କରିଥିଲା ଗଙ୍ଗା ଓ ବନରାଜର ମା' ଚିତାବାଘୁଣୀକୁ ବଧ କରିବା ପାଇଁ, ତାହାହିଁ 'ଜଙ୍ଗଲର ଜମାନବନ୍ଦୀ' ଉପନ୍ୟାସର ମୁଖ୍ୟ ପ୍ରସଙ୍ଗ । ଏତଦ୍‌ବ୍ୟତୀତ ଏହା ସହିତ ଯୋଡିହୋଇ ଯାଇଛି ସ୍କଟ୍‌ଲାଣ୍ଡର ଏଡିନବର୍ଗରେ ଜନ୍ମିତ ସେଣ୍ଟକ୍ଲେୟାର୍ ମ୍ୟାକ୍‌ମିଲାନ ହିନାଙ୍କ କଥା, ଅଚ୍ଯୁଦାଦା ଓ କୁତ୍ରା ମୁଣ୍ଡାଙ୍କ ସାହସିକତାର କାହାଣୀ, ନଟିଆ ସାଉଁଙ୍କ ଦୁର୍ଦ୍ଦଶା, ଆଦିବାସୀମାନଙ୍କ ସରଳ ନିଷ୍ପାପ ଜୀବନର ଗାଥା ଏବଂ ସେମାନଙ୍କ ସମାଜରେ ଥିବା କୁସଂସ୍କାର ଗୁଡ଼ିକର ବର୍ଣ୍ଣନା ଆଦି ବହୁ ଶାଖା ପ୍ରଶାଖା ପ୍ରସଙ୍ଗ ।

ସମ୍ବଲପୁର ଜିଲ୍ଲା ହେମଗିରି ବନଭୂଖଣ୍ଡ ଉପନ୍ୟାସ ବର୍ଣ୍ଣିତ କାହାଣୀର ପୃଷ୍ଠଭୂମି ହୋଇଥିବାରୁ ପାର୍ବତ୍ୟ ଗାଁମାନଙ୍କରେ ବସବାସ କରୁଥିବା ବନବାସୀଙ୍କ ଚାଲିଚଳନ ଓ ସାମାଜିକ ବିଧିର ଚିତ୍ର ଉପନ୍ୟାସଟି ବହନ କରିଛି । କିଷାନ୍ ଜାତିର ବୈବାହିକ ବିଧି ଟେମେଣିଆ ବସା ଗାଁ, ବାସିନ୍ଦା ଫେନା କିଷାନର ପୁଅ

'ସୁବା' ବିବାହ ପ୍ରସଙ୍ଗରେ ସ୍ଥାନ ପାଇଛି । ଏହି ପର୍ଯ୍ୟାୟରେ ଔପନ୍ୟାସିକ ଗୁଡିଆ, ପେଠାଖଞ୍ଜା, ପଦ୍ଧାଣ, ଛାର୍‌ରୀ, ବୁକା ଆଦି ଆଦିବାସୀ କଥିତ ଶବ୍ଦର ବ୍ୟବହାର କରିଛନ୍ତି । ଗୋପୀନାଥ ମହାନ୍ତିଙ୍କ ଆଦିବାସୀ କୈନ୍ଦ୍ରିକ ଉପନ୍ୟାସ ଭଳି ଆଦିବାସୀ ସଂଗୀତକୁ ମର୍ମାନୁବାଦ ସହ ଉପସ୍ଥାପିତ କରି ବଣମଲ୍ଲୀ ସୁରଭିକୁ ସଭ୍ୟ ସମାଜ ନିକଟରେ ପହଞ୍ଚାଇବା ଏବଂ ଉପନ୍ୟାସକୁ ସୌନ୍ଦର୍ଯ୍ୟମୟ କରିବାରେ ତାଙ୍କ ସତ୍‌ଉଦ୍ୟମ ପ୍ରଶଂସନୀୟ । ଝରନ୍ ତରାର୍ କୁରେଇ ଡାଲ୍/ କୁରେଇ ଫୁଲର ଚାଙ୍ଗ୍‌ରୀ/ କେତେ କଁଢ଼ର ଫୁଲର ଲାଗି/ମିତିନୀ ମକନୀ ଗଜରୀ ? (ପ୍ରେମିକା-ପ୍ରେୟସୀ ହାତରେ ଝରଣାକୂଳର ଡାଳଯୁକ୍ତ କୋରେଇ ଫୁଲ ଗୁଚ୍ଛ (ଚାଙ୍ଗରୀ) ଫୁଲଗୁଡିକର ମୂଳ କେତେ ଲୋ ସୁନ୍ଦରୀ ?)- ପୃ.୧୧୨ । ଏତଦ୍‌ବ୍ୟତୀତ ଉପନ୍ୟାସର ଅନେକ ସ୍ଥାନରେ ସମ୍ବଲପୁରୀ ମିଶା ଭୂମିଜ ଭାଷାର ସଂଳାପମାନ ମଧ୍ୟ ସ୍ଥାନ ପାଇଛି ।

ଉପନ୍ୟାସରେ ଉପସ୍ଥାପିତ ପଶୁପକ୍ଷୀ ସମ୍ପର୍କୀୟ ତଥ୍ୟ ସ୍ମରଣ କରାଇଦିଏ ପ୍ରସିଦ୍ଧ ଶିକାରୀ ଓ ଜଙ୍ଗଲ ବିଜ୍ଞାନବିତ୍ ଜିମ୍ କରବେଟ୍, ଅଗଷ୍ଟାସ୍ ସମରଭାଇଲ ଓ ଷ୍ଟିଭେନ୍‌ସନ୍‌ଙ୍କ ସୃଷ୍ଟି ସମୂହକୁ । ବାଘ, କୋଚିଲାଖାଇ, ମହୁମାଛି ଆଦି ପଶୁ, ପକ୍ଷୀ ଓ ପତଙ୍ଗଙ୍କ ଜୀବନଯାପନର ପ୍ରଣାଳୀକୁ ଔପନ୍ୟାସିକ ସବିଶେଷ ପ୍ରକାଶ କରିଛନ୍ତି । ଏହି ସ୍ଥଳରେ ଉପନ୍ୟାସର ଭାବପ୍ରବଣ ଭିତରେ ଆତ୍ମଗୋପନ କଲାଭଳି ହୃଦ୍‌ବୋଧ ହେଲେ ମଧ୍ୟ ଏହା ସ୍ରଷ୍ଟାଙ୍କର ବନ୍ୟଜନ୍ତୁଙ୍କ ଜୀବନଧାରଣର ମାର୍ଗ ବିଷୟକ ଧାରଣାର ସ୍ୱଷ୍ଟତା ପ୍ରତିପାଦନ କରେ । ଶିକାର ଉଦ୍ଦେଶ୍ୟରେ ବନ୍ୟପଶୁଙ୍କ ଅନୁଧାବନ କରିବାରେ ଶିକାରୀଙ୍କୁ ଯେଉଁ ନିୟମ ମାନିବାକୁ ପଡିଥାଏ, ତାହାକୁ ସେ ନିଜ ଅନୁଭୂତି ଏବଂ ଉପନ୍ୟାସର ମୁଖ୍ୟ ସହଯୋଗୀ ଚରିତ୍ର ପ୍ରେମ୍‌ଙ୍କ ଆଚରଣକୁ ବିଚାରକୁ ନେଇ ଉପସ୍ଥାପନ କରିଛନ୍ତି । ପଶୁପକ୍ଷୀ, ଶିକାରୀ ଓ ମାନବ ଜୀବନର ବାସ୍ତବ ଦିଗ ପ୍ରତି ଶ୍ରୀ ମହାପାତ୍ରଙ୍କ ଲେଖନୀ ବେଶ୍ ସଚେତନ ।

ଅରଣ୍ୟର ଶୋଭା ସମ୍ପଦକୁ ଉପନ୍ୟାସର ପୃଷ୍ଠା ପଟଳରେ ନିଖୁଣ ଭାବେ ବର୍ଣ୍ଣନା କରାଯାଇଛି । ଯଥା, "ଅରଣ୍ୟର ଅନ୍ଧାର କ୍ରମଶଃ ପାଣିଚିଆ ହୋଇ ଆସିଲା । ଆକାଶ ଛାତିରେ ମଲା ଜହ୍ନକୁ କୁଣ୍ଢାଇଥିଲେ ସୁଦୂର ଦ୍ରୁମରାଜି । ମ୍ଳାନ ମୌନ ଜହ୍ନ ପାଖରୁ ମଝି ଆକାଶରୁ ଖସରି ଆସିଥିଲା ଭସା ବଉଦର ହାତ ଏକ ଅପୂର୍ବ କଳାତ୍ମକ ଭଙ୍ଗୀରେ । ସିନ୍ଦୂର ଫିଟିଲା, ପୂର୍ବାକାଶ ଲାଲ୍ ରଙ୍ଗରେ ବିଭାସିତ ହେଲା । ବନ ମୟୂରର ୟାଁୟୁଁ ସ୍ୱର ସହିତ ତାଳ ଦେଲା ଅରଣ୍ୟ କୁକ୍‌ଟର କେଁ... କେଁ ରାବ" (ପୃ-୧୨୦)

କଳାତ୍ମକ ଭାବେ ଜଙ୍ଗଲର ଜମାନବନ୍ଦୀ ଦେଇପାରୁଥିବା ଜଣେ ଶିକାରୀ ତ ଦୂରର କଥା, ସାଧାରଣ ଶିକାରୀଟିଏ ସୃଷ୍ଟି କରିବା ନିମିତ୍ତ ଆଜିର ସମସ୍ୟାଜଡିତ ସମାଜ ଓ ସମୟ କେବଳ ଅକ୍ଷମ ନୁହେଁ, ପ୍ରତିବନ୍ଧକ ମଧ୍ୟ । ଏହି ଦୃଷ୍ଟିରୁ ରାଧାମୋହନ ମହାପାତ୍ରଙ୍କ ରୋମାଞ୍ଚକର ତଥା ସୁଖପାଠ୍ୟ ଉପନ୍ୟାସ 'ଜଙ୍ଗଲର ଜମାନବନ୍ଦୀ' ଓଡ଼ିଶାର ବାଣୀ ମନ୍ଦିରକୁ ଏକ ମହାର୍ଘ ଦାନ ।

- ଗୋବିନ୍ଦ ଚନ୍ଦ୍ର ଚାନ୍ଦ

◆

**ପ୍ରଗତିବାଦୀ, ୦୪.୦୪.୧୯୯୪**
**ନୂଆବହି : ଜଙ୍ଗଲର ଜମାନବନ୍ଦୀ**

ଜଣେ ସଫଳ କଥାକାର ଓ ଔପନ୍ୟାସିକ ଭାବେ ପରିଚିତ ଶ୍ରୀ ରାଧାମୋହନ ମହାପାତ୍ରଙ୍କ ନୂତନ ତଥା ଜଙ୍ଗଲର ଲୋମହର୍ଷଣକାରୀ ଅନୁଭୂତି ସମୂହ ସମ୍ବଳିତ ଉପନ୍ୟାସ "ଜଙ୍ଗଲର ଜମାନବନ୍ଦୀ" ଇତିମଧ୍ୟରେ ପ୍ରକାଶ ପାଇଛି । ଭୁବନେଶ୍ୱରରେ ଜଣେ ବାଣିଜ୍ୟକର ପଦାଧିକାରୀ ଭାବେ ଅବସ୍ଥାପିତ, ଓଡ଼ିଆ ଅର୍ଥସେବା ସଂସ୍ଥାର ସଭ୍ୟ ଶ୍ରୀ ମହାପାତ୍ର ତାଙ୍କର ଦାୟିତ୍ୱ ପରିଚାଳନା ସହ ବନ୍ଧୁକ ଓ କଲମ ଚାଳନାରେ ମଧ୍ୟ ଅନୁରୂପ ଦକ୍ଷତାର ସଫଳ ନଦର୍ଶନ ହେଉଛି ଏହି ଉପନ୍ୟାସ ।

ଏହି ଉପନ୍ୟାସଟିର ବିଷୟବସ୍ତୁ ଖୁବ୍ ଦୀର୍ଘ ହୋଇନଥିଲେ ମଧ ତାଙ୍କର ଭାଷାଚାତୁରୀ ଓ ଗୁଡ଼ିଏ ଉପକାହାଣୀର ଅବତାରଣାରେ ଲେଖକ ଉପନ୍ୟାସଟିକୁ କେବଳ ଲମ୍ବା କରିନାହାଁନ୍ତି ବରଂ ଏଥିରେ ଗୁଡ଼ିଏ ସସ୍‌ପେନ୍ସର ମସଲା ମଧ୍ୟ ଖୁନ୍ଦି ଦେଇଛନ୍ତି । ଏସବୁକୁ ବାଦ୍ ଦେଲେ ମଧ ଏହା ଏକ ସଫଳ ଶିକାର କାହାଣୀ । ବିଷୟବସ୍ତୁ ହେଲା ଏକ ମାଇ ଚିତାବାଘର ଶିକାର । ସ୍ଥାନ- ସମ୍ବଲପୁର ଜିଲ୍ଲାର ହେମଗିରି ବନ ଭୂଖଣ୍ଡରେ ଅବସ୍ଥିତ ଡାଘୋରା ରେଳଷ୍ଟେସନଠୁଁ ଦୂର ବନପର୍ବତ ବେଷ୍ଟିତ କ୍ଷୁଦ୍ର ଚିର୍ମିରା ଗ୍ରାମ ।

ଏହି ଗ୍ରାମର ଗୌନ୍ତିଆ ଶ୍ରୀଚରଣ ଶର୍ମା ଲେକକଙ୍କର ବନ୍ଧୁ । ଏକଦା ଗ୍ରାମ ଓ ତା'ର ନିକଟବର୍ତ୍ତୀ ଅଞ୍ଚଳରେ ଏକ ଚିତାବାଘ ମାତି ବହୁ ପ୍ରାଣୀ ଓ ମଣିଷଙ୍କ ଧନଜୀବନ ନଷ୍ଟ କରେ । ଏ ଘଟଣାକୁ ଲେଖକ ପ୍ରଥମେ ଖବରକାଗଜରୁ ଓ ପରେ ଗୌନ୍ତିଆଙ୍କ ଚିଠିରୁ ପଢ଼ି ବାଘମାରିବା ପାଇଁ ଶିକାରୀ ବନ୍ଧୁ ପ୍ରେମ୍‌ଙ୍କ ସହ ସେଠାକୁ ଯାତ୍ରା କରନ୍ତି ।

ମାତ୍ର ସେଠାରେ ଅନେକ ଦିନ ରହି ମଧ୍ୟ ଓ ଅନେକ ରୋମାଞ୍ଚକର ଓ ଶିହରକ ଅନୁଭୂତିର ସମ୍ମୁଖୀନ ହୋଇ ମଧ ବାଘକୁ ଖୋଜିପାଆନ୍ତି ନାହିଁ ଓ ଫେରିଆସନ୍ତି । ମାତ୍ର ଘଟଣାକ୍ରମେ ବାଘୁଣୀ ପୁଣି ତା'ର ଲୁକ୍କାୟିତ ସ୍ଥାନରୁ ବାହାରି ଗୌନ୍ତିଆଙ୍କ ଏକମାତ୍ର ଅଲିଅଳି କନ୍ୟାକୁ ମାରି ଖାଇଦିଏ । ଏ ଖବର ପାଇବା ପରେ ଦୁଇ ଶିକାରୀ ବନ୍ଧୁ ପୁଣି ଚିର୍ମିରା ଯାଆନ୍ତି ଓ ଅବଲୀଳାକ୍ରମେ ବାଘ(ବାଘୁଣୀ)ଓ ତାର ଦୁଇଟି ଶାବକଙ୍କୁ ଆବିଷ୍କାର କରନ୍ତି ଖୋଦ୍ ଗୌନ୍ତିଆଙ୍କ ଘରର ମାଣ୍ଟୁ ଉପରୁ । ସୁଯୋଗ ଦେଖି ସେ ବାଘୁଣୀଟିକୁ ମାରନ୍ତି ଓ ଶାବକ ଦୁଇଟିକୁ ସାଙ୍ଗରେ ନେଇଆସନ୍ତି; ଯାହାକୁ ପରେ ଚିଡ଼ିଆଖାନାକୁ ପଠାଇ ଦିଆଯାଏ । ମାତ୍ର ୧୬୪ ପୃଷ୍ଠାର ଏହି ସୁନ୍ଦର ମୁଦ୍ରଣ ପରିପାଟୀସମ୍ପନ୍ନ ପୁସ୍ତକଟିରେ ଲେଖକ ଖୁବ୍ ଚତୁରତାର ସହ ଜଙ୍ଗଲ ଜୀବନର, ବିଶେଷକରି ଶିକାରକାଳୀନ ଅନେକ ରୋମାଞ୍ଚକର ଅନୁଭୂତି, ଶିକାରୀ ଜୀବନରେ ଅଙ୍ଗେ ନିଭେଇଥିବା ବହୁ ଅଭିଜ୍ଞତା, ଆଦିବାସୀ ବିବାହ, ସହରୀ ସଭ୍ୟତାଠୁଁ ବହୁ

ଦୂରରେ ଘଞ୍ଚ ଅରଣ୍ୟାନୀ ମଧ୍ୟରେ ବାସ କରୁଥିବା ସରଳ ଆଦିବାସୀଙ୍କ ଜୀବନଧାରା, ସେମାନଙ୍କର ଚଳଣି, ଅନ୍ଧବିଶ୍ୱାସ ଓ ନିର୍ବୋଧ ନିଷ୍ପାପ ସରଳତା ଆଦି ଉପରେ ଉପକାହାଣୀମାନଙ୍କ ଜରିଆରେ ଆଲୋକପାତ କରିଛନ୍ତି । ଏହା ସହ କୋଚିଲାଖାଇ, ମହୁମାଛି, ମହାବଳବାଘ, ଚିତାବାଘ ଆଦି ବନ୍ୟ ପଶୁମାନଙ୍କ ଜୀବନଧାରା ସଂପର୍କରେ ସୂଚନା ଦେବା ସଂଗେ ସଂଗେ ବର୍ତ୍ତମାନ ସମୟରେ ହେଉଥିବା ଦ୍ରୁତ ଜଙ୍ଗଲ କ୍ଷୟ ଓ ଏହିସବୁ ପ୍ରାଣୀମାନଙ୍କ ସଂଖ୍ୟା ହ୍ରାସ ଯୋଗୁଁ ମଧ୍ୟ ଉଦ୍‌ବେଗ ପ୍ରକାଶ କରିଛନ୍ତି ।

ମୋଟ ଉପରେ କହିଲେ ଜଙ୍ଗଲର ଜୀବନ, ତାର ଭୀମକାନ୍ତ ସବୁଜୀମା, ରୋମାଞ୍ଚ, ଶିହରଣ ଆଦି ସବୁର ଜମାନବନ୍ଦୀକୁ ସହଜ, ସାବଲୀଳ ଭାଷାରେ ରୂପ ଦେଇଛନ୍ତି ଲେଖକ ଶ୍ରୀ ମହାପାତ୍ର । ଶ୍ରୀମତୀ ପ୍ରତିଭା ମହାପାତ୍ରଙ୍କ ଦ୍ୱାରା ପ୍ରକାଶିତ ଓ ଜଗଦମ୍ବା ପ୍ରିଣ୍ଟର୍ସ (କଟକ) ଦ୍ୱାରା ମୁଦ୍ରିତ ଏହି ସୁଦୃଶ୍ୟ, ରଙ୍ଗୀନ, ବନ୍ଧେଇ ବହିଟିର ମୂଲ୍ୟ ୪୫ ଟଙ୍କା ।

**ସମୀକ୍ଷା: ଦେବେନ୍ଦ୍ର ସାମନ୍ତରାୟ**



ପୁସ୍ତକ ନାମ : ବ୍ୟାଘ୍ରନିନାଦ

ପ୍ରକାଶକ : ପ୍ରତିଭା ମହାପାତ୍ର,

୧୪୭, ବୁଦ୍ଧେଶ୍ୱରୀ,

ଭୁବନେଶ୍ୱର-୬

ପ୍ରକାଶ କାଳ : ୧୪.୧.୧୯୯୫

ପୃଷ୍ଠା : ୧୮୮

ପ୍ରଚ୍ଛଦ : ଅସୀମ ବସୁ

ମୂଲ୍ୟ : ୧୦୦/-







ଉନ୍ମୋଚନ କରୁଛନ୍ତି ପ୍ରଫେସର ଗୌରୀକୁମାର ବ୍ରହ୍ମା, ଲେଖକ ବିନୋଦ ବିହାରୀ ପଲାଇ, ଗାଛିକା ବୀଣାପାଣି ମହାନ୍ତି, କବି ରବିନାରାୟଣ ପତି ଓ ଲେଖକ ରାଧାମୋହନ ମହାପାତ୍ର ।

*ଧରିତ୍ରୀ, ଛୁଟିଦିନ*
*୪-୨-୧୯୯୫*
***ଭୟଙ୍କର ଅଥଚ ରୋମାଞ୍ଚିକ: ବ୍ୟାଘ୍ର ନିନାଦ***

ଔପନ୍ୟାସିକ ରାଧାମୋହନ ମହାପାତ୍ରଙ୍କ ସଦ୍ୟ ପ୍ରକାଶିତ 'ବ୍ୟାଘ୍ର ନିନାଦ' ଫିଚର ଧର୍ମୀ ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ଏକ ନୂତନ ପରୀକ୍ଷା । ଜଙ୍ଗଲରେ ବିତାଇଥିବା କେତେକ ଘଟଣା ଓ ଅନୁଭୂତିକୁ ପୁଞ୍ଜିକରି ଶ୍ରୀ ମହାପାତ୍ର ଏହି ଉପନ୍ୟାସଟିକୁ ରଚନା କରିଛନ୍ତି । ତାଙ୍କ ରଚିତ ଜଙ୍ଗଲ ଡାଏରୀ ଭିତ୍ତିକ ଉପନ୍ୟାସ 'ଜଙ୍ଗଲର ଜମାନବନ୍ଦୀ' ପରେ ବ୍ୟାଘ୍ର ନିନାଦ ସେହି ଅଙ୍ଗେନିଭା ଘଟଣାର ଆଉ ଏକ କଳାତ୍ମକ ଦଲିଲ । ଏଥିରେ ଯଦିଓ ଘଟଣାର ନାଟକୀୟତା ନାହିଁ କିମ୍ବା ବ୍ୟାଘ୍ର ହେଣ୍ଟାଳର ସଂତ୍ରାସ ନାହିଁ, କୌଣସି ଚରିତ୍ରର କ୍ରମ ବିକାଶ ନାହିଁ, ତେବେ ଜଙ୍ଗଲ ଜୀବନର କେତୋଟି ଚିତ୍ର ବା ଘଟଣାବଳୀ ଉପନ୍ୟାସର କାହାଣୀକୁ ଗତିଶୀଳ କରିଛି । ଶ୍ରୀ ମହାପାତ୍ରଙ୍କ ପଦସ୍ଥ ସରକାରୀ କର୍ମଚାରୀ ଭାବରେ ପଶ୍ଚିମ ଓଡ଼ିଶାରେ ଅବସ୍ଥାନ କରୁଥିବା ବେଳେ ଜଙ୍ଗଲ ସହିତ ଆତ୍ମୀୟତା ସୃଷ୍ଟି କରିଥିଲେ । ହିଂସ୍ର ଜନ୍ତୁ ସହ ବନ୍ଧୁତା, ଭୟଙ୍କର ରୋମାଞ୍ଚିକ୍ ଅନୁଭୂତି ଠାରୁ ଆରମ୍ଭ କରି ଜଙ୍ଗଲ କୋଳରେ ଲାଳିତପାଳିତ ହେଉଥିବା ନିରୀହ ଆଦିବାସୀମାନଙ୍କର ମନଭୁଲା ଗୀତ, ସେମାନଙ୍କର ଜୀବନ ସଂଘର୍ଷ, ପ୍ରେମ, ବିରହ ଓ ମୃତ୍ୟୁ ତାଙ୍କୁ କିଭଳି ପ୍ରଭାବିତ କରିଛି, ତାହାକୁ ହିଁ ଉପନ୍ୟାସରେ କେତୋଟି ନିଛକ ଚରିତ୍ର ମାଧ୍ୟମରେ ପ୍ରକାଶ କରିଛନ୍ତି । ଗଙ୍ଗା ଓ ବନରାଜ ନାମକ ଦୁଇଟି ଚିତାବାଘ ଛୁଆକୁ ଜଙ୍ଗଲରୁ ପାଇ ନନ୍ଦନକାନନରେ ଛାଡିଦେବା ଭଳି କେତେକ ଅନୁଭୂତି ଏବଂ ଜଣେ ଜଙ୍ଗଲୀ ସହକର୍ମୀଙ୍କର ଖଣ୍ଡିଏ ଚିଠିର ଭାବବୋଧକୁ ନେଇ ବ୍ୟାଘ୍ର ନିନାଦର କାହାଣୀ ପରିକଳ୍ପିତ ହୋଇଛି । ଏଥିରେ କିମ୍ବଦନ୍ତୀ ଓ ଇତିହାସର ସୂଚନା ଥିଲେ ମଧ୍ୟ ଭୌଗୋଳିକତା ଓ ବାସ୍ତବତା ଉପନ୍ୟାସର ମୁଖ୍ୟ ଆକର୍ଷଣ ହୋଇଛି ।



## ପ୍ରଗତିବାଦୀ - ୦୯-୦୪-୧୯୯୫
## ପୁସ୍ତକ ସମୀକ୍ଷା-ବ୍ୟାଘ୍ର ନିନାଦ

ପଶ୍ଚିମ ଓଡ଼ିଶାର ବଣ ଜଙ୍ଗଲ ଘେରା ପ୍ରାକୃତିକ ପରିବେଶକୁ ନେଇ ଔପନ୍ୟାସକ ରାଧାମୋହନ ମହାପାତ୍ର 'ବ୍ୟାଘ୍ର ନିନାଦ' ଉପନ୍ୟାସ ରଚନା କରି ପଶ୍ଚିମ ଓଡ଼ିଶାର ପାଠକବର୍ଗଙ୍କୁ ଭେଟି ଦେଇଛନ୍ତି।

'ଜଙ୍ଗଲର ଜମାନବନ୍ଦୀ' ଉପନ୍ୟାସ ପରେ ପାଠକମାନଙ୍କର ଉତ୍ସାହକୁ ପାଥେୟ କରି ସେ ଏହି 'ବ୍ୟାଘ୍ର ନିନାଦ' ଉପନ୍ୟାସ ରଚନା କରିଛନ୍ତି ବୋଲି ମୁଖବନ୍ଧରେ ସ୍ୱୀକାର କରିଛନ୍ତି। ଉପନ୍ୟାସର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସେ ସମ୍ବଲପୁରରେ ବିତାଇଥିବା କେତେକ ନିଛକ ଓ ବାସ୍ତବ ଅନୁଭୂତିକୁ ଗଳ୍ପ ରୂପ ଦେଇଛନ୍ତି । ପ୍ରତିଟି ଅଧ୍ୟାୟରେ ଗୋଟିଏ ଦରଦି ମଣିଷର ଛାପ ରହିଛି । ଉପନ୍ୟାସରେ ସେ ସମ୍ବଲପୁରୀ ଭାଷା ପ୍ରୟୋଗ କରି ଉପନ୍ୟାସଟୁ ରସସିକ୍ତ କରି ପାରିଛନ୍ତି । ଯଥା: "ହଜୁର, ଆମ ସାଏବାକେ କିଏ ଗୁଳି କରଦେଲା। ସେ ଗୁଳିମାଡ ଖାଇ ବୁଲି ଗାଁତକ ଚାଲିଆସି ଥିଲାନ୍, ଇ ଗୋଟେ ପଥର ପାଶେ  ପଡ଼ି ମରିଗଲା। ମୁଇଁ ଖବର ପାଇ ସେଠାକେ ଡେଗ୍‌ଲି, ଦେଖେ ତା ଆଗେ ଗୋଡେ ଆଉ ବେକ୍‌ରେ ଦୁଇଟା ଗୁଳି ଲାଗ୍‌ଛେ । ମୁଇଁ ଲୋକ୍  ଡକାଡକି କରି ତାକେ ଘରକେ ଆଣ୍‌ଲି । କେ ଶିକାରୀ ଏଠାକେ ଆସି ଏମ୍‌ତି କାମ୍ କରଛେ । ମୁଇଁତ ବଡେ ଦୁଃଖ କଲି, ଭାବ୍‌ଲି ଆମ ବଡ଼ା ସାହେବ ଭାରି ଦୁଃଖମନା ହେବେ । କେତେ ଶରଧା କରିଥିଲା ସାଏବାକେ, କେତେ କଷ୍ଟେ ବଞ୍ଚାଇଥିଲେ ତାକେ । ଇଟା ଗୋଟେ ମହା ମୁସ୍କିଲ୍ କଥା ହେଲା । ଯାହା ହେଲା ତ ହେଲା, ଏବେ ତାର ଚମଡାକେ ବଡା ସାହେବ ପାଖ୍‌କେ ପହଁଚାବାକେ ପଡ଼୍‌ବ ।" (ପୃଷ୍ଠା-୪)

ସେହିଭଳି ସେ ଉପନ୍ୟାସରେ ସମ୍ବଲପୁରର କେତେକ ପ୍ରାକୃତିକ ସ୍ଥାନର ବର୍ଣ୍ଣନା ଅତି ଉଚ୍ଚକୋଟୀର ଭାବେ ଉପସ୍ଥାପନା କରିଛନ୍ତି । ଯଥା: "ବୃକ୍ଷଲତା ପଥର ପରିବେଷ୍ଟିତ ଦେବ୍ରୀଗଡର 'ବାରବଖରା' ଗୁମ୍ଫା। ଏହାକୁ ଏକ ଦୀର୍ଘ ସୁଡଙ୍ଗ କହିଲେ ବୋଧେ ଠିକ୍ ହେବ । ସୁଡଙ୍ଗଟି ଏବେ ହେଟାବାଘ, ଚିତାବାଘ, ଭାଲୁ, ସାପ, ସାଏ ମୂଷାମାନଙ୍କ ଅଭୟ ବାସସ୍ଥଳୀ ବନିଛି । ବାଦୁଡ଼ିମାନେ ମଧ ବସା ବାନ୍ଧିଛନ୍ତି ।" (ପୃଷ୍ଠା- ୨୩) ସେ ଉଦ୍ଧାର କରିଥିବା ଚିତା ବାଘ 'ସାଏବା' ଦୁର୍ବୃତ୍ତ ଶିକାରୀ ଗୁଳି କରି ହତ୍ୟା କରିଥିବାର ଶିକାରୀକୁ ଅଭିଶାପ ଦିଅନ୍ତି। ଲେଖକ ନିଜେ ଜଣେ ଶିକାରୀ ହୋଇଥିଲେ ମଧ ଲେଖାରେ ନିଜ ଭିତରେ ଥିବା ଦରଦୀ ମଣିଷର ଭାଷାକୁ ଉପନ୍ୟାସରେ ଫୁଟାଇ ପାରିଛନ୍ତି । ଉପନ୍ୟାସଟି ଆରମ୍ଭରୁ ଶେଷଯାଏ ପାଠକଙ୍କୁ ମୁଗ୍ଧ କରିବାରେ ସକ୍ଷମ ହେବାପରି ମନେହୁଏ। ସମ୍ବଲପୁର ବାସୀଙ୍କ ଅକୁଣ୍ଠ ସ୍ନେହଶ୍ରଦ୍ଧା ପାଇ ସେ ଉପନ୍ୟାସଟିକୁ ସେମାନଙ୍କୁ ଉତ୍ସର୍ଗ କରିଛନ୍ତି। ଏହାର ପ୍ରଚ୍ଛଦ ଅଙ୍କନ କରିଛନ୍ତି ବିଶିଷ୍ଟ ଶିଳ୍ପୀ ଅସୀମ ବସୁ। 'ବ୍ୟାଘ୍ର ନିନାଦ' ନାମକରଣ ଅନୁଯାୟୀ ପ୍ରଚ୍ଛଦକୁ ବ୍ୟାଘ୍ର ଛାଲରେ ଆବୃତ କଲାପରି ମନେ ହେଉଛି । ୧୭୫ ପୃଷ୍ଠା ବିଶିଷ୍ଟ ଉପନ୍ୟାସର ମୂଲ୍ୟ ୫୦ଟଙ୍କା ରଖାଯାଇଛି । ପାଠକବର୍ଗଙ୍କ ନିକଟରେ ଏହା ନିଶ୍ଚିତଭାବେ ଆଲୋଚ୍ୟର କେନ୍ଦ୍ରବିନ୍ଦୁ ହେବ ବୋଲି ଆଶା କରାଯାଉଛି ।

***ଖୋଲାଦ୍ୱାର- ୨୪ ।୩ ।୯୬***
***ବ୍ୟାଘ୍ର ନିନାଦ: ଏକ ବିହଙ୍ଗବାଲୋକନ***

ସିଦ୍ଧହସ୍ତ ଔପନ୍ୟାସିକ ରାଧାମୋହନ ମହାପାତ୍ରଙ୍କ ସଦ୍ୟ ପ୍ରକାଶିତ ଉପନ୍ୟାସ 'ବ୍ୟାଘ୍ର ନିନାଦ' ଏକ ଫିଚରଧର୍ମୀ ନୂତନ ଉପନ୍ୟାସ । ଏହା ଲେଖକ ଶ୍ରୀ ମହାପାତ୍ରଙ୍କ ଓଡ଼ିଆ ଉପନ୍ୟାସ ରଚନାରେ ସପ୍ତମ ପ୍ରୟାସ । ସଫଳ ଉଦ୍ୟମ ସତ୍ତ୍ୱେ ଯେମିତି ଏହା ତାଙ୍କର ସପ୍ତମ ସିନ୍ଧୁ, ଅବା ଅନ୍ଧାର ଆକାଶରେ ସପ୍ତର୍ଷି ମଣ୍ଡଳର ସପ୍ତମ ତାରକା ।

ଉପନ୍ୟାସର ନାମକରଣ 'ବ୍ୟାଘ୍ର ନିନାଦ' ନେଇ ପାଠକ ମନରେ ସ୍ପଷ୍ଟ ଧାରଣାଟିଏ ଜାତ ହେବା ସ୍ୱାଭାବିକ । ନିଶ୍ଚିତ ଭାବେ ଏହା ବ୍ୟାଘ୍ର ସମ୍ବନ୍ଧୀୟ । ଆଜିକାଲି ଗଳ୍ପ ବା ଉପନ୍ୟାସ ପୁସ୍ତକର ନାମାନୁସାରେ ବିଷୟବସ୍ତୁର କୌଣସି ସମ୍ପର୍କ ନଥିବା ପରି 'ବ୍ୟାଘ୍ର ନିନାଦ' ଫିଚର ଉପନ୍ୟାସ ଏକ ବ୍ୟତିକ୍ରମ । ନାମକରଣ ସହିତ ପୁସ୍ତକର ଅତୀବ ଆକର୍ଷଣୀୟ ପ୍ରଚ୍ଛଦ (ଚିତାବାଘ ଚମଡାର ମଲାଟ) ବହିର ମାନ, ମୂଲ୍ୟ ଓ ମର୍ଯ୍ୟାଦା ସୂଚାଇ ଦେଉଛି । ପୁସ୍ତକଟିକୁ ସ୍ପର୍ଶ କରିବାକୁ ପାଠକର ହାତ ସ୍ୱତଃ ଲମ୍ୱିଯାଏ, ମନ ଧାଇଁଯାଏ ଆପେ ଆପେ । ପୋଷାକ ନଥିଲେ ପରିଚୟ ମିଳିବ କାହୁଁ ନ୍ୟାୟରେ ମଲାଟର ଗୁରୁ ଭୂମିକା ରହିଛି ନିଶ୍ଚୟ । କିନ୍ତୁ କେବଳ ମଲାଟରେ ଲେଖକର ଲଲାଟ ନିହିତ ନଥାଏ; ଦେଖା ସୁନ୍ଦର ବଉଳା ଗାଈ କୋଉ କାମକୁ ସେ ନଲାଗଇର ବ୍ୟର୍ଥତା, ବିଫଳତା ସର୍ବଦା ଅନୁଭୂତ ହୁଏ ବାସ୍ତବ କ୍ଷେତ୍ରରେ ।

କିନ୍ତୁ ଔପନ୍ୟାସିକ ରାଧାମୋହନଙ୍କ 'ବ୍ୟାଘ୍ର ନିନାଦ' ଉଭୟ ରୂପ ଓ ଗୁଣରେ ଭରପୁର, ଏହାକୁ ନ ପଢିଲେ ପାଠକ ପୁସ୍ତକର ସର୍ବସଫଳତା ଉପଲବ୍‌ଧି କରିପାରିବ ନାହିଁ। ସବୁ ଶ୍ରେଣୀର ପାଠକପାଇଁ ପୁସ୍ତକରେ ଭରି ରହିଛି ଅନେକ ଉପାଦାନ । ନୂତନ ସୃଷ୍ଟି ସମ୍ବନ୍ଧରେ ଅବଗତ ହେବା ପାଇଁ ରୁଚିରାଗୀ ପାଠକ ପାଇଁ ଏଥିରେ ପୂରି ରହିଛି ଅନେକ ଖୋରାକ- ଦୃଢ ଭାବେ କୁହାଯାଇପାରେ । ପାଠକ ଥରେ ବହିଟି ପାଠ ନ କଲେ ଏବକାର ନୂତନ ସୃଷ୍ଟି ସମ୍ବନ୍ଧରେ ଜ୍ଞାନାର୍ଜନ ଅପୂର୍ଣ୍ଣ ରହିଯିବ ।

'ବ୍ୟାଘ୍ର ନିନାଦ' ଜଙ୍ଗଲ ସମ୍ବନ୍ଧୀୟ ଏକ ଆବେଗମୟ ବିସ୍ତାରିତ ଅଭିନବ ଉତ୍ତରଣ । ଏଥିପୁର୍ବରୁ ତାଙ୍କର ଅରଣ୍ୟ ସମ୍ବନ୍ଧୀୟ ଉପନ୍ୟାସ 'ଜଙ୍ଗଲର ଜମାନବନ୍ଦୀ' ଓଡିଆ ଉପନ୍ୟାସ ଜଗତରେ ଏକ ଅଭିନବ ପ୍ରୟାସ ତଥା ଏକ ଭିନ୍ନ ସ୍ୱାଦର ଉପସ୍ଥାପନା, ଉପନ୍ୟାସର ପ୍ରଥମ ଶବ୍ଦରୁ ଶେଷପୃଷ୍ଠା ପର୍ଯ୍ୟନ୍ତ ପାଠକୀୟ ଚିତ୍ତବୃତ୍ତିକୁ ସମ୍ମୋହନ କରିପାରିଛି । ଏକ ଆବେଗମୟ ପ୍ରାଣବନ୍ତ ନିର୍ଯ୍ୟାସ ଉପସ୍ଥାପନା ଶୈଳୀରେ ବ୍ୟାଘ୍ର ନିନାଦ ପରିସ୍ଫୁଟ ।

ଜଙ୍ଗଲ ଜୀବନ, ଆଦିବାସୀ ସଂସାର ସେମାନଙ୍କ ନିଶ୍ୱାସ ଓ ବିଶ୍ୱାସ । ବନ୍ୟଜନ୍ତୁଙ୍କ ନିରୀହତା ଓ ନୃଶଂସତା, ଅନୁଭୂତିଭରା ଶିକାର କାହାଣୀ ବାସ୍ତବାୟିତ ହୋଇଛି ଉପନ୍ୟାସଟିରେ । ଗଠନକଳା

ଦୃଷ୍ଟିରୁ କେବଳ କାହାଣୀ ନୁହେଁ, ଅଭିବ୍ୟକ୍ତି ଓ ଆଭିମୁଖ୍ୟରେ ମଧ୍ୟ 'ଜଙ୍ଗଲର ଜମାନବନ୍ଦୀ' ଉପନ୍ୟାସ ଜଗତରେ ଏକ ସ୍ୱତନ୍ତ୍ର ସ୍ଥାନ ଦାବୀ କରେ । ରାଧାମୋହନଙ୍କ ପରବର୍ତ୍ତୀ ଉପନ୍ୟାସ 'ବ୍ୟାଘ୍ର ନିନାଦ' 'ଜଙ୍ଗଲ ଜମାନବନ୍ଦୀ'ର ଏକ ଉନ୍ନତ ଉତ୍ତରଣ କହିଲେ ବୋଧେ ଠିକ୍ ହେବ । ଏଥିରେ ବାଘର ହୁଁକାର ଅଛି । ଅଛି ମଧ୍ୟ ସୃଷ୍ଟିର ଓଁକାର, ଉପନ୍ୟାସର ଅନ୍ତିମ ପର୍ଯ୍ୟାୟରେ ଔପନ୍ୟାସିକଙ୍କ ମନ୍ତବ୍ୟ ପ୍ରଣିଧାନଯୋଗ୍ୟ- ତମେ ଏପରି ଏକ ନିର୍ଜନ ନିବାସ, ଯେଉଁଠି ନୀରବରେ ଶତାବ୍ଦୀଟିଏ ସର୍ଜନା କରିହେବ । ସବୁ ଶବ୍ଦ ସେଠାରେ ଓଁ କାର ହୋଇ ଫେରୁଥିବ ନିଜଠାକୁ ଏବଂ ତୁମ ସଚରାଚର ବାଙ୍ମୟ ସତ୍ତାର ସଚିତ୍ର ଉପସ୍ଥିତିରେ ସୃଷ୍ଟି ହେଉଥିବ ମୋର ନିତ୍ୟ ନୂତନ ଉଚ୍ଚାରଣ, ମନ୍ତ୍ରପାଠର ଧ୍ୱନି ଭିତରେ ଶିହରିତ ହୋଇ ଉଠୁଥିବ ସର୍ଜନାର ଶତ ଝଙ୍କାର ସ୍ୱର ।

ଔପନ୍ୟାସିକ ତାଙ୍କ ବନାକର୍ଷଣ ଓ ବନ ବନାନୀର ବିପୁଳ ଆହ୍ୱାନ ତଥା ତାର ନିବିଡ଼ତା ବିସ୍ତୃତ ଭାବେ ବର୍ଣ୍ଣନା କରିଛନ୍ତି । **ଏଯାବତ୍ ତାଙ୍କ ଜୀବନର ଅସାମାନ୍ୟ ଅଭିଳାଷ ଏକ ଅହିଂସା ସମାଜର ସ୍ୱପ୍ନ ।** ସେଥିପାଇଁ ବୋଧେ ବଣ ରାଇଜର ହିଂସ୍ରପଶୁଙ୍କୁ ଆଣି ମାନବୀୟ ଧାରାରେ ଦୀକ୍ଷିତ କରାଇଛନ୍ତି ।

ସେ ବଣ ରାଇଜର କଥା କହିଲାବେଳେ କଳ୍ପନାର ଇନ୍ଦ୍ରଜାଲ ବୁଣି ନାହାଁନ୍ତି, ଯେଉଁ ବଣ ରାଇଜର କଥା ସେ ଲେଖିଛନ୍ତି ତାହା ଆମ ଓଡ଼ିଶାର ସମ୍ବଲପୁର ବରଗଡ଼ ଜିଲ୍ଲାସ୍ଥ ବାରପାହାଡ (ଦେବ୍ରୀଗଡ) ଅଭୟାରଣ୍ୟ । ଉପନ୍ୟାସର ଆଦ୍ୟ ଝଙ୍କାରରୁ ତାର ଭୌଗୋଳିକ ଅବସ୍ଥିତି ସଂପର୍କରେ ଭାଷାରେ କମନୀୟ ଭାବ ପ୍ରକାଶରେ ଏକ ସୁନ୍ଦର ମାନଚିତ୍ର ଅଙ୍କନ କରିଛନ୍ତି ସତେ ଅବା ପାଠକ ପର୍ଯ୍ୟଟକ ଭାବେ ସୁରମ୍ୟ ସ୍ଥାନଗୁଡିକୁ ଅନାୟାସରେ ପଦଚାରଣ କରି ପହଞ୍ଚିପାରିବ । ଯେଉଁ ଅରଣ୍ୟରେ ଦୀର୍ଘ ଚାରଣ କରି ସେ ଅନୁଭୂତିର ଶାମୁକା ଗୁଡିକୁ ସଂଗ୍ରହ କରି ପୁସ୍ତକରେ ମୁକ୍ତା ଫୁଟାଇଛନ୍ତି ତାହାର ପଟାନ୍ତର ନାହିଁ । ତାହା ଅନନ୍ୟ । ବନଗସ୍ତ କାଳରେ ସେ ସେଠାକାର ଗଣ୍ଡାଜାତି ସଂପ୍ରଦାୟ ସମ୍ପର୍କରେ ଆସନ୍ତି । ସେମାନଙ୍କର ସାମାଜିକ, ସାଂସ୍କୃତିକ ଜୀବନ ସହିତ ନିଜକୁ ସାମିଲ କରିଛନ୍ତି । ସେମାନଙ୍କ ଧର୍ମଧାରଣା, ଅନ୍ଧବିଶ୍ୱାସ, ଆଦିମ ସରଳତା, ନିଃସ୍ୱାର୍ଥ ଅନାବିଳ ଶ୍ରଦ୍ଧା, ମନର ମହାନତା, ହୃଦୟର ବିପୁଳତା ବିଷୟରେ ଲେଖକ ଜଣେ ବିଦଗ୍ଧ ଅନୁଭବୀ । ଏହି ଦୁର୍ଗମ ବନାଞ୍ଚଳରେ ଏକଦା ଓଡ଼ିଆ ବୀର ସଂଗ୍ରାମୀ ସୁରେନ୍ଦ୍ର ସାଏ ଆତ୍ମଗୋପନ କରି ପରାକ୍ରମଶାଳୀ ବ୍ରିଟିଶ୍ ଫଉଜ ବିରୁଦ୍ଧରେ ରଣହୁଙ୍କାର ଦେଇଥିଲେ । ତାଙ୍କର ଅପରିମିତ ସାହାସ, ଦୁଷ୍ଟ ସହିତ ଯୁଝିବାର ସଂକଳ୍ପ ଏବଂ ତାହାକୁ ମୁକାବିଲା କରି ଅପୂର୍ବ କୀର୍ତ୍ତି ଅର୍ଜିଛନ୍ତି । କିନ୍ତୁ ଇତିହାସ ତାଙ୍କୁ କ'ଣ ଦେଇଛି ବୋଲି ପ୍ରଶ୍ନ କରିଛନ୍ତି ଔପନ୍ୟାସିକ - ଲେଖକ ତାଙ୍କ ପୁସ୍ତକରେ ତାଙ୍କର ଦେଶ ଭକ୍ତିର ଆହ୍ୱାନକୁ ଉପସ୍ଥାପନ କରିଛନ୍ତି ନିଷ୍କପଟ ଭାବେ । ଜଣାଯାଏ, ସୁରେନ୍ଦ୍ର ପ୍ରକୃତରେ ବାରପାହାଡର ବ୍ୟାଘ୍ର, ଏବଂ ଏବେବି ତାଙ୍କର ଆହ୍ୱାନ ପାହାଡ ପର୍ବତର ଶିରା ପ୍ରଶିରାରେ ନିନାଦିତ ।

ଏତଗଲା ଇତିହାସର କଥା, କିମ୍ବଦନ୍ତୀର ଗାଥା । ଏଥର ଆସନ୍ତୁ ବନଜୀବନକୁ । ଲେଖକ ବନ ପରିକ୍ରମା ସମୟରେ ଶିକାର ଅନ୍ୱେଷଣରେ ଘୁରି ବୁଲିଛନ୍ତି ଅନେକ ଦୁର୍ଗମ ସ୍ଥାନ । ଚୌରାଶୀମାଲ, ରେଙ୍ଗାଲି ପାଲି, ଅନେକ ଟୀଖଘାଟୀ, ପନ୍‌ଖି, ଆଣ୍ଠୁଠଠା, ତିତିଲ, ତାରାଦେଇ ଘାଟୀ ଓ ତାହାର କିମ୍ବଦନ୍ତୀ ଓ ମହିମା କହିବାରେ କାର୍ପଣ୍ୟ ପ୍ରକାଶ କରିନାହାନ୍ତି ଲେଖକ । ଉଚ୍ଚ ଶୃଙ୍ଗରେ ପୁଣି ଏକ ସୁନ୍ଦର ସୁରମ୍ୟ ଜଳପ୍ରପାତ- ଝାମ୍ପି । ଗ୍ରାମ୍ୟ ବଧୂଭଳି ତା'ର ଲାବଣ୍ୟ । ଲୋକ ଲୋଚନଠୁ ଦୂରରେ । କେବଳ ପାଦ ଛଡା କେହି ସେ ସ୍ଥାନ ପରିଦର୍ଶନ କରିବା ଅସମ୍ଭବ । ବନରେ ଘୁରିଲା ବେଳେ ଲେଖକ ଓ ତାଙ୍କ ଶିକାରୀ ସାଥି ପ୍ରେମ୍ ଏକ ଚିତାବାଘ ଝାମ୍ପି ଗହ୍ୱରରେ ଖସିପଡିଥିବାର ଦେଖନ୍ତି । ଗତ ରାତ୍ରିରେ ସେ ବାଘ ଲଢେଇର ସ୍ୱର ଶୁଣି ସେଠାକୁ ଯାଇଥିଲେ ବୋଲି ଉଲ୍ଲେଖ କରିଛନ୍ତି । କିନ୍ତୁ ଲଢେଇର ଦୃଶ୍ୟ ଦେଖିପାରିନଥିଲେ । ତେବେ ପରଦିନ ତାହାର ଫଳାଫଳ ଏକ ଜୀବନ୍ତ ବାଘକୁ ଗହ୍ୱର ଭିତିରେ ଦେଖନ୍ତି । ଏଇଠି ଉପନ୍ୟାସର ଘୂର୍ଣ୍ଣନ କ୍ରିୟା ଆରମ୍ଭ ହୁଏ । ବନ୍ଧୁକ ଧରା ଶିକାରୀ ମନରେ ଜାତହୁଏ ମାନବିକ ଚେତନା । ଜୀବେ ଦୟାର ଆହ୍ୱାନ ତାଙ୍କ ହୃଦୟରେ ଧ୍ୱନିତ ହୁଏ,-

ମା ନିଷାଦ ପ୍ରତିଷ୍ଠାଂ, ତ୍ୱମଗମଃ ଶାମ୍ୱଧତୀ ସମାଃ<br>
ଯତ୍ କ୍ରୌଞ୍ଚ ମିଥୁନାଦେକ ମବଧୀଃ କାମମୋହିତମ୍ ।

ଦୁଃସ୍ଥ ଦୁର୍ଗତ ବାଘଟିକୁ ଗହ୍ୱର ଭିତରୁ ଉଦ୍ଧାରିବା ପାଇଁ ଶତତ ବ୍ୟାକୁଳ ହୋଇ ଉଠନ୍ତି ଏବଂ ଶତ ଚେଷ୍ଟା କରି ଚାଲନ୍ତି । ଗଭୀର ଗିରି ଗହ୍ୱର ଭିତରୁ ସେହି ବ୍ୟାଘ୍ରର ଉଦ୍ଧାର ପାଇଁ ଆରମ୍ଭ ହୁଏ ତାଙ୍କର ଦୁଃସାହସିକ ପଦକ୍ଷେପ ଏବଂ ଏହି ଅବସରରେ ସେ ଶୁଣାଇଛନ୍ତି ନିଜର ଅନୁଭୂତିର ବିପୁଳ ପରିକ୍ରମା ।

ଏକ ଲୋମହର୍ଷଣ କାହାଣୀ । ବାଘଟି ଗହନ ଗହ୍ୱରରୁ ଉଦ୍ଧାର ହୁଏ । କିନ୍ତୁ ଦେଖାଯାଏ ତା'ର ଅଣ୍ଟା ଭାଙ୍ଗି ଯାଇଛି । ଅନେକ କଷ୍ଟ ସହ୍ୟ କରି ତାର ସେବା ଶୁଶ୍ରୂଷା କରିବସନ୍ତି ଲେଖକ ଓ ତାଙ୍କର ବନ୍ଧୁ ପ୍ରେମ୍ । ସ୍ନେହ ଓ ଯତ୍ନର ସ୍ପର୍ଶରେ ହିଂସ୍ର ବାଘ ଯେ ପୋଷା ବିଲେଇଟିଏ ଭଳି ମଣିଷଠୁ ଯେ ଆହୁରି ହୃଦୟବାନ ହୋଇପାରେ, ସନ୍ନ୍ୟାସ ଭଳି ଆଚରଣ କରିପାରେ ତାହାର ଏକ ଚିତ୍ତାକର୍ଷକ ବିଷୟବସ୍ତୁ, 'ବ୍ୟାଘ୍ର ନିନାଦ' ଉପନ୍ୟାସ । ମଣିଷ ଆଜି ନିଜେ ଜଙ୍ଗଲ ଓ ପଶୁ ସମ୍ପଦର ଧ୍ୱଂସର ମୂଳକାରଣ । ପଶୁର ହିଂସ୍ରତା ଅପେକ୍ଷା ମଣିଷର ନୃଶଂସତା ଆହୁରି ଭୟାନକ ।

**- ସତ୍ୟସିଦ୍ଧାର୍ଥ**



***ସମ୍ବାଦ, ରବିବାର, ତା ୨୧.୦୫.୧୯୯୫***

ବ୍ୟାଘ୍ରନିନାଦ ଉପନ୍ୟାସଟି 'ଆବର୍ତ୍ତ'ର ପୂଜା ସଂଖ୍ୟା-୯୪ରେ ପ୍ରକାଶିତ ହୋଇଥିଲା । ଏବେ ଏହା ବହି ରୂପରେ ବଜାରରେ ମିଳୁଛି ।

ପ୍ରଥମ ପରିଚ୍ଛେଦରେ ଲେଖକ ଉପନ୍ୟାସର ନାୟକ ମୋହନର ବଦଳି ଝାରସୁଗୁଡାରୁ ସମ୍ବଲପୁର କଥା ଉଲ୍ଲେଖ କରି ଉପ୍ୟାସଟିର ପୃଷ୍ଟଭୂମିକୁ ଅବତରଣ କରିଛନ୍ତି ।

ତା'ପରେ ମୋହନଙ୍କ ବନ୍ଧୁ କ୍ୟାପଟେନ୍ ପ୍ରେମଙ୍କଠୁ ଚିଠି ପାଇବା ପରେ ଅତୀତରେ ଚିରହରିତ୍ ସ୍ମୃତିକୁ ରୋମନ୍ଥନ କରିଛନ୍ତି । ଚିଠିଟିର ସାରାଂଶ ଥିଲା ସାଏବା'ର ଦାରୁଣ ମୃତ୍ୟୁ ସଂବାଦ ।

ଉପନ୍ୟାସଟିର ପଞ୍ଚମ ପୃଷ୍ଠାଠାରୁ ପଞ୍ଚାଅଶୀ ପୃଷ୍ଠାଯାଏଁ ଲେଖକ ବାରପାହାଡ଼ ବନଦେଶ (ବର୍ତ୍ତମାନ ବରଗଡ଼ ଜିଲ୍ଲାରେ ଅର୍ନ୍ତଭୁକ୍ତ)ର ଅବସ୍ଥିତି ତଥା ଭୌଗୋଳିକ ସ୍ଥିତିର ଉଲ୍ଲେଖ କରିବା ସାଥେ ସାଥେ ବୀର ସୁରେନ୍ଦ୍ର ସାଏଙ୍କ ସଂଗ୍ରାମୀ ଜୀବନର ସ୍ମୃତିଚାରଣ କରିଛନ୍ତି । ଏଥିରେ ବୀର ସୁରେନ୍ଦ୍ର ସାଏଙ୍କ ବୀରଗାଥାର ମୂକସାକ୍ଷୀ ଭାବେ ଲେଖକ ବାରପାହାଡ଼ରେ ଅଦ୍ୟାବଧି ଥିବା ସାହେବ ମରା ପଥର, ଦେବ୍ରୀଗଡ଼ର ବାରଘରା ଗୁମ୍ଫା, ନିମକ ହାରାମ (ଠାବରୀ ଗାଁର ଜାଗିର ପଟ୍ଟା) ପଟ୍ଟା ମାସୀପଡ଼ା, ତାରାଦେଇ ପାହାଡ଼ ଆଦିକୁ ଉଲ୍ଲେଖ କରିଐତିହାସିକ ଅନୁସନ୍ଧାନ ମୂଳକ ତଥ୍ୟ ପ୍ରଦାନ କରିଛନ୍ତି ।

ପଞ୍ଚାଅଶୀ ପୃଷ୍ଠାର ଶେଷ ପାରାଠୁ ବା ଅଷ୍ଟମ ପରିଚ୍ଛେଦଠୁ ହିଁ ଲେଖକ ଉପନ୍ୟାସଟିର ଉତ୍କଣ୍ଠିତ ବିଷୟ ବସ୍ତୁକୁ ପାଠକ ନିକଟରେ ଉପସ୍ଥାପନ କରିଛନ୍ତି । ବିଷୟ ବସ୍ତୁଟି ଏହିପରି ପ୍ରତ୍ୟେକ ଦିନ ମୋହନ ଓ ତାଙ୍କ ବନ୍ଧୁ କ୍ୟାପଟେନ୍ ପ୍ରେମଙ୍କ ଜଙ୍ଗଲ ବୁଲିବା ଏବଂ ଶିକାର କରିବାର ନିଶା ପ୍ରଖର ମାତ୍ରାରେ ଥାଏ । ଏଣୁ ଦିନେ ଦିନେ ଦିହେଁ ରେଙ୍ଗାଲିପାଲି ସହଦେବ ଘରେ ବନଭ୍ରମଣ ପରେ ରାତିରେ ବିଶ୍ରାମ ନିଅନ୍ତି । ଦିନକର କଥା । ଦୁଇ ବନ୍ଧୁ ରାତିରେ ଜଙ୍ଗଲ ବୁଲିବୁଲି ଥକାହୋଇ ବିଶ୍ରାମ ନେଉଥିଲା ବେଳେ, ଠିକ୍ ମଝି ରାତିରେ ଶୁଣିବାକୁ ପାଇଲେ ବାଘର ଖେଣ୍ଡା ଖେଣ୍ଡି ଶବ୍ଦ । ସହଦେବଠୁ ଜାଣିଲେ ଯେ ପାଖମୁଣ୍ଡିଆ (ପାହାଡ଼) ଉପରେ ଚିତାବାଘ ଦୁଇଟି ଲଢ଼େଇ ଲାଗିଛନ୍ତି । ଏସବୁ ଜାଣିଲା ପରେ ମୋହନ ଓ ପ୍ରେମର ଉତ୍କଣ୍ଠା ବଢ଼ିଲା । ସେମାନେ ଦିହେଁ ସକାଳକୁ ଅପେକ୍ଷା କଲେ । ସକାଳର ସୂଚନା ପାଇବା ମାତ୍ରେ ଦୁଇ ବନ୍ଧୁ ମୁଣ୍ଡିଆକୁ ଯାଇ ଗତରାତିର ଲଢ଼େଇର ଅନ୍ଦାଜ ଲଗେଇ ଥିଲେ । ଚାରପଟକୁ ନିଘା କରୁ କରୁ ମୋହନ ପାଖରେ ଥିବା ଗହ୍ୱର ଭିତରକୁ ଉଣ୍ତି ଦେଖି ହଠାତ୍ ଚମକି ଗଲେ । ପରେ ଦି' ବନ୍ଧୁ ଏକାଠି ଗହ୍ୱରଟିକୁ ନିରୀକ୍ଷଣ କରି ଦେଖିଲେ- ଚିତା ବାଘଟିଏ ପାଣି ଭିତରେ ରହି ଜଳ ଜଳ କରି ୧୦୦ ଫୁଟ ତଳୁ ଉପରକୁ ଚାହୁଁଛି । ବାଘଟିକୁ ଗହ୍ୱର ଭିତରୁ କାଢ଼ିବା ପାଇଁ ସେମାନେ ଯୋଜନା କଲେ । ବହୁ ଶ୍ରମ ଓ ଅର୍ଥବ୍ୟୟ କରି ବାଘଟିକୁ ବାହାରକୁ ବାହାର କରିଲେ । କିନ୍ତୁ ୧୦୦ଫୁଟ ତଳ ଗହ୍ୱରର ପଥର ଚଟାଣରେ ବାଘଟି ପଡ଼ି ଯାଇଥିବା ଯୋଗୁଁ ତା' ଅଣ୍ଟା ଭାଙ୍ଗି

ଯାଇଥାଏ ? ବାଘଟିର ସେବା ଶୁଶ୍ରୂଷା କରିବା ଭିତରେ ତା' ନାଁଟି ଦିଆଯାଥିଲା 'ସାଏବା' । କିଛି ମାସ ପରେ ସେ ସଂପୂର୍ଣ୍ଣ ଭଲ ହୋଇଗଲା । ଇତି ମଧ୍ୟରେ ମୋହନ ମାଂସାସୀ ବାଘକୁ କ୍ଷୀରଭାତ ଖାଇବାର ଅଭ୍ୟାସ କରେଇଥିଲେ । ପରେ ମୋହନଙ୍କ ସମ୍ବଲପୁର ବଦଳି । ତା'ପରେ କ୍ୟାପଟେନ୍ ପ୍ରେମଙ୍କ ଚିଠି ଏବଂ ଚିଠିରେ ଉଲ୍ଲେଖଥିଲା, କେହି ଜଣେ ଦୁର୍ବୃତ୍ତ ବ୍ୟାଧ ସାଏବାକୁ ଗୁଳିକରି ହତ୍ୟା କରିଛି ।

ମୋହନ ସାଇତି ରଖିଥିବା ବନ୍ଧୁ ପ୍ରେମ୍‌ଙ୍କ ପୂର୍ବ ଚିଠିଗୁଡ଼ିକୁ ଖୋଲି ପଢ଼ିବାକୁ ଲାଗିଲା । ପ୍ରେମ ପୂର୍ବଚିଠି ସବୁରେ ଲେଖିଥିଲେ-

ମୋହନ ! ସାଏବା ଗୋଟେ ପୋଷା ବିଲେଇ କି କୁକୁରଠୁଁ ଅଧିକ ହୋଇଯାଇଛି । ବନରେ ବିଚରଣ କରୁଛି ସତ । କିନ୍ତୁ ସେଠି ତା'ର ମନ ଆଦୌ ନାହିଁ । ଘଞ୍ଚ ଅରଣ୍ୟରେ ଏଣେ ତେଣେ ବୁଲି ମଧ ଠିକ୍ ଖାଇବା ସମୟରେ ହିଁ ସହଦେବର ଘର ଆଗରେ ହାଜର ହୋଇଯାଉଛି । ଭୋଜନରେ ସାମାନ୍ୟ ଡେରି ହୋଇଗଲେ ପାଟି ମେଲାଇ ଜିଭ ଲହ ଲହ କରୁଛି ଅଝଟିଆ ଶିଶୁ ଭଳି । ଲାଙ୍ଗୁଡ଼କୁ ଟେକି କଚାଡୁଛି ବାରମ୍ବାର ? କ୍ଷୀର ଭାତ ପେଟେ ଖାଇଲେ ଯାଇଁ ଜାଗାରୁ ଉଠୁଛି । ସାଏବା ସାଏବା ବୋଲି ଡାକିଲେ ପାଖକୁ ଧାଇଁ ଆସୁଛି ପୋଷା କୁକୁରଟିଏ ପରି ।

ମୋହନ !

ଖୁସିହେବ, ସାଏବା ଗୋଟେ ସାଥିନୀ ଖୋଜି ପାଇବାରେ ସମର୍ଥ ହୋଇଛି । ତାଠୁ ଟିକିଏ ଛୋଟ, ମାଈ ଚିତାଟେ ।

ମୁଁ ଏକଥା ଉପନ୍ୟାସଟିକୁ ଶେଷ ଯାଏ ପଢ଼ିଲା ପରେ ମୋହନ ପରି ପାଠକର ମଧ ଆଖିରୁ ଲୁହ ଗଡ଼ିଆସିବ, ଏଥିରେ ସନ୍ଦେହ ନାହିଁ । ଲେଖକଙ୍କ ଉପସ୍ଥାପନ କରିବାର ବିଶେଷ ଶୈଳୀଟି ଉପନ୍ୟାସଟିକୁ ସରସ ସୁନ୍ଦର କରି ଗଢ଼ି ତୋଳିଛି । ଲେଖକଙ୍କୁ ବଧେଇ । ଶିଳ୍ପୀ ଅସୀମ ବସୁଙ୍କ ପଦତ୍ତ ପ୍ରଚ୍ଛଦଟି ସୁନ୍ଦର ହୋଇଛି । ଶେଷରେ ବ୍ୟାଘ୍ରନିନାଦ ଉପନ୍ୟାସଟିର ବହୁଳ ପ୍ରସାର କାମନା କରୁଛୁ ।

**ସମୀକ୍ଷା: ପ୍ରମୋଦ ପଣ୍ଡା**



## *ଏକବିଂଶ ଶତାବ୍ଦୀ, ୫୭, ଅକ୍ଟୋବର, ୧୯୯୫*
## *ଶିକାରୀର ଅନୁକମ୍ପା: ବ୍ୟାଘ୍ର ନିନାଦ*

ଉତ୍କଳର ଶାଶ୍ୱତ ସାହିତ୍ୟ ସରୋବରରେ ଏକ ଅଭିନବ ତରଙ୍ଗ ସୃଷ୍ଟି କରିବାର ପ୍ରଚେଷ୍ଟା ରଚିତ ରାଧାମୋହନ ମହାପାତ୍ରଙ୍କ ବ୍ୟାଘ୍ରନିନାଦ ଏକ ଭିନ୍ନ ସ୍ୱାଦର ଉପନ୍ୟାସ । କଳ୍ପନା ଜଳ୍ପନାର ରଙ୍ଗୀନ ଜାଲରେ ପାଠକର ବୋଧଶକ୍ତିକୁ ଛନ୍ଦାଛନ୍ଦି, ବନ୍ଧାବନ୍ଧି କରି କିଛି ସ୍ୱପ୍ନିଳ ଆବେଗ ସୃଷ୍ଟି କରିବାର ପ୍ରୟାସଠାରୁ ଦୂରରେ ରହି ଲେଖକ ନିଜ ଜୀବନର ଶ୍ରେଷ୍ଠ ସଂପଦ ପାଠକ ସମ୍ମୁଖରେ ଉନ୍ମୋଚନ କରିଛନ୍ତି ଖୁବ୍ ସରଳ ଓ ସାବଲୀଳ ଭଙ୍ଗୀରେ । ପଶ୍ଚିମ ଓଡ଼ିଶାରେ ଜଣେ ପଦସ୍ଥ କର୍ମଚାରୀ ରୂପେ କାର୍ଯ୍ୟନିର୍ବାହ କରୁଥିବା ସମୟରେ ଜଣେ ସୌଖୀନ ଶିକାରୀ ଭାବେ ନିଜର କ୍ରୀଡା ଉଦ୍ୟାନ କରି ବାଛିଥିଲେ ଆଦିଗନ୍ତ ବିସ୍ତାରିତ, ପାଦପପୁଞ୍ଜ ବେଷ୍ଟିତ, ବନ୍ୟଜନ୍ତୁ ପରିଶୋଭିତ ବାରପାହାଡର ଅରଣ୍ୟଭୂମିକୁ । ସେହି ନିଘଞ୍ଚ ବନର ବନ୍ଧୁର ପଥରେ, ପର୍ବତ ଘାଟୀର ଉଠାଣିଗଡାଣି ମଧ୍ୟରେ ପର୍ବତାରୋହଣର ଶିହରଣ ଓ ଅନ୍ଧକାରପୂର୍ଣ୍ଣ ରାତ୍ରିରେ ମୁଣ୍ଡରେ ହେଡଲାଇଟ୍, ହାତରେ ୪୦୫ ରାଇଫଲ୍ ଓ ଅଣ୍ଟାରେ କ୍ୟାଟ୍ରିଜ୍ ବେଲ୍ଟ ଆଦି ସାଜ ସଂରଜାମରେ ସଜ୍ଜିତ ହୋଇ ବାଘ ଶିକାର କରିବାର ରୋମାଞ୍ଚକର ଅନୁଭୂତିକୁ ପାଠକ ସମ୍ମୁଖରେ ନିଜର ଦୃଷ୍ଟିଭଙ୍ଗୀ ଦେଇ ଉପସ୍ଥାପିତ କରିଛନ୍ତି ଲେଖକ ଏହି ଉପନ୍ୟାସଟିରେ । ତାଙ୍କର ବନରଂକା ଜୀବନର କେତୋଟି ଅବିସ୍ମରଣୀୟ ସ୍ମୃତି ତଥା ହିଂସ୍ର ବନ୍ୟପଶୁ ବ୍ୟାଘ୍ର ସମ୍ବନ୍ଧୀୟ କେତେକ ରୋମାଞ୍ଚକର ଉପାଖ୍ୟାନର ସମାହାର ବ୍ୟାଘ୍ରନିନାଦ ଓଡ଼ିଶାର ଉପନ୍ୟାସ ଜଗତରେ ଏକ ନୂତନ ପଦକ୍ଷେପ । ଅବଶ୍ୟ ପୂର୍ବରୁ ଗୋପୀନାଥ ମହାନ୍ତି, ଶାନ୍ତନୁ କୁମାର ଆଚାର୍ଯ୍ୟ ଓ ପ୍ରତିଭା ରାୟ କୋରାପୁଟ, କଳାହାଣ୍ଡି, ଫୁଲବାଣୀ ଆଦି ଅରଣ୍ୟ ଅଧ୍ୟୁସିତ ଅଞ୍ଚଳର ବନଜୀବନ ଉପରେ ଅନେକ କାହାଣୀ ଲେଖିଛନ୍ତି; ମାତ୍ର ଶିକାର ଅଭିଜ୍ଞତା ତଥା ବନ୍ୟଜନ୍ତୁମାନଙ୍କର ଆତ୍ମିକ କାହାଣୀ ଲେଖିବାରେ ଲେଖକଙ୍କର ଏହା ଦ୍ୱିତୀୟ ପଦକ୍ଷେପ (ଜଙ୍ଗଲର ଜମାନବନ୍ଦୀ- ୧୯୯୪ରେ ପ୍ରକାଶିତ)

ବରଗଡ଼ଠାରୁ ୨୫ କି.ମି ଦୂରରେ ଅବସ୍ଥିତ ଡୁଙ୍ଗୁରି ଅଞ୍ଚଳ ପାରହୋଇ ହୀରାକୁଦ ଜଳଭଣ୍ଡାରକୁ ଛୁଇଁ ଲମ୍ବିଛି ୧୩୦୦ କି.ମି. ବ୍ୟାପି ଏକ ସୁଦୀର୍ଘ ଗ୍ରୀଷ୍ମମଣ୍ଡଳୀୟ ବନଦେଶ, 'ବାରପାହାଡ' । ଓଡ଼ିଶାର ଅନ୍ୟତମ ବରପୁତ୍ର, ପ୍ରଥମ ସ୍ୱାଧୀନତା ସଂଗ୍ରାମର ଏକ ଅଗ୍ନିସ୍ଫୁଲିଙ୍ଗ ବୀର ସୁରେନ୍ଦ୍ର ସାଏଙ୍କର କର୍ମପୀଠ, ବାସସ୍ଥଳୀ, ମନ୍ତ୍ରଣାଗୁମ୍ଫା ତଥା ଗୋପନ ସ୍ଥାନଗୁଡିକ ଲୁଚି ରହିଛି ଏହି ଅଲଙ୍ଘ୍ୟ ଗିରିଶୃଙ୍ଗ ଓ ଗିରିଗୁମ୍ଫା ଗୁଡିକରେ । ସେହି ଘନ ଜଙ୍ଗଲ କୋଳରେ କେତୋଟି ଛୋଟିଆ ଛୋଟିଆ ଗ୍ରାମ ଯଥା- ଚୌରାଶିମାଲ୍, ରେଙ୍ଗାଲିପାଲି, କୁଲିହାମାଲ୍ ଇତ୍ୟାଦି । କର୍ମଠ, କଷ୍ଟସହିଷ୍ଣୁ ଓ ଚରିତ୍ରବାନ୍ ଗଣ୍ଡା ଆଦିବାସୀମାନେ ଏହି ଗ୍ରାମଗୁଡିକରେ ବନ୍ୟଜନ୍ତୁମାନଙ୍କ ସହ ବନ୍ୟପ୍ରକୃତି ସହ ସମନ୍ୱିତ ଭାବରେ

ବସବାସ କରନ୍ତି । ଏଇମାନଙ୍କ ମେଳରେ ବାରପାହାଡର ଗଭୀର ବନାନୀକୁଂଜ ଭିତରେ ଲେଖକ ନିଜର ବନ୍ଧୁ କ୍ୟାପଟେନ୍ ପ୍ରେମ୍‌ଙ୍କ ସହ ଘୁରି ବୁଲିଛନ୍ତି ଶିକାର ଆଶାରେ । କେତେବେଳେ କୁତ୍ରା, ଠେକୁଆ, ଝିଙ୍କ କୁଳିହାମାଲ ଜଙ୍ଗଲରୁ ଓ କେତେବେଳେ ହଂସ, ହଂସରାଳି ବା ବ୍ରାଜକ ପକ୍ଷୀର ଶିକାର ଅନୁଭୂତି ସହ ଆଗପଛ ହୋଇ ମିଶିରହିଛି ଲେଖକଙ୍କର  ଚପଳ ବାଲ୍ୟକାଳର ନଟ୍‌ଖଟ୍ କେତୋଟି ଅଲିଭା ସ୍ମୃତି, ଯଥା - ଛିଟିକିଣିରେ ଚଢେଇ ମାରିବା, ଭାଲିରେ ସାପମାରିବା, ଧନୁତୀରରେ ଗୋଧି, କଟାଶ, ଓଧ ଓ ବିଲୁଆଙ୍କୁ ମାରିବା, ଧଳାପାରାର ଗୋଡରେ ବାନ୍ଧି ଚିଠି ପଠାଇବା, ମଶାଣିରୁ ହାଡ ସଂଗ୍ରହ କରି ମଣିଷ କଙ୍କାଳ ତିଆରି କରିବା, ଶ୍ମଶାନରୁ ଅମାବାସ୍ୟା ରାତିରେ ଖପୁରି ସଂଗ୍ରହ କରି ଲୁଚି ଲୁଚି ମନ୍ତ୍ରସାଧନ ଦ୍ୱାରା ହାଡ଼ବାଇ ନଚେତ୍ ବାବନାଭୂତକୁ ବଶ କରିବାର ଦୁଃସାହସିକ ସ୍ମୃତିଗୁଚ୍ଛ ।

ଏହିସବୁ ଆତ୍ମକଥାର ଉପଚାର ବ୍ୟତୀତ ଉପନ୍ୟାସଟି ସମୃଦ୍ଧ ହୋଇଛି ବନ୍ୟ ପଶୁପକ୍ଷୀଙ୍କ ସମ୍ବନ୍ଧୀୟ ଅନେକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଏବଂ ବାଘ, ଚିତାବାଘ ଆଦିଙ୍କ ସମ୍ବନ୍ଧୀୟ କେତେକ ହୃଦୟଗ୍ରାହୀ କିମ୍ବଦନ୍ତୀ ଓ ଉପାଖ୍ୟାନ, ପ୍ରାଣୀବିତ୍ କେର୍ଣ୍ଣଲ୍ ଶେର୍ ସିଂଙ୍କ ରଚିତ ଦୁଇଟି ବ୍ୟାଘ୍ର ଉପାଖ୍ୟାନ ସହିତ ମିଶିରହିଛି କେତେକ ସତ୍ୟ ଲୋମହର୍ଷଣକାରୀ ଘଟଣା, ଯଥା- ବନ୍ୟାସ୍ରୋତରେ ଭାସି ଯାଉଥିବା ଏକ ଜୀବନ୍ତ ମହାବଳ ବାଘକୁ ମଢ ଭାବି ଗୋଟାଇବାର ଅପଚେଷ୍ଟା କରିବା ସମୟରେ ଗୁରିଆ ସେଠୀର ମୃତ୍ୟୁ, କୁମ୍ଭୀର ଅଣ୍ଡା ଲୁଚି ଲୁଚି ଖାଇବାକୁ ଚେଷ୍ଟା କରୁଥିବା ବେଳେ କୁମ୍ଭୀରାଣୀ ଓ ଚିତାବାଘ ମଧ୍ୟରେ ଲାଗିଥିବା ଘମାଘୋଟ ଯୁଦ୍ଧ, ଏବଂ ଶହେଫୁଟ ଗଭୀର ଝାମ୍ପି ଭିତରେ ନିପତିତ ଏକ ଜଖମୀ ଚିତାବାଘକୁ ବାଉଁଶ ଭାରା, ଦଉଡି ଓ ଜାଲ ସାହାଯ୍ୟରେ ଉଦ୍ଧାର କରି, ନିବିଡ ଜଙ୍ଗଲ ମଧ୍ୟରେ ତାର ଚିକିତ୍ସା ଓ ଆରୋଗ୍ୟର ବ୍ୟବସ୍ଥା କରି ମାଂସାଶୀ, ହିଂସ୍ର ଚିତାବାଘଟିକୁ ଦୁଧଭାତ ଖୋଇ ଏକଦମ୍ ନିରାମିଶାଷୀ କରିବାର ସଫଳ ପ୍ରୟାସ। ଏହା ସହିତ ଛନ୍ଦାଛନ୍ଦି ହୋଇ ରହିଛି  ସନା ସୋରେନ୍ ନାମକ ଏକ ଗାଈ ଜଗୁଆଳ ପିଲାର ନାଲି ଗାମୁଛା ଦେଖାଇ ବିପଦରେ ପଡିବାକୁ ଯାଉଥିବା ରେଳଗାଡିକୁ ରକ୍ଷା କରିବାର ଅନୁଭୂତି ଓ ଭାଲୁ କାମୁଡାରେ ମରିଥିବା ରେଙ୍ଗାଲିପାଲିର ବୁଢୀକୁ, ଉଦ୍ଧାର ପାଇଥିବା ଚିତାବାଘ 'ସାଏବା'କୁ ଜଗିବସିବା ପରି ଚମକପ୍ରଦ ଘଟଣା ।

ଏହି ଉପନ୍ୟାସଟି କେବଳ କେତେକ ରୋମାଞ୍ଚକାରୀ ଶିକାର ଅନୁଭୂତି ବା ଉପାଖ୍ୟାନର ସମାହାର ନୁହେଁ, ଏଥିରେ ଛତ୍ରେ ଛତ୍ରେ ଭରିରହିଛି ଲେଖକଙ୍କର ବନ୍ୟସଂପଦ, ବନ୍ୟଜନ୍ତୁ ଓ ବନ୍ୟମାନବ ପ୍ରତି ପୁରିରହିଥିବା ମାର୍ମିକ ସ୍ନେହ, ସହାନୁଭୂତି ଓ ଅନୁକମ୍ପା । ସୌଖୀନ ଶିକାରୀ ହୋଇ ମଧ୍ୟ ଜଖମୀ ଚିତାବାଘର ଆର୍ତ୍ତଚାହାଣୀ ତାଙ୍କ ହୃଦୟରେ ଯେଉଁ ଅନୁକମ୍ପାର ସ୍ୱର ଓ ଶିକାର ପ୍ରତି ବିରାଗ ସୃଷ୍ଟି କରାଇଛି ତାର ପଟାନ୍ତରର ନାହିଁ। ଲେଖକଙ୍କ ନିଜ ଭାଷାରେ 'ତୁମ ନିସ୍ତରଙ୍ଗ ଆଲିଙ୍ଗନ ଭିତରେ ମୁଁ ପୀୟୂଷର ସନ୍ଧାନ ପାଇଛି ।' ପୁନଶ୍ଚ 'ମୋର ଲେଖାଜୀବନ ଶିକାରରୁ ଆରମ୍ଭ ଓ ମୋ

ବନରଙ୍କା ଜୀବନ ମୋତେ ସନ୍ଧାନ ଦେଇଛି ସାହିତ୍ୟର ଅନୁରାଗ, ଠିକ୍ ଘୃଣାରୁ ସ୍ନେହ, ଧ୍ୱଂସରୁ ସୃଷ୍ଟି, ଶ୍ମଶାନରୁ ସର୍ଜନା ଓ ମୃତ୍ୟୁରୁ ଜୀବନ ପରି ।'

ବ୍ୟାଘ୍ରନିନାଦ ଉପନ୍ୟାସଟି କେବଳ ଜିମ୍ କାରବେଟ୍‌ଙ୍କ ଶିକାର କାହାଣୀଗୁଡ଼ିକ ପରି କେତେକ ଶିକାର ଅନୁଭୂତିର ଉପକଥନ ନୁହେଁ, ଏହାର ଅନ୍ତରାଳରେ ଛପିରହିଛି ଅବକ୍ଷୟ ଉନ୍ମୁଖ ଅରଣ୍ୟ ସଂପଦର ରକ୍ଷଣାବେକ୍ଷଣ ପାଇଁ ଏକ ମୌନ ନିବେଦନ । ତେଣୁ କୁଲିହାମାଲ୍‌ର ୯୨ ବର୍ଷୀୟ ବୃଦ୍ଧ ବୁଢନ୍ ସାଉଁତାର ଭାଷାରେ ଲେଖକ କହୁଛନ୍ତି: 'ଜଙ୍ଗଲ ନାଇନ, ଜନ୍ତୁ ନାଇନ । ଜୀବଜନ୍ତୁ ମଣିଷ ଖାଇବାକେ ଜମି । ଜନ୍ତୁ ଆଗେ ଖାଇଁମେ । ତା'ପରେ ଯାହା ବନ୍‌ଲା, ମଣିଷ ଖାଇଁମେ । ସବୁ ଜନ୍ତୁତ ମରିଗଲେନ୍, ଜଙ୍ଗଲ ସରିଗଲେନ୍ । ମଣିଷ ସବ୍‌ଶେଷ୍ କରିଦେଲାନ୍ । ବିଷଦେଇ ବାଘ୍‌କେ ମାର୍‌ଲା, ଚମଡା ପାଇଲା । ହାତୀକେ ମାର୍‌ଲା, ଦାନ୍ତ ବିକ୍‌ଲା । ଗଛ କାଟ୍‌ଲା, ବିକ୍‌ଲଶ ସବ୍ ଶେଷ କଲା । ଭଗବାଁ ରୋଷ୍ କଲା, ବିଚାରିଲା ଏସବ୍ ମନୁଷ୍‌କେ କାମ୍ । ଦେଖୁନ୍ ବାବୁ, ବଡେ ବଡେ ଧାନଗଛ ଅଛେ । ଫସଲ୍ ବିଲ୍‌କୁଲ୍ ନାଇଁନା, ଭାଗବାଁକେ ରୋଷ୍ ନାଇଁ କରବ୍ କାଏଁ ?'

ଏସବୁ ଦୃଷ୍ଟିରୁ ବିଚାର କଲେ ବ୍ୟାଘ୍ର ନିନାଦ ଉପନ୍ୟାସଟି ଏକ ସାଧାରଣ ଭ୍ରମଣ କାହାଣୀ, ଜଙ୍ଗଲ କାହାଣୀ ବା ଶିକାର କାହାଣୀଠାରୁ ଉଚ୍ଚସ୍ତରରେ ପର୍ଯ୍ୟାୟଭୁକ୍ତ ହୋଇପାରେ । ବନ୍ୟଜନ୍ତୁମାନଙ୍କ ଜୀବନ ସମ୍ବଳିତ ଅନେକ ହୃଦୟଗ୍ରାହୀ ଉପାଖ୍ୟାନ ତଥା ନିଷ୍କପଟ ବନ୍ୟବାସୀଙ୍କର ସରଳ ଜୀବନଯାପନ ପ୍ରଣାଳୀ ମଧ୍ୟଦେଇ ଲେଖକ ନିଜର ମାନସିକ ଓ ଆତ୍ମିକ ବିଶ୍ଳେଷଣ କରିବାକୁ ସକ୍ଷମ ହୋଇଛନ୍ତି । ହିଂସ୍ରତାର ମାନବିକତା ଓ ମାନବିକତାର ମୁଖାତଳେ ଛପିରହିଥିବା ହିଂସ୍ରତାକୁ ଦର୍ଶାଇ ଲେଖକ ଏକ ହିଂସ୍ର ଓ ଭୟଉଦ୍ରେକକାରୀ ପଶୁ 'ବାଘ'ର ଅନ୍ତର୍ନିର୍ବେଦନ ଏଠାରେ ପ୍ରକାଶ କରିଛନ୍ତି । ଉପନ୍ୟାସଟିରେ ସମୟ ପେଣ୍ଡୁଲମ୍ ଭଳି ବର୍ତ୍ତମାନ ଓ ଅତୀତ ଭିତରେ ଦୋଳାୟମାନ ହୋଇ ପାଠକଙ୍କର କ୍ଳାନ୍ତି ଅପନୋଦନ କରିବାରେ ସକ୍ଷମ ହୋଇଛି । ବିଶେଷକରି ସମ୍ବଲପୁରୀ ଭାଷା ପର୍ଯ୍ୟବଶିତ କଥୋପକଥନ ଏବଂ ସରଳ, ସହଜ କାହାଣୀ କହିବାର ଭଙ୍ଗୀରେ ପଟୁତା ଲେଖାଟିକୁ ରସବନ୍ତ କରିଛି ।

ଆଶା କରୁଛି ବନ୍ୟପ୍ରକୃତି ଓ ବନ୍ୟସମ୍ପଦର ରକ୍ଷା ପାଇଁ ଲେଖକଙ୍କର ନମ୍ର ନିବେଦନ ସୁସଭ୍ୟ ଦେଶବାସୀଙ୍କ ପ୍ରାଣରେ କିଛିଟା ସଚେତନତା ଜାଗ୍ରତ କରିବ ।

**ସମୀକ୍ଷା : ସୁମିତ୍ରା ମିଶ୍ର**
ଇଂରାଜୀ ବିଭାଗ, ରେଭେନ୍ସା କଲେଜ, କଟକ



***ପ୍ରଜାତନ୍ତ୍ର ସାପ୍ତାହିକୀ***
***ନଭେମ୍ବର, ୧୯-୨୫, ୧୯୯୫***
***ଅନୁଭୂତିର ଇନ୍ଦ୍ରଜାଲରେ ବନବାସୀ ସଭ୍ୟତା: ବ୍ୟାଘ୍ର ନିନାଦ***

'ଏହା ଏମିତି ଏକ ପ୍ରଶାନ୍ତ ବନାଳୟ ଯେଉଁଠି ଧ୍ୟାନମଗ୍ନ ମୁନି ଭଳି ନୀରବରେ ଶତାବ୍ଦୀଟିଏ ସର୍ଜନା କରିହେବ, ଯେଉଁଠି ସବୁ ଉଚ୍ଚାରଣ ଓଁକାର ହୋଇ ପବନରେ ଧ୍ୱନି ତୋଳୁଥିବ; ଯେଉଁଠି ସର୍ବଦା ସଚ୍ଚିତ୍ର ଉପସ୍ଥିତିର ବାଙ୍ମୟ ସତ୍ତା ଉପଲବ୍ଧ ହେଉଥିବ ।'

ଲେଖକ ଶ୍ରୀ ରାଧାମୋହନ ମହାପାତ୍ର ତାଙ୍କ ଶିକାରୀ ଜୀବନର ଅନୁଭୂତିକୁ 'ବ୍ୟାଘ୍ର ନିନାଦ' ପୁସ୍ତକରେ ଅତି ସ୍ପଷ୍ଟ ଭାବରେ ବର୍ଣ୍ଣନା କରିଛନ୍ତି । ଲେଖକ ଏଥିରେ ପାଠକୀୟ ଆବେଗ ଓ ଭାବପ୍ରବଣତାକୁ ବାନ୍ଧି ରଖିବା ପାଇଁ ପ୍ରୟାସ କରିଛନ୍ତି । ବରଗଡ଼ ଜିଲ୍ଲାର ବାରପାହାଡ଼ ବନଦେଶ ଲେଖକଙ୍କୁ ବହୁବାର ଆକୃଷ୍ଟ କରିଛି । ସେ ତାଙ୍କ ଶକାରୀ ଜୀବନର ବହୁ ସମୟ ଏହି ବନାଞ୍ଚଳରେ କଟାଇଛନ୍ତି ସାଥୀ ପ୍ରେମ ସାଗର ତିୱାରୀଙ୍କ ସହିତ । ବନଭ୍ରମଣ କାଳରେ ବାରପାହଡସ୍ଥ ଝାମ୍ପି ପ୍ରପାତରେ ଅର୍ଦ୍ଧମୃତ ଅବସ୍ଥାରେ ଉବୁଟୁବୁ ହେଉଥିବା ଏକ ପୁରୁଷ ଚିତାବାଘର ଦୁର୍ଦ୍ଦଶା ଲେଖକଙ୍କ ହୃଦୟରେ ସୃଷ୍ଟି କରିଥିଲା ଅନୁକମ୍ପା ଓ ସମବେଦନାର ଆଉ ଏକ ପ୍ରପାତ । ଏହି ଚିତାବାଘର ଦୟନୀୟ ଅବସ୍ଥା ତାଙ୍କ ପାଇଁ ଆଣି ଦେଇଥିଲା 'ଏକ ଭିନ୍ନ ଦୁନିଆଁର ସ୍ୱାଦ, ନବୀନାଲୋକର ଝଲକ ଓ ନୂତନାନୁଭୂତିର ତରଙ୍ଗ ।' ଅଭିନବ ଉପାୟରେ ଝାମ୍ପି ପ୍ରପାତରୁ ଚିତାବାଘଟିକୁ ଉଦ୍ଧାର କରି 'ସାଏବା' ନାମରେ ଜୀବଟିକୁ ପୁନର୍ଜନ୍ମ ଦେଲେ ଲେଖକ । ସବୁଜ ଶ୍ୟାମଳ ବାରପାହାଡ଼ର କମନୀୟ ବନଭୂମି ଓ ଗିରିମାଳାର ଚିର ହରିତ୍ ସୁଉଚ୍ଚ ଶୃଙ୍ଗ ଗହ୍ୱରରେ ସାଏବାର ଭୂମିକା ଓ ଜୀବଦଶା ସୃଷ୍ଟି କରିଛି ଏକ ନୂତନ ଅଧ୍ୟାୟ ।

ସାଏବାର ଇତିହାସକୁ ନେଇ 'ବ୍ୟାଘ୍ର ନିନାଦ'ର ସୃଷ୍ଟି । ବାରପାହାଡ଼ର ଭୌଗୋଳିକ ସ୍ଥିତି ଓ ବିଶେଷତ୍ୱ ସମ୍ବନ୍ଧରେ ଲେଖକ ଅନେକ ତଥ୍ୟ ପ୍ରଦାନ କରିଛନ୍ତି ଏଥିରେ । ଏହି ବନଭୂମି ଥିଲା ସଂଗ୍ରାମୀ ବୀର ସୁରେନ୍ଦ୍ର ସାଏଙ୍କର ଚରାଭୂଇଁ । ବୀର ସୁରେନ୍ଦ୍ରଙ୍କ ପ୍ରତି ଲେଖକଙ୍କର ଆନୁଗତ୍ୟର ଛଟା ପୁସ୍ତକଟିର ପ୍ରଥମ ଭାଗରେ ସ୍ପଷ୍ଟ ଫୁଟି ଉଠିଛି । ଲୋକକଥା, ଆଦିବାସୀ ସଭ୍ୟତା ଓ ଐତିହାସିକ ସୂଚନାକୁ ଭିତ୍ତି କରି ସୁରେନ୍ଦ୍ର ସାଏଙ୍କ ଜୀବନର କେତେକ ଆନାଲୋଚିତ ଦିଗ ପ୍ରତି ଲେଖକ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିଛନ୍ତି । ବର୍ଣ୍ଣନା ଛଳରେ ଲେଖକ ପ୍ରକାଶ କରିଛନ୍ତି- ସୁରେନ୍ଦ୍ର ସାଏଙ୍କ ବୀରତ୍ୱ କେବଳ ରାଜନୀତି ସଂଘର୍ଷରେ ସୀମିତ ନଥିଲା । ତାଙ୍କ ଅସୀମ ସାହସିକତାର ମଧ୍ୟ ପରିଚୟ ମିଳେ ବାରପାହାଡ଼ ହିଂସ୍ର ବନ୍ୟଜନ୍ତୁମାନଙ୍କୁ ମୁକାବିଲା କରିବାରେ ।

ଦୁର୍ଗମ ବାରପାହାଡ଼ର ଝାମ୍ପି ପ୍ରପାତରୁ ବାଘଟିକୁ ଉଦ୍ଧାର କରି ତା'ର ସେବା ଶୁଶ୍ରୂଷାରେ ମାତି ଉଠିଛନ୍ତି ଲେଖକ। ସାଏବା ରୋଗମୁକ୍ତ ହେଲା ପରେ ଏକ ନୂତନ ଚେତନାରେ ଶିହରି ଉଠିଛି ତା'ର ତନୁ ମନ । ପୁଣି ପ୍ରବୃତ୍ତି ତା'ର ଲୋପ ପାଇଛି ଅତି ଆଶ୍ଚର୍ଯ୍ୟଜନକ ଭାବରେ । ମଣିଷର ସେବା, ଯତ୍ନ ଓ ସ୍ନେହ ତା' ହୃଦୟରେ ରେଖାପାତ କରିଛି । ଫଳରେ ପଶୁ ସମାଜର ହିଂସ୍ରତା ପ୍ରତି ସେ ବିତୃଷ୍ଣ ହୋଇ ଉଠିଛି । ଅରଣ୍ୟର ଏହି ହିଂସ୍ର ଜୀବଟିର ହୃଦୟ ମାନବୋତ୍ତର ଚେତନାରେ ବିକଶିତ ହୋଇଉଠିଛି । ତା'ଠାରୁ ମିଳିଛି ମଣିଷର ଆଚରଣ । ଚିତା ବାଘ ପୋଷା ମାନିଛି । ଏଥି ପାଇଁ ଲେଖକ ଶ୍ରୀ ମହାପାତ୍ରଙ୍କର ତ୍ୟାଗ, ନିଷ୍ଠା, ଅଧ୍ୟବସାୟ ଓ ଅବଦାନର ପ୍ରତିଟି କାହାଣୀରେ ପୁସ୍ତକଟି ସମୃଦ୍ଧ ହୋଇଉଠିଛି । ଅରଣ୍ୟର ହିଂସ୍ର ଜୀବକୁ ପୋଷା ମନାଇବାରେ ଲେଖକଙ୍କର ପରୀକ୍ଷା ସଫଳ ହୋଇଛି। 'ପଶୁକୁ କେବଳ ଭୟ ଦ୍ୱାରା ବଶୀଭୂତ କରାଯାଇ ପାରେନା, ପ୍ରେମ ଦ୍ୱାରା ମଧ୍ୟ କରାୟତ୍ତ କରାଯାଇପାରେ ।'

ହିଂସ୍ର ଚିତାବାଘଟିକୁ ସରଳ ସାଏବାରେ ପରିଣତ କରିବା ମୂଳରେ ଲେଖକଙ୍କର ଜୀବନାଦର୍ଶ ପାଠକ ହୃଦୟରେ ଉତ୍କଣ୍ଠା ସୃଷ୍ଟି କରେ । ପଶୁ ପ୍ରତି ଲେଖକଙ୍କର ଦୟା ବିଗଳିତ ହୃଦୟର କରୁଣ ଆଲେଖ୍ୟର ମୂର୍ଚ୍ଛନାରେ ନିନାଦିତ ହୋଇ ଉଠିଛି ପୁସ୍ତକଟିର କଥାବସ୍ତୁ ଏବଂ ଶେଷରେ ଅଜ୍ଞାତ ବ୍ୟାଧର ଗୁଳିବିଦ୍ଧ ହୋଇ ସାଏବାର ପଶୁଟି ଭୂମିରେ ଲୋଟି ପଡ଼ିଛି । ସାଏବାର ଦାରୁଣ ଅକାଳ ମୃତ୍ୟୁ ଲେଖକଙ୍କୁ ବ୍ୟଥିତ କରିଛି । ମର୍ମାନ୍ତିକ ଭାବପ୍ରବଣତାରେ ଲେଖକ ହତ୍ୟାକାରୀ ବ୍ୟାଧ ପ୍ରତି କ୍ରୁଦ୍ଧ ହୋଇ ତାକୁ ଅଭିଶାପ ଦେଇଛନ୍ତି । ବାସ୍ତବରେ ସାଏବାର ଜୀବନ କାହାଣୀ ଲେଖକଙ୍କର ଶିକାରୀ ଜୀବନର ଏକ ଦୀର୍ଘ ଇତିହାସ । ଘଞ୍ଚ ବନାନୀର ଗିରି ଗହ୍ୱରରେ ପ୍ରତିଧ୍ୱନି ତୋଳୁଥିବା ବ୍ୟାଘ୍ର ନିନାଦ ଲେଖକଙ୍କ ହୃଦୟ କନ୍ଦରରେ ଚେତନାର ଫଲ୍‌ଗୁ ହୋଇ ବହି ଯାଇଛି ଭାବ, ଭାଷା ଓ ଆବେଗକୁ ପାଥେୟ କରି ।

ପୁସ୍ତକଟି ମୁଖ୍ୟ କଥାବସ୍ତୁକୁ ଶାଣିତ ଓ ରସାଣିତ କରିବା ଆଳରେ ଲେଖକ ବହୁ ଉପକଥା ଓ କିମ୍ବଦନ୍ତୀର ଆଶ୍ରୟ ନେଇଛନ୍ତି । ନିଜ ଅନୁଭୂତିରୁ ବହୁ କାହାଣୀର ଅବତାରଣା କରିଛନ୍ତି । ଏହା ଦ୍ୱାରା ଲେଖକୀୟ ଚେତନା ପ୍ରବାହର ଧାରା କେତେକାଂଶରେ ବାଧା ପ୍ରାପ୍ତ ହେଉଥିବା ଜଣା ପଡୁଥିଲେ ହେଁ ମୁଖ୍ୟ କଥାବସ୍ତୁର ସାମଗ୍ରିକତା ଅକ୍ଷୁଣ୍ଣ ରହିଛି । ବର୍ଣ୍ଣନାର ଛଟା, କାହାଣୀର ନିର୍ଯାସ, ଭାଷା ବିନ୍ୟାସ, ପ୍ରଚଳିତ କଥିତ ଶବ୍ଦ ପ୍ରୟୋଗ, ପାଠକୀୟ ଉତ୍କଣ୍ଠା ଓ ସାମାଜିକ ଜୀବନ ଦର୍ଶନ ଦୃଷ୍ଟିରୁ ବିଚାର କଲେ ପୁସ୍ତକଟି ତା'ର ସ୍ୱାତନ୍ତ୍ର୍ୟ ବଜାୟ ରଖିଛି । ଗପକଥା ପ୍ରୟୋଗରେ ଲେଖକ ସିଦ୍ଧହସ୍ତ । ଆତ୍ମଜୀବନୀ ମୂଳକ ଉପନ୍ୟାସ ରଚନା ଶୈଳୀରେ ଲେଖକ ତାଙ୍କ ଜୀବନର ବହୁ ମଧୁରାମ୍ଳ ଅନୁଭୂତି ଓ ଘଟଣା ଅତି ସୁନ୍ଦର ଭାବରେ ବର୍ଣ୍ଣନା କରି ପାଠକୀୟ ଆବେଗକୁ ବାନ୍ଧି ରଖିପାରିବାକୁ ଉଦ୍ୟମ କରିଛନ୍ତି । ବର୍ଣ୍ଣନାର ନଟେଇରେ ଉପକଥାର ଖିଅଗୁଡ଼ିକ ଛନ୍ଦି ହୋଇ ପୁସ୍ତକଟିର କଳେବର ବୃଦ୍ଧି କରିଥିବା ମନେହୁଏ । ତେବେ ନିଜର ଭାବ ଓ ଚେତନାକୁ ରୂପାୟିତ କରିବାରେ ଲେଖକଙ୍କର ପ୍ରଚେଷ୍ଟା ସଫଳ

ହୋଇଛି । ପୁସ୍ତକଟିର କେତେକାଂଶରେ ସମ୍ବଲପୁରୀ ଆଦିବାସୀ ଭାଷା ପ୍ରୟୋଗ ପୁସ୍ତକଟିର କଥାବସ୍ତୁକୁ ରସାଳ କରିଛି । ପ୍ରକୃତିର ନିଃସର୍ତ୍ତ ଉପହାର ବଣ ଜଙ୍ଗଲ ପ୍ରତି ଲେଖକଙ୍କର ପ୍ରବଳ ଦୁର୍ବଳତା ରସସିକ୍ତ 'ଶିକାର ସାହିତ୍ୟ' ସୃଷ୍ଟି କରିବାରେ ମଦଦ୍ ଯୋଗାଇଛି ।

ଶିକାର କାହାଣୀ ହିଁ ସାହିତ୍ୟର ଏକ ମନୋରଞ୍ଜନ ଧର୍ମୀ ରସସିକ୍ତ ଅଙ୍ଗ । ସାବଲୀଳ ଓ ବୋଧଗମ୍ୟ ଭାଷା ମାଧ୍ୟମରେ ନିଜର ଅନୁଭୂତିକୁ ରଙ୍ଗ ଦେଇ ରୂପାୟିତ କରି ଶିକାର ସାହିତ୍ୟ ସୃଷ୍ଟି କରିବାରେ ଲେଖକଙ୍କର ଉଦ୍ୟମ ତରୁଣ ଶିକାରୀମାନଙ୍କୁ ଏଭଳି ସାହିତ୍ୟ ସୃଷ୍ଟି କରିବା ଦିଗରେ ଯଥେଷ୍ଟ ପ୍ରେରଣା ଯୋଗାଇବ ନିଶ୍ଚୟ। ଓଡ଼ିଆ ସାହିତ୍ୟରେ ବିଶେଷ ଭାବେ ଅଭାବ ଅନୁଭୂତ ହେଉଥିବା ଏହି ଦିଗଟି ପ୍ରତି ଲେଖକଙ୍କର ଆନ୍ତରିକତା ପ୍ରଶଂସନୀୟ ।

ଆଦିବାସୀ ସଭ୍ୟତା, ସଂସ୍କୃତି ଓ ସାମାଜିକତାର ପାଣି ପବନରେ ଉପନ୍ୟାସଟିର ଅଙ୍ଗସୌଷ୍ଠବ ରସାଣିତ। ବନବାସୀ ଲୋକକଥା, ଧର୍ମୀୟ ଧାରା, ପରମ୍ପରା ଓ ବିଭିନ୍ନ ପ୍ରଥା ସମ୍ବନ୍ଧରେ ଏଥିରୁ ଅନେକ କଥା ଜାଣିହୁଏ । ଆଦିବାସୀମାନଙ୍କର ଜୀବନ ଯାପନ ପ୍ରଣାଳୀ, ବିଭିନ୍ନ ବଣ ପାହାଡ଼ର ଇତିହାସ ଓ ଭୂଗୋଳ ବିଷୟରେ ବହୁ କଥା ଏଥିରୁ ମଧ୍ୟ ଜଣାପଡ଼େ । ବିଶେଷ କରି ପଶ୍ଚିମ ଓଡ଼ିଶାର ବିଭିନ୍ନ ପର୍ବପର୍ବାଣୀ ଓ ଧର୍ମ ବିଶ୍ୱାସର ଚେତନାରେ ଆଲୋକିତ ଏହି ଭିନ୍ନଧର୍ମୀ ଉପନ୍ୟାସଟି ପାଠକଙ୍କୁ ଆମୋଦିତ କରିଥାଏ ।

ସରଳ, ନିଷ୍ପାପ ଓ ଧର୍ମ ବିଶ୍ୱାସୀ ବଣ ଜଙ୍ଗଲର ଆଦିବାସୀଙ୍କ ପ୍ରତି ଲେଖକଙ୍କର ସମବେଦନା ଓ ଦୟାଭାବ ପୁସ୍ତକଟିରେ ଚମତ୍କାର ଭାବେ ପ୍ରତିଫଳିତ ହୋଇଛି । ବନଦେଶ ପ୍ରତି ଲେଖକଙ୍କର ଦୁର୍ବାର ଆକର୍ଷଣ ତାଙ୍କୁ ଏକ ଦରଦୀ ଶିକାରୀ ଭାବେ ଗଢ଼ି ତୋଳିଛି । ଗୋଟିଏ ଭିନ୍ନ ଦୁନିଆଁର ବାସ୍ନାରେ ଜଙ୍ଗଲ ଜୀବନ ଏଠି ବିକଶିତ । ସେଥି ପାଇଁ ତ ସେ କହନ୍ତି, "ବକୁଳ ବନ ଭିତରୁ ଯେ କୋଇଲିର କୁହୁ ନ ଶୁଣି ଉଲ୍ଲସିତ ନ ହୋଇଛି, ତାଳମାଳ ଭିତରୁ କୁମ୍ଭାଟୁଆ ସ୍ୱର ଯେ ଉପଲବ୍ଧି ନ କରିଛି କିମ୍ବା ଘଞ୍ଚ ଅରଣ୍ୟରେ ଯେ ମୟୂରର ମଧୁର ଡାକ ଉପଭୋଗ କରିନାହିଁ ବା ଦୁର୍ଗମ ଗିରିପଥରେ ଯେ ବାଘ ହେଣ୍ଟାଳ ବା ହାତୀର ବିଗ୍ବ୍ୟଲ୍ ବୋବାଳି ଶୁଣିନାହିଁ, ପ୍ରଭାତର ଅରୁଣିମା ବା ଅସ୍ତାଚଳର ଆଦିତ୍ୟ ବେଶ ଚିତ୍ତ ପୂରାଇ ନ ଦେଖିଛି, ଜୀବନ ତା'ର ପୂର୍ଣ୍ଣତାପ୍ରାପ୍ତ ନୁହେଁ ।" ଉପନ୍ୟାସଟିରେ ଫୁଟି ଉଠିଥିବା ଏହାହିଁ ଲେଖକଙ୍କର ଜୀବନ ଦର୍ଶନର ଉତ୍ସ ।

ବଣ ଜଙ୍ଗଲର ପଶୁପକ୍ଷୀ ଓ ଜୀବଜାତିର ଗତି ଓ ପ୍ରକୃତି ସମ୍ବନ୍ଧରେ ଅନେକ ତଥ୍ୟ ଏଥିରେ ପ୍ରଦତ୍ତ ହୋଇଥିବାରୁ ଏହା ପଶୁ ପକ୍ଷୀ ପ୍ରିୟ ପାଠକମାନଙ୍କୁ ସ୍ୱତନ୍ତ୍ର ଭାବେ ଆନନ୍ଦ ପ୍ରଦାନ କରିବ ।

**- ବିଶ୍ୱନାଥ ରାଉତ**

◆

ପୁସ୍ତକ ନାମ : ଅରଣ୍ୟ ଅତିଥି

ପ୍ରକାଶକ : ପ୍ରତିଭା ମହାପାତ୍ର,

୧୪୭, ବୁଦ୍ଧେଶ୍ୱରୀ,

ଭୁବନେଶ୍ୱର-୬

ପ୍ରକାଶ କାଳ : ୫.୧.୧୯୯୬

ପୃଷ୍ଠା : ୯୬

ପ୍ରଚ୍ଛଦ : ଅସୀମ ବସୁ

ମୂଲ୍ୟ : ୯୦/-






ଅରଣ୍ୟ ଅତିଥିକୁ ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ଲେଖିକା ନନ୍ଦିନୀ ଶତପଥି ଉନ୍ମୋଚନ କରୁଛନ୍ତି ।

# ଭିନ୍ନ ଭୂମିକା

**- ବିଭୂତି ପଟ୍ଟନାୟକ**

ସାମ୍ପ୍ରତିକ ଓଡ଼ିଆ କଥା ସାହିତ୍ୟରେ ନରନାରୀଙ୍କ ପ୍ରେମ, ପ୍ରତାରଣା ଓ ଜୀବନ ଯନ୍ତ୍ରଣାକୁ ନେଇ କମ୍ ଗଳ୍ପ ଉପନ୍ୟାସ ଲେଖାହୋଇ ନାହିଁ । ଏ ଗ୍ରନ୍ଥର ଲେଖକ ରାଧାମୋହନ ମହାପାତ୍ର ମଧ୍ୟ ଏଥି ପୂର୍ବରୁ ଏଭଳି ମାନବିକ ଚରିତ୍ର ସମ୍ବଳିତ ଉପନ୍ୟାସ ଲେଖି ଯଶ ଅର୍ଜନ କରିଛନ୍ତି। କିନ୍ତୁ ଏ ପୃଥିବୀ କେବଳ ମଣିଷମାନଙ୍କ ଯୋଗୁଁ ଏତେ ସୁନ୍ଦର, ଏତେ ରହସ୍ୟମୟ ନୁହେଁ । ଏ ସମଗ୍ର ବିଶାଳ ଭୂମଣ୍ଡଳରେ ତିନି ଭାଗ ଜଳ, ଏକଭାଗ ମାତ୍ର ସ୍ଥଳଭାଗ । ଏଇ ସ୍ଥଳଭାଗରେ ପରିପୂର୍ଣ୍ଣ ହୋଇ ରହିଛି ଶ୍ୟାମଳ ବନଭୂମି, ସମୁଚ୍ଚ ପାହାଡ଼ ପର୍ବତ, ଧନଧାନ୍ୟଭରା ଶସ୍ୟକ୍ଷେତ; ରୁକ୍ଷ ଧୂସର ମରୁଭୂମି ଆଉ ଦିଗହୀନ ସବୁଜ ପ୍ରାନ୍ତର । ଶସ୍ୟ ଶ୍ୟାମଳ ସମତଳ ପ୍ରାନ୍ତର ଭୂମିରେ ଯେପରି ମଣିଷର ବସବାସ; ଘନ ଅରଣ୍ୟ ମଧ୍ୟରେ ସେଇପରି ନାନା ଜାତିର ପଶୁପକ୍ଷୀଙ୍କ ଆଦିମ ନିବାସ । ଏଇ ଅରଣ୍ୟ ଭୂମିର ରାଜା ଯଦି ସିଂହ, ସେନାପତି ସେହିପରି ବ୍ୟାଘ୍ର। ସମତଳ ଭୂମି ଅଧିବାସୀ ମଣିଷ କ୍ରମଶଃ ନିଜ ବାସଭୂମିର ଭୌଗୋଳିକ ସୀମାରେଖା ପରିବର୍ଦ୍ଧିତ କରିବା ପାଇଁ ଏବଂ ଜଙ୍ଗଲଜାତ ବୃକ୍ଷ ଓ ଅନ୍ୟାନ୍ୟ ପଦାର୍ଥ ଲୁଣ୍ଠନ କରିବା ପାଇଁ ଆରମ୍ଭ କରିଛି ଅରଣ୍ୟ-ସହର, ପଶୁ-ଶିକାର । ଏକଦା ସିଂହ, ବ୍ୟାଘ୍ରାଦି ପ୍ରାଣୀ ହିଂସ୍ର ପଶୁ ଭାବରେ ପରିଗଣିତ ହେଉଥିଲେ । ମଣିଷ ହେଉଥିବା ସେମାନଙ୍କର ସୁସ୍ୱାଦୁ ଆହାର କିନ୍ତୁ ବିଭିନ୍ନ ଆଗ୍ନେୟାସ୍ତ୍ରରେ ସଜ୍ଜିତ ଆଜିର ହିଂସ୍ର ମଣିଷର ପରାକ୍ରମ ପାଖରେ ପଶୁରାଜ, ପଶୁ ସେନାପତି ଆଦି ହୀନବଳ, ପରାଜିତ, ହିଂସ୍ର ମଣିଷର ନିରୀହ ଶିକାର।

ପୃଥିବୀର ପ୍ରାଣ ଜଗତରେ ପଶୁ ଓ ମଣିଷ ଭିତରେ ଯେଉଁ ଲଢ଼େଇ ଚାଲିଛି, ସେଥିରେ ଅରଣ୍ୟ ତାର ଜାଙ୍ଗଲିକ ସୁଷମା ହରାଇବା ସହିତ ପଶୁ ତାର ଅସ୍ତିତ୍ୱ ହରାଇବାରେ ଲାଗିଛନ୍ତି। ବ୍ୟାଘ୍ର ବଂଶ କ୍ରମଶଃ ଲୋପ ପାଇବାକୁ ବସିଛି । ସେଥିପାଇଁ ଲୋଭୀ ଓ ହିଂସ୍ର ମଣିଷର ଦୌରାତ୍ମ୍ୟରୁ ବାଘ ବଂଶକୁ ରକ୍ଷା କରିବା ପାଇଁ ସରକାର ଆରମ୍ଭ କରିଛନ୍ତି ବ୍ୟାଘ୍ର ପ୍ରକଳ୍ପ; ସଂରକ୍ଷିତ ଜଙ୍ଗଲ ଯୋଜନା।

ପ୍ରାଣୀ ଜଗତରେ ଏ ଯେଉଁ ପରିବର୍ତ୍ତନ ଘଟିଯାଉଛି, ତାହା ବହୁ ଲୋକମାନଙ୍କର ଦୃଷ୍ଟି ଏଡ଼ାଇ ଯାଉଛି। ସେଥିପାଇଁ ସାମାଜିକ ମଣିଷକୁ ନେଇ ଅଜସ୍ର ଗଳ୍ପ ଉପନ୍ୟାସ ଲେଖା ହୋଇଥିଲେ ସୁଦ୍ଧା ଆରଣ୍ୟକ ପଶୁମାନଙ୍କୁ ନେଇ ଗଳ୍ପ ଉପନ୍ୟାସ ଲେଖା ହେବା ଦେଖାଯାଇନାହିଁ । ହୁଏତ ଆମର ନଗରବାସୀ ନାଗରିକ ଲେଖକମାନେ ପ୍ରାଣୀଜଗତରେ ଘଟି ଯାଉଥିବା ଏସବୁ ଘଟଣା ସଂପର୍କରେ ସଚେତନ ନୁହନ୍ତି । ଅଥବା ଅରଣ୍ୟର ପଶୁମାନଙ୍କ ସଂପର୍କରେ ସେମାନଙ୍କ କିଛି ଲେଖିଲା ଭଳି ଅଭିଜ୍ଞତା ନାହିଁ। ଓଡ଼ିଆ କଥାକାରମାନଙ୍କ ମଧ୍ୟରେ ଏ ଦୃଷ୍ଟିରୁ ରାଧାମୋହନ ମହାପାତ୍ର ଜଣେ ବ୍ୟତିକ୍ରମ। ମୂଷା, ବିଲେଇ, କୁକୁରଙ୍କ ଭଳି ଗୃହପାଳିତ ପଶୁମାନଙ୍କ ଠାରୁ ଆରମ୍ଭ କରି ବାଘ, ଭାଲୁ ଭଳି ଅରଣ୍ୟ ନିବାସୀ ହିଂସ୍ର ପଶୁମାନଙ୍କ ପର୍ଯ୍ୟନ୍ତ - ସବୁ ଜାତିର ପଶୁମାନଙ୍କ ସଂପର୍କରେ ତାଙ୍କର ଗଭୀର ଜ୍ଞାନ, ପ୍ରତ୍ୟକ୍ଷ ଅନୁଭୂତି । ସେ ଯେପରି ଶିକାର ପାଇଁ ବନ୍ଧୁକ ଚଳେଇ ଜାଣନ୍ତି, ସେଇ ଅନୁଭୂତିକୁ ବାଙ୍ମୟ ରୂପ ଦେବା ପାଇଁ ସେହିପରି ମଧ୍ୟ ସେ କଲମ

ଚଳାଇ ପାରନ୍ତି । ଏ ଗ୍ରନ୍ଥ ପ୍ରକାଶନ ପୂର୍ବରୁ ତାଙ୍କର ଆଉ ଦୁଇଟି ଉପନ୍ୟାସ 'ଜଙ୍ଗଲର ଜମାନବନ୍ଦୀ' ଏବଂ 'ବ୍ୟାଘ୍ରନିନାଦ'ରେ ସେ ବନ୍ୟ ମଣିଷ ଏବଂ ବନବାସୀ ପଶୁମାନଙ୍କ ସଂପର୍କରେ ନିଜର ତିକ୍ତ ମଧୁର ଅନୁଭୂତି ପ୍ରକାଶ କରିଛନ୍ତି । 'ଅରଣ୍ୟ ଅତିଥି' ସେଇ ପର୍ଯ୍ୟାୟର ତାଙ୍କର ତୃତୀୟ ଉପନ୍ୟାସ । ଅନ୍ୟ ଦୁଇଟି ଉପନ୍ୟାସ ତୁଳନାରେ ଏହା ଆକାରରେ ଛୋଟ କିନ୍ତୁ କାହାଣୀ-ବିନ୍ୟାସ ଦୃଷ୍ଟିରୁ ଭାବନାରେ ଖୁବ୍ ଗମ୍ଭୀର ଓ ମର୍ମସ୍ପର୍ଶୀ । ମଣିଷ ଚେତନାକୁ ଉଦ୍ରେକ କରିବାର ଉପାଦାନ ଏଥିରେ ରହିଛି ।

'ଜଙ୍ଗଲର ଜମାନବନ୍ଦୀ' ଓ 'ବ୍ୟାଘ୍ର ନିନାଦ' ପରି 'ଅରଣ୍ୟ ଅତିଥି' ମଧ୍ୟ ଆତ୍ମଜୀବନୀମୂଳକ ଉପନ୍ୟାସ । ଶ୍ରୀ ମହାପାତ୍ରଙ୍କ ଏହି ଅନୁଭୂତିମୂଳକ ଉପନ୍ୟାସର ନାୟିକା ସର୍କସର ଅଭିନେତ୍ରୀ ବାଘୁଣୀ ରଂଜୁ, ପୁଷି ସୁନ୍ଦରୀ ଓ ଆଉ ଏକ ଧବଳ ମୂଷା । ପଶୁର ଜନ୍ମ ପାଇଥିଲେ ମଧ୍ୟ ସେମାନଙ୍କ ଠାରେ ସ୍ନେହ, ପ୍ରେମ, ତ୍ୟାଗ ଭଳି ମାନବିକ ଗୁଣ ପରିପୂର୍ଣ୍ଣ । ମଣିଷ ମଧ୍ୟରେ ଯେପରି ପଶୁତ୍ୱ ଥାଏ, ପଶୁମାନଙ୍କ ଠାରେ ମଧ୍ୟ ଲୁଚି ରହିଥାଏ ସେଇପରି ମାନବିକ ଗୁଣ । ସ୍ନେହ, ଶ୍ରଦ୍ଧା, ସେବା ବଳରେ ପଶୁ ମଧ୍ୟରୁ ସେଇ ମାନବିକ ଗୁଣକୁ ଉଦ୍ରେକ କରାଯାଇପାରେ । ଶ୍ରୀ ମହାପାତ୍ର 'ଅରଣ୍ୟ ଅତିଥି' ଉପନ୍ୟାସରେ ଭିନ୍ନ ଭିନ୍ନ ଆକାର ପ୍ରକାରର ତିନୋଟି ପଶୁଙ୍କ ରୋମାଞ୍ଚକର ଜୀବନ କାହାଣୀ ମଧ୍ୟରେ ଏହି ସତ୍ୟକୁ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଛନ୍ତି ।

ଓଡ଼ିଆ କଥା ସାହିତ୍ୟରେ 'ଅରଣ୍ୟ ଅତିଥି' ଏକ ଭିନ୍ନ ସ୍ୱାଦର ଉପନ୍ୟାସ । ଏ ଉପନ୍ୟାସର ସ୍ୱାଦ ଆସ୍ୱାଦନ ପାଇଁ ପାଠକ ପାଠିକାମାନଙ୍କୁ ମୋର ସାଦର ଆମନ୍ତ୍ରଣ ।

(ତା ୨୩।୧୧।୯୫, ଭୁବନେଶ୍ୱର)



***ପ୍ରଜାତନ୍ତ୍ର ସାପ୍ତାହିକୀ ମାର୍ଚ୍ଚ ୨୪-୩୦, ୧୯୯୬***
***ପଶୁପ୍ରାଣତାର ଏକ ଦରଦୀ ଦସ୍ତାବିଜ୍: ଅରଣ୍ୟ ଅତିଥି***

ସ୍ନେହ ମିଳିଲେ ନିଷ୍ଠୁର ପଶୁ ମଣିଷ ହେଇଯାଏ; ଆଉ ମଣିଷ ଆତ୍ମସୁଖ ପାଇଁ ପଶୁ ପାଲଟି ଯାଏ, ବର୍ବର ବନିଯାଏ; ସ୍ନେହାମୃତ ଭଳି ସ୍ୱର୍ଗୀୟ ଚିଜଠୁଁ ବଡ ଚିଜ ଆଉ କ'ଣ ଅଛି ସଂସାରରେ ?"

ସ୍ନେହ, ମମତା ଓ ସେବା ବଳରେ ବିଶାଳ ଅରଣ୍ୟରେ ଖେଳି ବୁଲୁଥିବା ହିଂସ୍ର ପଶୁର ହୃଦୟ ମଧ୍ୟ ମାନବିକ ଗୁଣରେ ପରିପୂର୍ଣ୍ଣ ହୋଇଉଠେ । ମଣିଷ ହୃଦୟରେ ଯେପରି ପଶୁତ୍ୱ ଲୁଚି ରହିଥାଏ, ସେହିପରି ପଶୁ ହୃଦୟରେ ମଧ୍ୟ ମାନବିକତା ରହିଥାଏ । ସମୟ ଓ ସୁଯୋଗ କ୍ରମେ ଏସବୁର ପରିପ୍ରକାଶ ଘଟେ । ପଶୁ ହୃଦୟ କିପରି ମାନବୋଉର ଚେତନାରେ ବିକଶିତ ହୋଇଉଠେ- ଏହାର ଜ୍ୱଳନ୍ତ ଉଦାହରଣ ଲେଖକ ଶ୍ରୀ ରାଧାମୋହନ ମହାପାତ୍ରଙ୍କ 'ଅରଣ୍ୟ ଅତିଥି' ପୁସ୍ତକରେ ପ୍ରକଟିତ ହୋଇଛି ।

ଅରଣ୍ୟର ହିଂସ୍ର ପଶୁମାନଙ୍କ ମନସ୍ତତ୍ତ୍ୱ ଅନୁଶୀଳନ କରିବାରେ ସିଦ୍ଧହସ୍ତ ଶ୍ରୀ ମହାପାତ୍ର ତାଙ୍କର ପୂର୍ବ ପ୍ରକାଶିତ ଦୁଇଟି ପୁସ୍ତକ 'ଜଙ୍ଗଲର ଜମାନବନ୍ଦୀ' ଓ 'ବ୍ୟାଘ୍ର ନିନାଦ'ରେ ଯେଉଁଳି ଭାବରେ ନିଜର ଅନୁଭୂତିକୁ ପୁଞ୍ଜି କରି ପଶୁ ମନସ୍ତତ୍ତ୍ୱ ବାଖ୍ୟା କରିଛନ୍ତି, ସେହିଭଳି ଭାବରେ ମଧ୍ୟ ସେ ତାଙ୍କର ସଦ୍ୟ ପ୍ରକାଶିତ 'ଅରଣ୍ୟ ଅତିଥି' ଉପନ୍ୟାସରେ ସର୍କସ ପାଳିତ ଓ ଗୃହପାଳିତ ପଶୁମାନଙ୍କ ଜୀବନ କାହାଣୀକୁ ମଧ୍ୟ ରସାଳ ଭାବରେ ବର୍ଣ୍ଣନା କରିଛନ୍ତି ।

'ଅରଣ୍ୟ ଅତିଥି' ଏକ ଆତ୍ମଜୀବନୀ ମୂଳକ ଉପନ୍ୟାସ । ପଶୁମାନଙ୍କ ଚରିତ୍ର ବିଶ୍ଳେଷଣ ଆଳରେ ଲେଖକ ତାଙ୍କ ଦୀର୍ଘ ଶିକାରୀ ଜୀବନର ଅଭିଜ୍ଞତାକୁ ସ୍ୱକୀୟ ଭାବ, ଭାଷା ଓ ବ୍ୟଞ୍ଜନା ମାଧ୍ୟମରେ ବର୍ଣ୍ଣନା କରିଛନ୍ତି । ଭାରତ ସର୍କସର ଅଭିନେତ୍ରୀ ବାଘୁଣୀ ରଂଜୁ, ଗୃହପାଳିତ ପୁଷି ସୁନ୍ଦରୀ ଓ ଧବଳ ମୂଷା ହିଁ ଉପନ୍ୟାସଟିର କଥାବସ୍ତୁର ଆଧାର । ପଶୁ ଜନ୍ମ ପାଇଥିଲେ ମଧ୍ୟ ସେମାନଙ୍କଠାରେ ସ୍ନେହ, ପ୍ରେମ, ତ୍ୟାଗ ଭଳି ମାନବିକ ଗୁଣ ପରିପୂର୍ଣ୍ଣ ।

ଭାରତ ସର୍କସର ଉଦ୍‌ଘାଟନ ପର୍ବ ଅବସରରେ ଲେଖକ ଶ୍ରୀ ମହାପାତ୍ର ସର୍କସର ବାଘୁଣୀ ରଞ୍ଜୁ ସହିତ ନିବିଡ଼ ସଂପର୍କରେ ବାନ୍ଧି ହୋଇଯାଇଛନ୍ତି । ରଞ୍ଜୁ ହିଁ ତାଙ୍କ ପାଇଁ ଗୋଟେ ଇତିହାସ-ଗୋଟାଏ ଅଭୁଲା ସ୍ମୃତି- ଏକ ଚିର ସ୍ମରଣୀୟ ଅନୁଭୂତି । ଘଟଣାଚକ୍ରରେ ଲେଖକ ଆମପାଣି ଠାରେ କାର୍ଯ୍ୟରତ ଥିବାବେଳେ ରଞ୍ଜୁକୁ ହିଁ କ୍ଷୀରପାନ କରାଇ ଦୁନିଆର ଆଲୋକ ଦେଖାଇଥିଲେ ଏବଂ ସେତେବେଳେ ଏହି ବାଘଛୁଆଟି ଭାରତ ସର୍କସ ପାଇଁ ପରବର୍ତ୍ତୀ କାଳରେ ଏକ ବିଶେଷ ଆକର୍ଷଣ ହୋଇପାରିଥିଲା । ବାସ୍ତବରେ ବାଘୁଣୀ ରଞ୍ଜୁର ଇତିହାସ ସହିତ ଭାରତ ସର୍କସର ମାଲିକ ମିଃ ସି.ବାଙ୍ଗରପ୍ପାଙ୍କର ପତ୍ନୀ ବିଚ୍ଛେଦର ବିଧୁରା ଅଭିବ୍ୟକ୍ତି ଓ ଲେଖକ ଶ୍ରୀ ମହାପାତ୍ରଙ୍କର ପଶୁପ୍ରାଣତାର ଏକ ସରଳ ତଥା ସକରୁଣ

ଆଲେଖ୍ୟର ପୃଷ୍ଠଭୂମି ଜଡିତ । ରଞ୍ଜୁର ଜୀବନ କାହାଣୀ ବର୍ଣ୍ଣନାର ତାଳେ ତାଳେ ଲେଖକ ସର୍କସ ମାଲିକଙ୍କର ପତ୍ନୀ-ବିରହ ବିଧୂରିତ ମର୍ମସ୍ପର୍ଶୀ କାହାଣୀର ଅବତାରଣା କରି ଉପନ୍ୟାସଟିର କଥାବସ୍ତୁକୁ ଖୁବ୍ ସହଜ କରିପାରିଛନ୍ତି । ପ୍ରସଙ୍ଗ ଆଳରେ ଲେଖକ ମଧ୍ୟ କୁକୁରୀର ସ୍ତନ୍ୟପାନ କରି ପାଳିତ ମୃଗଶିଶୁ କିଭଳି ଜୀବନଧାରଣ କରିବାରେ ସମର୍ଥ ହୋଇପାରିଥିଲା, ତାହା ନିଜ ଅନୁଭୂତିରୁ ବର୍ଣ୍ଣନା କରିଛନ୍ତି । ପଶୁମାନଙ୍କ ଜୀବନ ଧାରଣା ପ୍ରଣାଳୀ ବିଷୟରେ ଏଥିରୁ ଅନେକ କଥା ଜଣାପଡେ ।

ବାଘୁଣୀ ରଞ୍ଜୁ ଲେଖକଙ୍କ ବାସଗୃହରେ ଅପ୍ରତ୍ୟାଶିତ ଭାବେ ପ୍ରବେଶ କରି ଶାବକ ପ୍ରସବ କରିବା ଓ ବାଘୁଣୀର ନିଖୋଜ ଯୋଗୁ ସର୍କସ ମାଲିକଙ୍କ ହଟହଟା ବିଷୟ ଅତି ସୁନ୍ଦର ଭାବେ ଶ୍ରୀ ମହାପାତ୍ରଙ୍କ ଲେଖନୀରେ ଫୁଟି ଉଠୁଛି । ଅବଲୀଳା କ୍ରମେ ଲେଖନୀୟ ଚାତୁରୀରେ ଏହି ଘଟଣାର ଉପସ୍ଥାପନା ବାସ୍ତବରେ ପାଠକ ମନରେ ଉତ୍କଣ୍ଠା ସୃଷ୍ଟି କରିପାରିବ ବୋଲି ମନେହୁଏ ।

ପୁଷି ବିରାଡି ଓ ଧଳା ମୂଷା ଉପାଖ୍ୟାନ ଖୁବ୍ ଚିତ୍ତାକର୍ଷଣୀୟ ଭାବେ ପୁସ୍ତକରେ ବର୍ଣ୍ଣିତ ହୋଇଛି । ବିରାଡ଼ି ଓ ମୂଷା- ଦୁହେଁ ଖାଦକ ଓ ଖାଦ୍ୟ ହେଲେ ହେଁ ସେମାନଙ୍କ ମଧ୍ୟରେ ଅପୂର୍ବ ସ୍ନେହ ମମତାର ନିଦର୍ଶନ ଲେଖକଙ୍କ ହୃଦୟରେ ଗଭୀର ରେଖାପାତ କରିଛି- ଦୁହିଁଙ୍କର ବନ୍ଧୁତ୍ୱପୂର୍ଣ୍ଣ ସହାବସ୍ଥାନ ଲେଖନୀୟ ବର୍ଣ୍ଣନାରେ ବାସ୍ତବମୁଖୀ ତଥା ପ୍ରାଣବନ୍ତ ହୋଇଉଠିଛି । ନାଗସାପ କବଳରୁ ମୂଷାକୁ ଉଦ୍ଧାର କରିବାକୁ ଯାଇ ବିରାଡି ସାପ ସହିତ ବୀରତ୍ୱପୂର୍ଣ୍ଣ ଲଢେଇରେ ଶହୀଦ୍ ହୋଇଯାଇଛି- ଏହା ହିଁ ଚରମ ବାସ୍ତବତା । ଏଭଳି ବିରଳ ବନ୍ଧୁତ୍ୱର ନିଦର୍ଶନ ମଣିଷ ସମାଜ ପାଇଁ ଏକ ଉଦାହରଣ ହୋଇ ରହିଯାଇଛି । ସ୍ମୃତିର ଅତଳ ଗର୍ଭରୁ ଅନୁଭୂତିକୁ ଛାଣିଆଣି ଲେଖକ ଏହି ଉପାଖ୍ୟାନ ମାଧ୍ୟମରେ ପାଠକ ହୃଦୟରେ ଦରଦ ସୃଷ୍ଟି କରିବା ପାଇଁ ଯେଉଁ ଅଭିନବ ପ୍ରୟାସ କରିଛନ୍ତି, ତାହା ବାସ୍ତବରେ ପ୍ରଣିଧାନଯୋଗ୍ୟ ଏବଂ ଏ ଦିଗରେ ସେ ଅନେକାଂଶରେ ସଫଳ ହୋଇଥିବା ମନେହୁଏ । ପଶୁ ହୃଦୟର ଭାବ ଓ ଭାଷା ନିଜେ ପଢି ଅନ୍ୟକୁ ପଢାଇବାରେ ଲେଖକ ଏକ ସ୍ୱତନ୍ତ ଭୂମିକା ଗ୍ରହଣ କରିଛନ୍ତି । ପଶୁ ବଚନ ନ ବୁଝିଲେ ମଧ୍ୟ ଭାବ ବୁଝେ- ଏହି ସତ୍ୟକୁ ଲେଖକ ରୂପାୟିତ କରିଛନ୍ତି । ପ୍ରସିଦ୍ଧ ଶିକାରୀ ସାହିତ୍ୟିକ ଜିମ୍ କର୍‌ବେଟଙ୍କ ଭଳି ଶ୍ରୀ ମହାପାତ୍ର ମଧ୍ୟ ପଶୁ ହୃଦୟର ଭାବ ପ୍ରକାଶ କରିବାରେ ଅସାଧାରଣ ପ୍ରତିଭାର ପରିଚୟ ଦେଇଛନ୍ତି ଏହି ଉପନ୍ୟାସଟିରେ । ସେଥିପାଇଁ ତ ଲେଖକ କହିଛନ୍ତି - ଜୀବ ଜଗତର ଜୀବନ ସ୍ରୋତରେ ପ୍ରବାହିତ ସମ୍ପର୍କର ଅଣୁରେଣୁ ମାପି ପରଖିବାକୁ ବୈଜ୍ଞାନିକ ଯନ୍ତ୍ର ଅବା ମନୁଷ୍ୟ ଜ୍ଞାନ ଆଜି ବି ଅସମର୍ଥ । ସୃଷ୍ଟିର ରଚନା ଓ ଇହ ଜଗତର ପ୍ରବହମାନ ଘଟଣା ସର୍ବକାଳରେ ରହସ୍ୟମୟ । ସେଇ ରହସ୍ୟ ବୃତ୍ତରେ ଆମେ କ୍ଷୁଦ୍ରାତିକ୍ଷୁଦ୍ର ଅଣୁସମ ଘୂରିବୁଲୁଛେ ସିନା ।। ମଣିଷ ଓ ପଶୁ ସଂପର୍କରେ ନୂତନ ପରମ୍ପରା ସୃଷ୍ଟି କରିବାରେ ସର୍କସ ମାଲିକ ମିଃ ବାଙ୍ଗରପପ୍ପାଙ୍କର ଭୂମିକାକୁ ଲେଖକ ପ୍ରଶଂସା କରିବାରେ କାର୍ପଣ୍ୟ ପ୍ରକାଶ କରିନାହାନ୍ତି ।

ପଶୁ ସମାଜ ଉପରେ ଆଧାରିତ ଲେଖକଙ୍କର ପୂର୍ବ ପ୍ରକାଶିତ ଉପନ୍ୟାସଗୁଡ଼ିକ ତୁଳନାରେ ଏହି ଉପନ୍ୟାସଟିର କଳେବର ଛୋଟ ହେଲେ ହେଁ ଏଥିରେ କାହାଣୀ ସଂରଚନା, ବିଷୟବସ୍ତୁ ଅବତାରଣା ଚମକପ୍ରଦ ହୋଇପାରିଛି । ଭାଷା ବିନ୍ୟାସ, ଶବ୍ଦ ପ୍ରୟୋଗ ଓ ବଳିଷ୍ଠ ବର୍ଣ୍ଣନା ପରିପାଟୀ ମଧ୍ୟ ମନମୁଗ୍ଧକର ହୋଇପାରିଛି । ଲେଖକୀୟ ଚେତନାର ଇନ୍ଦ୍ରଜାଲରେ ପଶୁ ହୃଦୟର ଭାବ ଓ ଭାଷା ସ୍ପଷ୍ଟ ଭାବେ ଏଥିରେ ଫୁଟି ଉଠିଛି । ଅରଣ୍ୟର ପଶୁମାନଙ୍କ ସହିତ ଗବେଷଣାଧର୍ମୀ ସମ୍ପର୍କ ହିଁ ଲେଖକଙ୍କୁ ପଶୁ-ଦରଦୀ ଭାବେ ଗଢି ତୋଳିଛି । ବାରୁଦ ଓ ବନ୍ଧୁକ ସହିତ ତାଙ୍କର ମିତ୍ରତା ଭାଙ୍ଗିଛି । ବାରୁଦ ଓ ବନ୍ଧୁକ ବଦଳରେ କାଳି ଓ କଲମ ସହିତ ବନ୍ଧୁତା ବଢ଼ିଛି । ଗଢି ଉଠିଛି ବିଶ୍ୱସ୍ତତା । ଜୀବନ ଭିନ୍ନ ଏକ ସ୍ରୋତରେ ପ୍ରବାହିତ ହୋଇଛି ।

ପୁସ୍ତକଟିର ପ୍ରଚ୍ଛଦ ପରିପାଟୀ ବେଶ୍ ଉପଭୋଗ୍ୟ ହେବା ସଂଗେ ସଂଗେ ଉପନ୍ୟାସଟିର ସାରବତ୍ତାର ପୃଷ୍ଠଭୂମିରେ ଲେଖକୀୟ ଚେତନା ପ୍ରତୀକାତ୍ମକ ଭାବେ ଏଥିରେ ପ୍ରତିଫଳିତ । ପଶୁସମାଜ ସହିତ ପ୍ରତ୍ୟକ୍ଷ ଅନୁଭୂତିକୁ ବାଙ୍‌ମୟ ରୂପ ଦେବାରେ ଲେଖକଙ୍କର ପ୍ରଚେଷ୍ଟା ଓଡ଼ିଆ କଥା ସାହିତ୍ୟରେ ଏକ ସ୍ୱତନ୍ତ୍ର ଆସନ ଦାବୀ କରେ କହିଲେ ଅପ୍ରାସଙ୍ଗିକ ହେବ ନାହିଁ । ବିଶିଷ୍ଟ ଔପନ୍ୟାସିକ ଶ୍ରୀ ବିଭୂତି ପଟ୍ଟନାୟକ ଏଥିରେ ମୁଖବନ୍ଧ ଲେଖି ଲେଖକଙ୍କର ଏଭଳି ପ୍ରୟାସକୁ ସ୍ୱାଗତ କରିଛନ୍ତି ।

ପଶୁମାନଙ୍କର ରୋମାଞ୍ଚକର ଜୀବନ କାହାଣୀ ଉପରେ ଆଧାରିତ ଏହି ପୁସ୍ତକଟି ପଶୁପ୍ରିୟ ପାଠକମାନଙ୍କୁ ସ୍ୱତନ୍ତ୍ର ଭାବେ ଆମୋଦିତ କରିବ ବୋଲି ଆଶା କରାଯାଏ । ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ଲେଖକଙ୍କର ଏହି ଅବଦାନ ନିଶ୍ଚିତ ଭାବେ ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ ।

- ବିଶ୍ୱନାଥ ରାଉତ



***ଖୋଲାଦ୍ୱାର ୭/୪/୯୬***
***ଅରଣ୍ୟ ଅତିଥି: ବିରଳ ଏକ ବାସ୍ତବ ଚରିତ୍ରର ଚିତ୍ର***

କଥାରେ ଅଛି ଦି' ଗୋଡିଆଙ୍କୁ ବିଶ୍ୱାସ କରିବ ନାହିଁ । ମଣିଷର ପ୍ରଥମ ଶତ୍ରୁ ହିଁ ମଣିଷ । ମଣିଷଟିଏ ବିଶ୍ୱାସ ଘାତକତା କରିପାରେ ହେଲେ ପଶୁ ନୁହେଁ । ଗୋଟିଏ ବୁଲା କୁକୁରକୁ ଭାତ ମୁଠାଏ ଦେଲେ ସେ ଦୁଆର ମୁହଁରେ ଘର ଜଗି ବସେ, ଟିକିଏ ସ୍ନେହ ମମତା ପାଇଲେ, ଶୁଆଟିଏ ବି ପଞ୍ଜୁରୀର କଷ୍ଟ ଭୁଲି ମା....ବାପା ଡାକେ । ହାତୀଟିଏ ଗୋଡ ଭାଙ୍ଗି ଠିଆହୁଏ ତ ମାଙ୍କଡଟିଏ ନାଚେ । ତେବେ ଆମ୍ଭଠାରେ ମାନବିକତା ଗୁଣର ପରିପ୍ରକାଶ ପାଏ ଯେତେବେଳେ ଆମେ ସେମାନଙ୍କୁ ଆଦର ସ୍ନେହରେ ତୋଳିନେଉ । ଗୋଟିଏ ପଶୁର ଚରିତ୍ରକୁ ନେଇ ଲେଖକ ଔପନ୍ୟାସିକ ଶ୍ରୀ ରାଧାମୋହନ ମହାପାତ୍ରଙ୍କ ଅନ୍ୟ ଏକ ଉପନ୍ୟାସ 'ଅରଣ୍ୟ ଅତିଥି' ଏକ ଉପହାର ମାନବ ସମାଜ ପାଇଁ- ଅରଣ୍ୟ ଅତିଥିର ବାଘରାଣୀ କାହାଣୀ । ଲେଖକ ପଶୁମାନଙ୍କର ଚରିତ୍ର ବିଶ୍ଳେଷଣ କରି ତାଙ୍କ ଦୀର୍ଘ ଜୀବନରେ ବିଭିନ୍ନ ସ୍ଥାନରେ ଶିକାରୀ ଜୀବନର ଅଭିଜ୍ଞତାକୁ ସ୍ୱକୀୟ ଭାବ, ଭାଷା ମାଧ୍ୟମରେ ଏକ ବାଘୁଣୀର ଚରିତ୍ରକୁ ଅତି ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି । ସେଦିନ ଭାରତ ସର୍କସର ଉଦ୍‌ଘାଟନ ପର୍ବ ଅବସରରେ ଲେଖକ ଶ୍ରୀ ରାଧାମୋହନ ମହାପାତ୍ର ସର୍କସରେ ବାଘୁଣୀ 'ରଞ୍ଜୁ' ସହିତ ନିବିଡ଼ ସମ୍ପର୍କରେ ବାନ୍ଧିହୋଇ ପଡ଼ିଛନ୍ତି । ସେ ରଞ୍ଜୁକୁ ଏକ ବାସ୍ତବ ଚରିତ୍ରରେ ଦେଖିଛନ୍ତି । ଘଟଣାଚକ୍ରରେ ଲେଖକ ଆମପାଣି ଠାରେ କାର୍ଯ୍ୟରତ ଥିବା ବେଳେ ରଞ୍ଜୁକୁ ହିଁ କ୍ଷୀରପାନ କରାଇ ଦୁନିଆର ଆଲୋକ ଦେଖାଇଥିଲେ । ଏହି ବାଘଛୁଆଟି ଭାରତ ସର୍କସ ପାଇଁ ପରବର୍ତ୍ତୀ କାଳରେ ଏକ ଆକର୍ଷଣ ଥିଲା । ବାସ୍ତବରେ କହିଲେ ଭାରତ ସର୍କସର ମାଲିକ ମିଃ ସି. ବାଙ୍ଗରପ୍ପାଙ୍କ ପତ୍ନୀ ବିଚ୍ଛେଦର ବିଧୁର ଅଭିବ୍ୟକ୍ତି ଓ ଲେଖକ (ଶ୍ରୀ ମହାପାତ୍ର)ଙ୍କର ପଶୁପ୍ରାଣତାର ଏକ ସରଳ ତଥା ସକରୁଣ ଆଲେଖ୍ୟ ପୃଷ୍ଠଭୂମିରେ ଲିଖିତ। ରଞ୍ଜୁର ଜୀବନ କାହାଣୀ ବର୍ଣ୍ଣନାରେ ଲେଖକ ସର୍କସର ମାଲିକଙ୍କର ପତ୍ନୀ ବିଚ୍ଛେଦର ଅତ୍ୟନ୍ତ ମର୍ମସ୍ପର୍ଶୀ । କାହାଣୀର ଅବତାରଣା କରି ଉପନ୍ୟାସଟିର କଥାବସ୍ତୁକୁ ଖୁବ୍ ସରଳ କରିପାରିଛନ୍ତି । ଅନ୍ୟ ଏକ ସ୍ତରରେ ଲେଖକ ଅତି ସୁନ୍ଦର ଭାବରେ କୁକୁରୀର ସ୍ତନ୍ୟପାନ କରାଇ ପାଳିତ ମୃଗ ଶିଶୁ କିଭଳି ଜୀବନଧାରଣ କରିବାରେ ସମର୍ଥ ହୋଇପାରିଥିଲା ତାହା ମଧ୍ୟ ବାସ୍ତବିକ ଅନୁଭୂତି ମାଧ୍ୟମରେ ବର୍ଣ୍ଣନା କରିଛନ୍ତି ।

ଏମିତି ଦିନେ ଆକସ୍ମିକ ଭାବେ ଲେଖକଙ୍କ ବାସଗୃହକୁ ବାଘୁଣୀ ରଞ୍ଜୁର ଆବିର୍ଭାବ ଏବଂ ଲେଖକଙ୍କ ଗୃହରେ ଶାବକର ଜନ୍ମ, ବାଘୁଣୀର ନିଖୋଜ ଯୋଗୁଁ ସର୍କସ ମାଲିକ ବ୍ୟସ୍ତ ହେବା ବର୍ଣ୍ଣନା କରିବାରେ ଶ୍ରୀ ମହାପାତ୍ର ଦକ୍ଷତା ପ୍ରକାଶ କରିଛନ୍ତି ନାଟକୀୟ ଭଙ୍ଗୀରେ। ଶେଷରେ ଲେଖକ ପୁଷିବିରାଡି ଓ ଧଳା ମୂଷା ଉପାଖ୍ୟାନ ଚିତ୍ତାକର୍ଷଣୀୟ ଭାବେ ବର୍ଣ୍ଣିତ। ବିରାଡ଼ି ମୂଷା ଦୁହେଁ ଦୁହିଁଙ୍କର ଶତ୍ରୁ ହେଲେ

ମଧ୍ୟ ଘଟଣାଚକ୍ରରେ ଗୋଟିଏ ସ୍ନେହ ମମତାରେ ବାନ୍ଧି ହୋଇପଡ଼ିଛନ୍ତି । ଶେଷରେ ନାଗ ସାପ କବଳରୁ ମୂଷାକୁ ରକ୍ଷା କରିବାକୁ ଯାଇ ବିରାଡ଼ି ନାଗସାପର ଚୋଟରେ ମୃତ୍ୟୁବରଣ କରିଛି । କିନ୍ତୁ ସାପ ମଧ୍ୟ ହତ ହୋଇଛି । ବିରାଡ଼ିର ତ୍ୟାଗ ଓ ମୂଷା ସହିତ ବନ୍ଧୁତ୍ୱକୁ ଶ୍ରୀ ମହାପାତ୍ର ଅତି ସୁନ୍ଦର ଭାବରେ ବର୍ଣ୍ଣନା କରନ୍ତି, ଯାହାକି ଆଜିର ସମାଜ ପାଇଁ ଅତି ବିରଳ ।

ଶ୍ରୀ ମହାପାତ୍ର ଜଣେ ଶ୍ରେଷ୍ଠ ଔପନ୍ୟାସିକ ଭାବରେ ପରିଚିତ । ବିଶେଷକରି ପଶୁମାନଙ୍କର ହୃଦୟ କଥାକୁ ନେଇ ରଚନା କରିଛନ୍ତି ବହୁ ଉପନ୍ୟାସ, ସେଗୁଡ଼ିକ ହେଲା ୧) ତମସାତୀର୍ଥ ୨) ସତ୍ୟମ୍ ଏବ ୩) ଜଙ୍ଗଲର ଜମାନବନ୍ଦୀ ୪) ବ୍ୟାଘ୍ର ନିନାଦ ୫) ଅରଣ୍ୟ ଅତିଥିର। 'ଅରଣ୍ୟ ଅତିଥି'ର ଲେଖକୀୟ ବିଷୟ ବସ୍ତୁ ସହିତ ପ୍ରଚ୍ଛଦ  ପରିପାଟୀ ବେଶ୍ ଉପଭୋଗ୍ୟ ହେବା ସଂଗେ ସଂଗେ ଉପନ୍ୟାସଟିର ସାରବତ୍ତାର ପୃଷ୍ଠଭୂମିରେ ଲେଖକୀୟ ଚେତନା ପ୍ରତୀକାତ୍ମକ ଭାବରେ ଏଥିରେ ପ୍ରତିଫଳିତ ହେଲାପରି ମନେହୁଏ । ଲେଖକ ପଶୁମାନଙ୍କ ସହିତ ପ୍ରତ୍ୟେକ ଅନୁଭୂତିକୁ ସ୍ୱଚ୍ଛ ରୂପ ଦେବାରେ ଲେଖକଙ୍କର ପ୍ରଚେଷ୍ଟା ଓଡ଼ିଆ କଥା ସାହିତ୍ୟରେ ଏକ ସ୍ୱତନ୍ତ୍ର ଆସନ ଦାବି କରେ କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଶିଷ୍ଟ ଔପନ୍ୟାସିକ ଶ୍ରୀ ବିଭୂତି ପଟ୍ଟନାୟକ ଏଥିରେ ମୁଖବନ୍ଧ ଲେଖି ଲେଖକଙ୍କର ଏଭଳି ପ୍ରୟାସକୁ ସ୍ୱାଗତ କରିଛନ୍ତି । ପଶୁମାନଙ୍କର ଜୀବନ ଉପରେ ଆଧାରିତ ଏହି ପୁସ୍ତକଟି ପଶୁପ୍ରିୟ ପାଠକମାନଙ୍କ ମନକୁ ଆମୋଦିତ କରିପାରିବ। ପ୍ରାଣୀ ପ୍ରେମୀମାନଙ୍କ ପାଇଁ ଏକ ସାରସ୍ୱତ ଉପହାର। ପଶୁମାନଙ୍କ ଜୀବନକୁ ନେଇ ନୂତନ ଦୁନିଆ ଗଢ଼ୁଥିବା ଶ୍ରୀ ରାଧାମୋହନ ମହାପାତ୍ରଙ୍କୁ ସ୍ୱାଗତ କରୁଛୁ ।

**- ଶେଷଦେବ ମିଶ୍ର**



*ପ୍ରଗତିବାଦୀ ୨୮-୪-୯୬*
*ପ୍ରକାଶ କାଳ: ୧.୧.୧୯୯୬*

ପ୍ରତିବେଶୀ ସାହିତ୍ୟ ତୁଳନାରେ ଓଡ଼ିଆ ଉପନ୍ୟାସ ରଚନା କ୍ରମଶଃ କମି ଆସି ଏକ ଉଦ୍‌ବେଗଜନକ ପରିସ୍ଥିତି ସୃଷ୍ଟି ହୋଇଥିଲା ବେଳେ ଲେଖକ ରାଧାମୋହନ ମହାପାତ୍ର ବିଗତ ପାଞ୍ଚବର୍ଷ ହେଲା ପ୍ରତିବର୍ଷ ଗୋଟିଏ ଲେଖାଏଁ ଉପନ୍ୟାସ ପ୍ରକାଶ କରି ଉପସ୍ଥିତ ସଂକଟକୁ ପ୍ରତିହତ କରିବାକୁ ଯେମିତି ବଦ୍ଧପରିକର ହୋଇ ଉଠିଛନ୍ତି ତାହା ଅଭିନନ୍ଦନୀୟ । 'ଅରଣ୍ୟ ଅତିଥି' ତାଙ୍କର ନବମ ଉପନ୍ୟାସ । ଏଥିପୂର୍ବରୁ ତାଙ୍କର ଛଅଟି ସାମାଜିକ ଓ ଦୁଇଟି ଜଙ୍ଗଲଭିତ୍ତିକ ଉପନ୍ୟାସ ପ୍ରକାଶିତ ହୋଇଛି ।

ଜଙ୍ଗଲ ଓ ତହିଁର ଜୀବଜନ୍ତୁ ସମ୍ବନ୍ଧୀୟ ରଚନା 'ଅରଣ୍ୟ ଅତିଥି' ତାଙ୍କର ତୃତୀୟ ପ୍ରୟାସ । ଲେଖାର ଧାରା ତଥା ବିଷୟବସ୍ତୁର ଧରାବନ୍ଧା ପଥରୁ ଦୂରେଇ ଯାଇ ଏକ ନୂତନ ଦିଗନ୍ତ ଉପରେ ମନୋନିବେଶ କରି ଶ୍ରୀ ମହାପାତ୍ର ସୃଷ୍ଟି କରନ୍ତି ଅନନ୍ୟ ଉପନ୍ୟାସ । ଏଥିରେ ତାଙ୍କର ଅନୁଭୂତି ହିଁ ବିଶେଷ ସହାୟକ ହୋଇଥାଏ ।

ଅଭିଜ୍ଞତା ନଥାଇ କେବଳ କଳ୍ପନାକୁ ପାଥେୟ କରି ରଚନା କଲେ ତାହା ସାମୟିକ ସଫଳତା ଅର୍ଜନ କରିପାରେ, କିନ୍ତୁ ଲେଖକର ସୃଷ୍ଟି କାଳଜୟୀ ହୋଇପାରେନା । ଶ୍ରୀ ମହାପାତ୍ର ତାଙ୍କ ଅରଣ୍ୟ ଅଭିଜ୍ଞତାରୁ ସଂଗ୍ରହ କରିଛନ୍ତି ଅନେକ ମୁକ୍ତା, ଉପାଦେୟ ଉପାଦାନ; 'ଅରଣ୍ୟ ଅତିଥି' ପାଠ କଲାବେଳେ ତାହା ସୁସ୍ପଷ୍ଟ ହୋଇଉଠେ ।

ଓଡ଼ିଆ କଥାକାରମାନଙ୍କ ମଧ୍ୟରେ ରାଧାମୋହନ ମହାପାତ୍ର ଜଣେ ବ୍ୟତିକ୍ରମ । ମୂଷା, ବିଲେଇ, କୁକୁର ପ୍ରଭୃତିଙ୍କ ଭଳି ଗୃହପାଳିତ ପଶୁମାନଙ୍କ ଠାରୁ ଆରମ୍ଭ କରି ସାପ, ବାଘ, ଭାଲୁ, ହାତୀ ଆଦି ଭଳି ଅରଣ୍ୟ ନିବାସୀ ହିଂସ୍ର ପଶୁମାନଙ୍କ ପର୍ଯ୍ୟନ୍ତ ସବୁ ଜାତିର ପଶୁମାନଙ୍କ ସଂପର୍କରେ ତାଙ୍କର ଗଭୀର ଜ୍ଞାନ ଓ ପ୍ରତ୍ୟକ୍ଷ ଅନୁଭୂତି । ସେ ଯେପରି ଶିକାର ପାଇଁ ବନ୍ଧୁକ ଚଳାଇ ଜାଣନ୍ତି, ସେଇ ଅନୁଭୂତିକୁ ବାଙ୍‌ମୟ ରୂପ ଦେବା ଲାଗି ସେହିପରି ମଧ୍ୟ ସେ କଲମ ଚଳାଇ ପାରନ୍ତି । ବନ୍ଧୁକ ଚାଳନା ଓ କଲମ ଚାଳନାରେ ସିଦ୍ଧହସ୍ତ ।

ତାଙ୍କର ଏଇ ସଦ୍ୟ ପ୍ରକାଶିତ ଆତ୍ମଜୀବନୀ ତଥା ଅନୁଭୂତିମୂଳକ ଉପନ୍ୟାସ 'ଅରଣ୍ୟ ଅତିଥି' ଏକ ଅନୁନ୍ନତର ଉତ୍ତରଣ । ଅନ୍ୟ ଦୁଇଟି ଉପନ୍ୟାସ ତୁଳନାରେ (ଜଙ୍ଗଲର ଜମାନବନ୍ଦୀ ଓ ବ୍ୟାଘ୍ର ନିନାଦ) ଏହା ଆକାରରେ ଅବଶ୍ୟ ଛୋଟ । କିନ୍ତୁ କାହାଣୀ ବିନ୍ୟାସ ଓ ଭାବନା ଦୃଷ୍ଟିରୁ ଖୁବ୍ ଗମ୍ଭୀର ଓ ମର୍ମସ୍ପର୍ଶୀ । ମଣିଷର ଚେତନାକୁ ଉଦ୍ରେକ କରିବାର ଉପାଦାନ ଏଥିରେ ରହିଛି । ଆଜିର ମଣିଷ ବିଶ୍ୱାସଘାତକତା କରିପାରୁଛି ସାମାନ୍ୟତମ ସ୍ୱାର୍ଥ ପାଇଁ, ତାର ଆସୁରିକ ପ୍ରବୃତ୍ତି ପ୍ରଖର ଓ ପ୍ରବଳ ହୋଇଉଠୁଛି । ମଣିଷ ହୋଇଯାଉଛି ଦୁର୍ଦ୍ଧାନ୍ତ, ବର୍ବର, କଠୋର ଓ ନିଷ୍ଠୁର ଖାସ୍ ତା'ର ସ୍ୱାର୍ଥଲାଳସା

ପାଇଁ । କିନ୍ତୁ ବଣ୍ୟ ପଶୁଟିଏ ସ୍ନେହ ଆଦର ପାଇ ବନିଯାଉଛି ମଣିଷ, ମାନବିକ ଗୁଣରେ ବିକାଶଲାଭ କରିପାରୁଛି ।

ମଣିଷ ଭିତରେ ଯେମିତି ପାଶବିକତା ଥାଏ ପଶୁ ଭିତରେ ସେପରି ମାନବିକତା ଥାଏ- ଏହି ସତ୍ୟଟିକୁ ଜଣେ ଆବିଷ୍କାରକ ଭଳି ଔପନ୍ୟାସିକ ଶ୍ରୀ ମହାପାତ୍ର ଉପସ୍ଥାପନା କରିଛନ୍ତି । ଘଟଣାଚକ୍ରରେ ଲେଖକ ଗୋଟିଏ ବାଘୁଣୀ ସଂପର୍କରେ ଆସନ୍ତି ।

ସର୍କସର ରାଣୀ ଶ୍ରେଷ୍ଠ ବାଘୁଣୀ 'ରଞ୍ଜୁ' କୌଣସି କାରଣରୁ ସର୍କସ ପ୍ରାଙ୍ଗଣରୁ ଖସି ଆସି ତାଙ୍କ ବାସଗୃହରେ ଆଶ୍ରିତା ହୁଏ ଏବଂ ତାଙ୍କ ନିର୍ଜନ ଗୃହ ବନିଯାଏ ବାଘ ଛୁଆଙ୍କର ଏନ୍ତୁଡିଶାଳ । ଏଇଠୁଁ ଆରମ୍ଭ ହୁଏ ଉପନ୍ୟାସର ଚାଞ୍ଚଲ୍ୟକର କଥାବସ୍ତୁ ।

ଅନେକ ଘଟଣାର ଇନ୍ଦ୍ରଜାଲରେ ଚକ୍ଷୁ ବିସ୍ମୟ ବିସ୍ଫାରିତ ହୋଇଉଠେ ପାଠକର । କେବଳ ମଣିଷର ପଶୁ ସହିତ ସଂପର୍କ ଉପନ୍ୟାସର ଉପଜୀବ୍ୟ ନୁହେଁ, ପଶୁ ପଶୁ ମଧ୍ୟରେ ସ୍ନେହ ସଂପର୍କ ଉପରେ ଅନେକ ଅନୁଭୂତି ଓ ଦୃଷ୍ଟାନ୍ତ ଦେଇଛନ୍ତି ଲେଖକ ଏବଂ ପରିଶେଷରେ କହିଛନ୍ତି: ସ୍ନେହାମୃତ ଭଳି ସ୍ୱର୍ଗୀୟ ଚିଜଠୁଁ ବଡ ଆଉ କ'ଣ ଏ ଇହ ସଂସାରରେ ?

ପୁସ୍ତକଟି ସୁଖପାଠ୍ୟ; ଏକା ନିଶ୍ୱାସରେ ପଢି ଶେଷ କଲାଭଳି ବହିଟିଏ ।



***ସମ୍ବାଦ, ତାରିଖ: ୦୩.୦୨.୧୯୯୭***
***ପଶୁପ୍ରେମର ରୋମାଞ୍ଚକର କାହାଣୀ : ଅରଣ୍ୟ ଅତିଥି***
***ପ୍ରକାଶ କାଳ : ୧.୧. ୧୯୯୬***

କଥାକାର ରାଧାମୋହନ ମହାପାତ୍ର ସେଇଭଳି ଜଣେ ବ୍ୟତିକ୍ରମ ଜୀବନଶିଳ୍ପୀ । 'ଅରଣ୍ୟ ଅତିଥି'ର ଉତ୍ସର୍ଗ ପତ୍ରରେ ହିଁ ଅନୁଭବ କରିହୁଏ- 'ବିଶ୍ୱର କ୍ଷୟିଷ୍ଣୁ ବିରଳ ପଶୁ ଓ ପଶୁମାନଙ୍କ ପ୍ରତି ।'

ମଣିଷ ଯେ କେବଳ ମଣିଷକୁ ଭଲପାଏ ବା ପ୍ରେମ କରେ ଏଭଳି ଧରଣା ଭ୍ରାମତ୍ମକ । ମଣିଷର ଭଲ ପାଇବା ହୁଏତ ଦିନେ ଭୁଲ୍ ବୁଝାମଣା ଭିତରେ କ୍ଷୟ ହୋଇଯାଇପାରେ କିନ୍ତୁ ମଣିଷ ଓ ପଶୁ ଭିତରେ ଯଦି ଥରେ ଏକ ଆତ୍ମିକ ସଂପର୍କ ଗଢ଼ି ଉଠେ, ତେବେ ତାହା ଚିରଂଞ୍ଜୀବୀ ହୋଇ ରହିଯାଏ । ସେଥିରେ ନ ଥାଏ କୌଣସି କାଳିମା, କୌଣସି ପ୍ରବଞ୍ଚନା । କେବେହେଲେ ମଧ୍ୟ ତାହା ଶେଷ ହୁଏ ନାହିଁ । ଏହି ସତ୍ୟର ଚମତ୍କାର ଉପଲବ୍ଧି ହେଉଛି 'ଅରଣ୍ୟ ଅତିଥି ।'

ପଶୁପ୍ରେମକୁ ନେଇ ବିଭିନ୍ନ ଭାଷାରେ ରୋମାଞ୍ଚକର ରଚନା ରହିଥିଲେ ମଧ୍ୟ ଓଡ଼ିଆ ସାହିତ୍ୟରେ ଏଭଳି ରଚନା ଖୁବ୍ କ୍ୱଚିତ୍ । ହୁଏତ ଏ ପୃଥିବୀ ସୁନ୍ଦର ମଣିଷକୁ ନେଇ, ତା'ର ପ୍ରେମ ଭଲ ପାଇବାକୁ ନେଇ, କିନ୍ତୁ ଏହାଠାରୁ ସୁନ୍ଦର ଏ ପୃଥିବୀର ଶ୍ୟାମଳ ନିଘଞ୍ଚ ଅରଣ୍ୟ ପ୍ରକୃତି, ତାର ରହସ୍ୟମୟତା, ତାର ଭୟଙ୍କର ଜୀବଜନ୍ତୁ ଯେଉଁମାନେ ବନଭୂମିର ଅଧିପତି, ସମ୍ରାଟ ହୋଇ ମଧ୍ୟ ବେଳେବେଳେ ମଣିଷର ନିବିଡ଼ ଭଲ ପାଇବା ନିକଟରେ ନିରୀହ ଶାବକଟିଏ ହୋଇଯାଆନ୍ତି ସେମାନେ କିମ୍ବା ମଣିଷର ଅତ୍ୟାଚାର ସେମାନଙ୍କର ପରାକ୍ରମକୁ ନଷ୍ଟ କରିଦିଏ ବେଳେବେଳେ । ବର୍ତ୍ତମାନ ଏଇଭଳି ଏକ ପରିବର୍ତ୍ତନ ଘଟି ଚାଲିଛି ଜଙ୍ଗଲ ରାଜ୍ୟରେ । ପ୍ରାକୃତିକ ଶୋଭା ସଂପଦର ବିନଷ୍ଟ ଘଟିବା ସହିତ ମଣିଷର ସ୍ୱାର୍ଥପରତା ପଶୁକୁଳକୁ ମଧ୍ୟ ଧ୍ୱଂସ କରି ଚାଲିଛି । ସଭ୍ୟ ଶିକ୍ଷିତ ମଣିଷ କିନ୍ତୁ ଜଙ୍ଗଲ ଜୀବନର ଏଇ ଅହେତୁକ ପରିବର୍ତ୍ତନ ପ୍ରତି ଲକ୍ଷ୍ୟ ରଖିନାହିଁ । ହେଲେ ସବୁ ମଣିଷ ତ ସମାନ ନୁହଁନ୍ତି । ଜଣେ ଜଣେ ସ୍ୱପ୍ନଭୁକ ସମ୍ବେଦନଶୀଳ ମଣିଷ ନିଜର ଲେଖକୀୟ ଶୈଳୀରେ ଅନୁଭବ କରନ୍ତି ଜଙ୍ଗଲ ପ୍ରକୃତି ଓ ପଶୁପକ୍ଷୀଙ୍କର ଧ୍ୱଂସ ହେବା ଯନ୍ତ୍ରଣା ଯାହା ସେମାନଙ୍କ ଲେଖନୀର ଆଧାର ପାଲଟିଯାଏ ।

ଅରଣ୍ୟକୁ ଭଲ ପାଆନ୍ତି ଲେଖକ । ଭଲ ପାଆନ୍ତି ତାର ଶାନ୍ତ ନିର୍ଜନତା, ବାଘର ହେଣ୍ଟାଳ, ବଣଫୁଲର ବାସ୍ନା ତାଙ୍କୁ ବିମୋହିତ କରେ । କର୍ମମୟ ଜୀବନ ଭିତରେ ବିଭିନ୍ନ ଅରଣ୍ୟ ସହିତ ତାଙ୍କର ପରିଚୟ, ଜଣେ ପର୍ଯ୍ୟଟକ ହିସାବରେ ନୁହେଁ, ଜଣେ ସମଦୁଃଖୀ ବନ୍ଧୁ ହିସାବରେ ସେ ଅରଣ୍ୟର ଅତିଥି ହୁଅନ୍ତି, କଥା ହୁଅନ୍ତି ନିରବରେ ପଶୁପକ୍ଷୀ ବୃକ୍ଷଲତା ସହିତ ।

ଅରଣ୍ୟକୁ ସେ ଭୁଲିପାରନ୍ତିନି । ଭୁଲିପାରନ୍ତି ନାହିଁ ଅରଣ୍ୟର ଆତିଥ୍ୟକୁ । ସେ ସ୍ମୃତି ସବୁ ରୂପ ନିଏ, 'ବ୍ୟାଘ୍ର ନିନାଦ' ଓ 'ଜଙ୍ଗଲର ଜମାନ ବନ୍ଦୀ' ଭଳି ଦୁଇଟି ଉପନ୍ୟାସନରେ ଏବଂ 'ଅରଣ୍ୟ

ଅତିଥି' ସେଇଭଳି ଏକ ଅନୁଭୂତିମୂଳକ ଉପନ୍ୟାସ ହେଲେ ମଧ୍ୟ ଅଧିକ ହୃଦୟଗ୍ରାହୀ । ଭୁବନେଶ୍ୱର ସହରରେ ସର୍କସ ପ୍ରଦର୍ଶନ ବେଳେ ଏକ ନିଖୋଜ ବାଘ (ଯା'ର ନାଁ ରଞ୍ଜୁରାଣୀ ହୋଇପାରେ) ଏବଂ ତା ସହିତ ପ୍ରେମର ସଂପର୍କକୁ ନେଇ 'ଅରଣ୍ୟ ଅତିଥି' । ମଣିଷର ହୁଏତ ପଶୁତ୍ୱ ଥାଇପାରେ କିନ୍ତୁ ପଶୁ ଭିତରେ ଯେଉଁ ମାନବିକ ଗୁଣର ଉଦ୍ରେକ ହୁଏ ତାହା ଗଭୀର । 'ଅରଣ୍ୟ ଅତିଥି'ରେ ବାଘୁଣୀ ରଞ୍ଜୁ ସହିତ, ପୁଣି ପୁଷି ସୁନ୍ଦରୀ ଓ ଧବଳ ମୂଷାର ସ୍ନେହ ପ୍ରେମ ଓ ତ୍ୟାଗର ଅନୁଭୂତିପୂର୍ଣ୍ଣ କାହାଣୀ ଅତି ଚମତ୍କାର ଭାବେ ରୂପ ପାଇଛି, ଯାହା ପାଠକକୁ ପ୍ରତି ମୁହୂର୍ତ୍ତରେ ରୋମାଞ୍ଚିତ କରୁଥାଏ ।

ଭାଷାର ସାବଲୀଳତା ତଥା ବର୍ଣ୍ଣନାର ଚମତ୍କାରିତା ଭିତରେ 'ଅରଣ୍ୟ ଅତିଥି'କୁ ଏକ ଭିନ୍ନ ସ୍ୱାଦର ଉପନ୍ୟାସ ଭାବରେ ଓଡ଼ିଆ ସାହିତ୍ୟରେ ଏକ ସମ୍ମାନାସ୍ପଦ ସ୍ଥାନ ଦିଆଯାଇପାରେ । ପ୍ରଚ୍ଛଦ ସୁନ୍ଦର, ମୁଦ୍ରଣ ପରିଚ୍ଛନ୍ନ, ତେଣୁ ବହିଟି ପାଠକ ପ୍ରିୟ ହେବାରେ କୌଣସି ସନ୍ଦେହ ନାହିଁ ।

- ଜ୍ୟୋତ୍ସ୍ନା ରାଉତରାୟ



***ଅନୁପମ ଭାରତ, ୧୬-୨-୯୭***
***ଉପନ୍ୟାସ ଅରଣ୍ୟ ଅତିଥି : ପଶୁ ଯେଉଁଠି କଥା କହେ***

ସବୁଠାରୁ ଭୟଙ୍କର ଓ ବଳବାନ୍ ଜୀବ ମଧ୍ୟରେ ବାଘର ସ୍ଥାନ ସବା ଆଗରେ । ତା'ର ହେଣ୍ଟାଳରେ ଘଡଘଡିର ଗର୍ଜନ, ଥରିଉଠେ ଭୁବନ । ଏକାନ୍ତ ଅରଣ୍ୟରେ ସେ ଶବ୍ଦ ମଣିଷ ରକ୍ତରେ ଜମାଟ ବାନ୍ଧେ । ହିଂସ୍ରତାର ପ୍ରତୀକ ଏଇ ବାଘ ମଧ୍ୟ ପରିବେଶ ଓ ପରିସ୍ଥିତି ଚକ୍ରରେ ନମ୍ରତାର ନିଦର୍ଶନ ହୋଇପାରେ । ସ୍ନେହ, ଆଦର, ଶ୍ରଦ୍ଧା ବଳରେ ବାଘ ମଧ୍ୟ ବିଲେଇଠାରୁ ଆହୁରି ସରଳ ସୁଧାର ଓ ଶିଶୁ ପରି ସୁବୋଧ ହୋଇପାରେ- ଏହି କଥାବସ୍ତୁ ଉପରେ ଲିଖିତ ଔପନ୍ୟାସିକ ରାଧାମୋହନ ମହାପାତ୍ରଙ୍କ 'ଅରଣ୍ୟ ଅତିଥି' ପଶୁ ପ୍ରାଣତାର ଏକ ଦରଦୀ ଦସ୍ତାବିଜ ।

ଭାରତ ସର୍କସର ଉଦ୍‌ଘାଟନ ପର୍ବ ଅବସରରେ ଲେଖକ ଶ୍ରୀ ମହାପାତ୍ର ସର୍କସର ରାଣୀ ବାଘୁଣୀ ରଞ୍ଜୁ ସହିତ ନିବିଡ ସଂପର୍କରେ ବାନ୍ଧି ହୋଇ ଯାଆନ୍ତି । ରଞ୍ଜୁ ହିଁ ତାଙ୍କ ପାଇଁ ଗୋଟିଏ ଇତିହାସ-ଗୋଟାଏ ଅଭୁଲା ସ୍ମୃତି-ଏକ ଚିରସ୍ମରଣୀୟ ଅନୁଭୂତି । ଘଟଣା ଚକ୍ରରେ ଲେଖକ ଆମପାଣିଠାରେ କାର୍ଯ୍ୟରତ ଥିବାବେଳେ ଶାବକ ରଞ୍ଜୁକୁ କ୍ଷୀର ପାନ କରାଇ ଦୁନିଆର ଆଲୋକ ଦେଖାଇଥିଲେ । ରଞ୍ଜୁର ଜୀବନ କାହାଣୀ ତାଳେ ତାଳେ ଲେଖକ ସର୍କସ ମାଲିକଙ୍କର ପତ୍ନୀବିରହ ବିଧୁରିତ ମର୍ମସ୍ପର୍ଶୀ କାହାଣୀର ଅବତାରଣା କରି କଥାବସ୍ତୁକୁ ଖୁବ୍ ସରଳ କରିପାରିଛନ୍ତି । ପ୍ରସଙ୍ଗ ଆଗରେ ଲେଖକ ମଧ୍ୟ କୁକୁରୀର ସ୍ତନ୍ୟପାନ କରାଇ ପାଳିତ ମୃଗଶିଶୁ କିଭଳି ଜୀବନ ଧାରଣା କରିବାରେ ସମର୍ଥ ହୋଇପାରିଥିଲେ ତାହା ନିଜ ଅନୁଭୂତିରୁ ବର୍ଣ୍ଣନା କରିଛନ୍ତି । ବାଘୁଣୀ ରଞ୍ଜୁ ଲେଖକଙ୍କ ବାସଗୃହରେ ଅପ୍ରତ୍ୟାଶିତ ଭାବେ ପ୍ରବେଶ କରି ଶାବକ ପ୍ରସବ କରିବା ଓ ବାଘୁଣୀର ନିଖୋଜ ଯୋଗୁଁ ସର୍କସ ମାଲିକଙ୍କ ହଟହଟା ବିଷୟ ଅତି ସୁନ୍ଦର ଭାବରେ ଔପନ୍ୟାସିକଙ୍କ ଲେଖକୀୟ ଚାତୁରୀରେ ଫୁଟି ଉଠିଛି । କେବଳ ବାଘ ନୁହେଁ, ପୁଷି ବିରାଡି ଓ ଧଳା ମୂଷା ଉପାଖ୍ୟାନ ଅତି ଚମତ୍କାର ଭାବେ ପୁସ୍ତକରେ ବର୍ଣ୍ଣିତ । ବିରାଡି ଓ ମୂଷା- ଜଣେ ଖାଦ୍ୟ ଓ ଆଉ ଜଣେ ଖାଦକ ହେଲେ ହେଁ ସେମାନଙ୍କ ମଧ୍ୟରେ ଅପୂର୍ବ ସ୍ନେହ ମମତାର ନିଦର୍ଶନ ଲେଖକଙ୍କ ହୃଦୟରେ ଗଭୀର ରେଖାପାତ କରିଛି । ଦୁହିଁଙ୍କର ବନ୍ଧୁତ୍ୱପୂର୍ଣ୍ଣ ସହାବସ୍ଥାନ ଲେଖକୀୟ ବର୍ଣ୍ଣନାରେ ବାସ୍ତବମୁଖୀ ତଥା ପ୍ରାଣବନ୍ତ ହୋଇ ଉଠିଛି । ପରିଶେଷରେ ଆଜିର ସମାଜରେ ମଣିଷ ଭିତରେ କ୍ରମଶଃ ପଶୁତ୍ୱ ବୃଦ୍ଧି ପାଉଥିବା ବେଳେ ଲେଖକ ପଶୁ ଭିତରେ ମାନବିକତାର ସନ୍ଧାନ ଉନ୍ମୋଚିତ କରିବାରେ ସଫଳ ହୋଇପାରିଛନ୍ତି ତାଙ୍କର ଏହି ଅନନ୍ୟ ଉପନ୍ୟାସ "ଅରଣ୍ୟ ଅତିଥି"ରେ । ଏଥିପୂର୍ବରୁ ତାଙ୍କର ଜଙ୍ଗଲଭିତ୍ତିକ ଆଉ ଦୁଇଟି ଉପନ୍ୟାସ 'ଜଙ୍ଗଲର ଜମାବନ୍ଦୀ', 'ବ୍ୟାଘ୍ର ନିନାଦ' ବେଶ୍ ଭିନ୍ନ ସ୍ୱାଦର ସଫଳ ଉପନ୍ୟାସ ଭାବେ ପ୍ରତିଷ୍ଠା ଲାଭ କରିସାରିଛି । ତାଙ୍କ ରଚିତ ଅନ୍ୟ ପାଞ୍ଚଗୋଟି ଉପନ୍ୟାସ ମଣିଷର କଥାବସ୍ତୁ ଉପରେ ପର୍ଯ୍ୟବସିତ ଥିଲାବେଳେ ତାଙ୍କ ରଚିତ ପଶୁ ସମ୍ବନ୍ଧୀୟ ଜଙ୍ଗଲ ଭିତ୍ତିକ ଉପନ୍ୟାସ ସଂଖ୍ୟା କମିଆସୁଥିବା ବେଳେ ଔପନ୍ୟାସିକ ରାଧାମୋହନ ମହାପାତ୍ରଙ୍କ ନିଷ୍ଠାପର ଉଦ୍ୟମ ଅଭିନନ୍ଦନୀୟ ।

-କବି ସୁବାସ ଚନ୍ଦ୍ର ଧଳ

◆

*ସମୟ, ଏପ୍ରିଲ ୫, ୧୯୯୮*
*ବାଘ ସହିତ ବିରଳ ଅନୁଭୂତିର ଆଲେଖ୍ୟ*
*ପ୍ରକାଶ କାଳ: ୧୯୯୬*

ମଣିଷ ମଣିଷ ପ୍ରେମ ସମ୍ପର୍କ ଅନେକ ସମୟରେ ଭୟାନକ ହୋଇଉଠେ, କିନ୍ତୁ ପଶୁ ସହିତ ପ୍ରେମ ଥରେ ସ୍ଥାପିତ ହେଲେ ତାହା ଚିରସ୍ଥାୟୀ। ନାହିଁ ସେଠି ବିଶ୍ୱାସଘାତକତା, ନାହିଁ ସ୍ୱାର୍ଥପରତା-ଏହି ସତ୍ୟର ଚମତ୍କାର ଉପଲବ୍ଧି ହେଉଛି ଜୀବଜଗତ ଉପରେ ଆଧାରିତ ଉପନ୍ୟାସ 'ଅରଣ୍ୟ ଅତିଥି'।

ସାଂପ୍ରତିକ ଓଡ଼ିଆ କଥା-ସାହିତ୍ୟରେ ନରନାରୀଙ୍କ ପ୍ରେମ, ପ୍ରତାରଣା ଓ ଜୀବନ ଯନ୍ତ୍ରଣାକୁ ନେଇ କମ୍ ଗଳ୍ପ ଉପନ୍ୟାସ ଲେଖା ହୋଇନାହିଁ । କିନ୍ତୁ ଏ ପୃଥିବୀ କେବଳ ମଣିଷମାନଙ୍କ ଯୋଗୁଁ ଏତେ ସୁନ୍ଦର, ରହସ୍ୟମୟ ନୁହେଁ, ପୃଥିବୀର ବିପୁଳ ସୌନ୍ଦର୍ଯ୍ୟ, ରହସ୍ୟ ତିଷ୍ଠି ରହିଛି ପ୍ରକୃତିର କୋଳରେ । କିନ୍ତୁ ସ୍ୱାର୍ଥୀ ମଣିଷର ହିଂସାଚରଣ ଦ୍ୱାରା ପ୍ରକୃତିର କମନୀୟତା ଶତଧା ବିଡମ୍ବିତ । ପ୍ରାକୃତିକ ଶୋଭା ସମ୍ପଦର ଧ୍ୱଂସ ଘଟିବା ସହିତ ମଣିଷର ସ୍ୱାର୍ଥପରତା ପଶୁକୁଳକୁ ମଧ୍ୟ ବିପର୍ଯ୍ୟସ୍ତ କରିଚାଲିଛି । ବିରଳ ପଶୁପକ୍ଷୀ କୀଟ ପତଙ୍ଗ ଓ ସରୀସୃପଙ୍କ ସଂଖ୍ୟା କ୍ରମଶଃ କମି ଆସିଲାଣି ଓ କେତେକ ବିବାକେ ଲୋପ ପାଇଗଲେଣି ଆମ ଧରାପୃଷ୍ଠରୁ । କ୍ଷୟିଷ୍ଣୁ ଜୀବମାନଙ୍କ ମଧ୍ୟରେ ବାଘଜାତି ଅନ୍ୟତମ । ଏକଦା ବଣର ରାଜା 'ବାଘ' ଅଧୁନା ଜଙ୍ଗଲରେ ଆଉ ପ୍ରାୟତଃ ଦିଶୁନାହାନ୍ତି । ଦେଶର ଜାତୀୟ ଉଦ୍ୟାନ, ଅଭୟାରଣ୍ୟରେ ସେମାନଙ୍କ ସର୍ବମୋଟ ସଂଖ୍ୟା ମାତ୍ର ହଜାରେ ଭିତରେ ସୀମିତ । ଜଙ୍ଗଲ ଜୀବନର ଅହେତୁକ ପରିବର୍ତ୍ତନ ପାଇଁ ସଭ୍ୟ ଶିକ୍ଷିତ ମଣିଷର ଦରଦ ନାହିଁ ବା ସଚେତନ ନୁହନ୍ତି । କିନ୍ତୁ ସବୁ ମଣିଷ ତ ସମାନ ନୁହଁନ୍ତି । ରାଧାମୋହନ ବାବୁ ଜଣେ ବ୍ୟତିକ୍ରମ । ଶ୍ରୀ ମହାପାତ୍ରଙ୍କ କଲମ ମୁନରେ, ମୂଷା, ବିଲେଇ, କୁକୁର ଭଳି ଗୃହପାଳିତ ପଶୁମାନଙ୍କ ଠାରୁ ଆରମ୍ଭ କରି ବାଘ, ଭାଲୁ, ହାତୀ ଭଳି ଅରଣ୍ୟନିବାସୀ ହିଂସ୍ର ପଶୁମାନଙ୍କ ପର୍ଯ୍ୟନ୍ତ- ସବୁ ଜାତିର ପଶୁମାନଙ୍କ ସଂପର୍କରେ ତାଙ୍କର ଗଭୀର ଜ୍ଞାନ ଓ ପ୍ରତ୍ୟକ୍ଷ ଅନୁଭୂତି ରହିଛି । ସେ ଯେପରି ଶିକାର ପାଇଁ ବନ୍ଧୁକ ଚଳାଇ ଜାଣନ୍ତି, ସେଇ ଅନୁଭୂତିକୁ ବାଙ୍ମୟ ରୂପ ଦେବା ପାଇଁ ସେହିପରି ମଧ୍ୟ ସେ କଲମ ଚଳାଇ ପାରନ୍ତି । ଏ ଗ୍ରନ୍ଥ 'ଅରଣ୍ୟ ଅତିଥି' ପୂର୍ବରୁ ତାଙ୍କର ଆଉ ଦୁଇଟି ଜଙ୍ଗଲୋପନ୍ୟାସ 'ଜଙ୍ଗଲର ଜମାନବନ୍ଦୀ' ଏବଂ 'ବ୍ୟାଘ୍ର ନିନାଦ'ରେ ସେ ବନ୍ୟମଣିଷ ଏବଂ ବନବାସୀ ପଶୁମାନଙ୍କ ସଂପର୍କରେ ନିଜର ତିକ୍ତ-ମଧୁର ଅନୁଭୂତି ପ୍ରକାଶ କରିଛନ୍ତି । ଜୀବେ ଦୟା ଏକ ସମ୍ବେଦନଶୀଳ ପ୍ରଭାବ ପାଠକମାନଙ୍କ ମନରେ ସୃଷ୍ଟି କରିବାରେ ଲେଖକ ସମର୍ଥ ହୋଇଛନ୍ତି । 'ଅରଣ୍ୟ ଅତିଥି' ସେହି

ପର୍ଯ୍ୟାୟର ତୃତୀୟ ଉପନ୍ୟାସ । ଅନ୍ୟ ଦୁଇଟି ଉପନ୍ୟାସ ତୁଳନାରେ ଏହା ଆକାରରେ ଛୋଟ ହେଲେହେଁ, କିନ୍ତୁ କାହାଣୀ ବିନ୍ୟାସ ଦୃଷ୍ଟିରୁ ଭାବନାରେ ଖୁବ୍ ଗଭୀର ଓ ମର୍ମସ୍ପର୍ଶୀ । ମଣିଷ ଚେତନାକୁ ଉଦ୍ରେକ କରିବାର ଉପାଦାନ ଏଥିରେ ରହିଛି ।

'ଜଙ୍ଗଲର ଜମାନବନ୍ଦୀ' ଓ 'ବ୍ୟାଘ୍ର ନିନାଦ' ପରି 'ଅରଣ୍ୟ ଅତିଥି' ମଧ୍ୟ ଆତ୍ମଜୀବନୀମୂଳକ ଉପନ୍ୟାସ । ଶ୍ରୀ ମହାପାତ୍ରଙ୍କ ଏହି ଅନୁଭୂତିମୂଳକ ଉପନ୍ୟାସର ନାୟିକା ସର୍କସର ଅଭିନେତ୍ରୀ ବାଘୁଣୀ ରଂଜୁ ସୁନ୍ଦରୀ ଓ ଆଉ ଏକ ଧବଳ ମୂଷା । ପଶୁ ଜନ୍ମ ପାଇଥିଲେ ମଧ୍ୟ ସେମାନଙ୍କ ଠାରେ ସ୍ନେହ, ପ୍ରେମ ଓ ତ୍ୟାଗ ଭଳି ମାନବିକ ଗୁଣ ପରିପୂର୍ଣ୍ଣ । ମଣିଷ ମଧ୍ୟରେ ଯେପରି ପଶୁତ୍ୱ ଥାଏ, ପଶୁମାନଙ୍କଠାରେ ମଧ୍ୟ ଲୁଚି ରହିଥାଏ ସେଇପରି ମାନବିକ ଗୁଣ । ସ୍ନେହ, ଶ୍ରଦ୍ଧା, ସେବା ବଳରେ ପଶୁ ମଧ୍ୟରୁ ସେଇ ମାନବିକ ଗୁଣକୁ ଉଦ୍ରେକ କରାଯାଇପାରେ । ଶ୍ରୀ ମହାପାତ୍ର 'ଅରଣ୍ୟ ଅତିଥି' ଉପନ୍ୟାସରେ ଭିନ୍ନ ଭିନ୍ନ ଆକାର ପ୍ରକାରର ତିନୋଟି ପଶୁଙ୍କ ରୋମାଞ୍ଚକର ଜୀବନ କାହାଣୀ ମଧ୍ୟରେ ଏହି ସତ୍ୟକୁ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଛନ୍ତି । ଭାରତ ସର୍କସର ନାୟିକା ବାଘରାଣୀ 'ରଞ୍ଜୁ' ର ଜୀବନ ବୃତ୍ତାନ୍ତ ଓ ତା' ସହିତ ଲେଖକଙ୍କର ସମ୍ପର୍କ ଏକ ଅପୂର୍ବ ନାଟକୀୟତାର ପରାକାଷ୍ଠା ଦେଖିବାକୁ ମିଳେ । ଅସୀମ ବସୁଙ୍କ ପ୍ରଚ୍ଛଦ ଆକର୍ଷଣୀୟ ।

- ବଦ୍ରି ମିଶ୍ର,
ବନ ଉନ୍ନୟନ ନିଗମ, ଓଡ଼ିଶା



ପୁସ୍ତକ ନାମ : ଭୂମିତୃଷ୍ଣା

ପ୍ରକାଶକ : ପ୍ରତିଭା ମହାପାତ୍ର,
୧୪୭, ବୁଦ୍ଧେଶ୍ୱରୀ,
ଭୁବନେଶ୍ୱର-୬

ପ୍ରକାଶ କାଳ : ୧୯୯୮

ପୃଷ୍ଠା : ୪୧୦

ପ୍ରଚ୍ଛଦ : ଅସୀମ ବସୁ

ମୂଲ୍ୟ : ୧୧୦/-






'ଭୂମିତୃଷ୍ଣା'କୁ ସମାଜର ପୂର୍ବତନ ସଂପାଦିକା ତଥା ଲେଖିକା ମନୋରମା ମହାପାତ୍ର ଉନ୍ମୋଚନ କରୁଛନ୍ତି ।

*ସମ୍ବାଦ, ୨୩-୮-୯୮*

ତିନିଶହ କୋଡିଏ ପୃଷ୍ଠାର କଳେବର ବିଶିଷ୍ଟ ଉପନ୍ୟାସ 'ଭୂମିତୃଷ୍ଣା' ମାଟି ପ୍ରତି ମୋହ, ଇତିହାସ, କିମ୍ବଦନ୍ତୀ, ଜଙ୍ଗଲ ଜୀବନ ଆଦି ଉପରେ ପର୍ଯ୍ୟବେସିତ । ଯେଉଁ କାଳଖଂଡରେ ମାଟିନିଷ୍ଠ ସ୍ୱାଭିମାନ ପ୍ରାୟତଃ ବିସ୍ମୃତ, ସେତେବେଳେ ଏହାକୁ ଏକ ଅଂଗୀକାରଧର୍ମୀ ଉପନ୍ୟାସ ବୋଲି କୁହାଯାଇପାରେ । ଉପନ୍ୟାସଟି ଚବିଶ ଗୋଟି ଅଧ୍ୟାୟ ଦେଇ ପ୍ରଲଂବମାନ । ଏହି ଅଧ୍ୟାୟମାନଙ୍କ ମଧ୍ୟରୁ ତାଏରି ନୁହେଁ ତ ଇତିହାସର ଧାରା ବିବରଣୀ, ଅତୀତ ଆଜି ଛବିରେ ସୀମିତ, ଚିଲିକା ରାଣୀର ଉପକାହାଣୀ, ବୀରା ରମଣୀ ବାଂକୀରାଣୀ, ପଥରର ମହାକାବ୍ୟ, ସମର ହୁଂକାର ଓ ଶାଂତିର ଓଁକାର, ମହାବଳ ମହାମେଘବାହନ ଐର ଖାରବେଳ ଓ ଏଇ ମୋ ଦେଶ ଆଦି ଅଧ୍ୟାୟ ଭିତରେ ଦେଶ ମାଟିର ବହୁ ଜ୍ଞାତବ୍ୟ ଓ ଅଜ୍ଞାତ ଇତିହାସ, ସଂସ୍କୃତି ତଥା ଐତିହ୍ୟର ରୋମଂଥନ ବେଶ୍ ହୃଦ୍ୟ । ଅନ୍ୟପକ୍ଷରେ ଅରଣ୍ୟର ଦାନ: ଅମୃତ ସଂତାନ, ପଶୁର ପ୍ରଭୁଭକ୍ତି: ତ୍ୟାଗର ନାହିଁ ଇତି, ମାଟିର କୁହୁକରେ ପବନର ମହକ ଆଦି ଅଧ୍ୟାୟମାନଙ୍କରେ ଜଂଗଲଜୀବନ ଓ ଜୀବ-ପ୍ରତି ଏକ ନୂତନ ଦୃଷ୍ଟିଭଂଗୀ ଦେଇ ଉପସ୍ଥାପିତ ।

ଓଡ଼ିଶାର ଆରଣ୍ୟକ ଶୋଭାଶ୍ରୀ ଓ ତା' ଭିତରେ ଲୁଚିଥିବା ବହୁ କଥା ଓ ଉପକଥାରୁ ମଧ୍ୟ ଔପନ୍ୟାସିକ କାହାଣୀର ନିର୍ଯାସ ସଂଗ୍ରହ କରିଛନ୍ତି । ସେ ସବୁ କ୍ଷେତ୍ରରେ ଗଳ୍ପ-ଦୃଷ୍ଟିଟି ଉନ୍ମୁକ୍ତ ଓ ଗଳ୍ପକଳାଟି ଗତିଶୀଳ । ମୋଟାମୋଟି ଭାବରେ ରଚନାଟି ସଫଳ ।



*ଧରିତ୍ରୀ, ଛୁଟିଦିନ*
*ପୃ-୧୪ ତା ୮ /୧୧ /୯୮*

ଔପନ୍ୟାସିକ ରାଧାମୋହନ ମହାପାତ୍ର ତାଙ୍କ ସଦ୍ୟତମ ଉପନ୍ୟାସଟିକୁ ଉତ୍ସର୍ଗ କରନ୍ତି ଦେଶର ଭୂତ, ବର୍ତ୍ତମାନ ଓ ଭବିଷ୍ୟତର ଭୂମିପୁତ୍ରମାନଙ୍କୁ । ଏ ଉତ୍ସର୍ଗରୁ ଓ ଉପନ୍ୟାସର ନାମକରଣରୁ ଏ କଥା ସ୍ପଷ୍ଟ ଯେ, ବିଷୟବସ୍ତୁ ଭୂମିମୋହକୁ ନେଇ, ମା' ମାଟିର ତୃଷ୍ଣା ଓ ସ୍ୱଦେଶାନୁରାଗକୁ ନେଇ ।

ଉଦ୍ଦେଶ୍ୟ ଯେହେତୁ ମାତୃ ବନ୍ଦନା କାହାଣୀ ଏଠି ଗୌଣ । ଦେଶର ଜୟଗାନରେ ଚରିତ୍ରମାନେ ମଧ୍ୟ ପ୍ରାଥମିକତା ହରାଇଛନ୍ତି । ଏହା ଏ ଉପନ୍ୟାସର ଏକ ଦୁର୍ବଳତା ହୋଇପାରେ କିନ୍ତୁ ଦେଶବନ୍ଦନା ଦିଗଟି ବେଶ୍ ଦୃଢ଼ । ଏକ ଐତିହାସିକର ଅଙ୍ଗୀକାର ନେଇ ଏକ ମାତୃବତ୍ସଳ ସନ୍ତାନର ହୃଦୟ ନେଇ, ଏକ ପ୍ରକୃତି ପ୍ରିୟ ଆଖି ନେଇ ଲେଖକ ଆଙ୍କିଛନ୍ତି ଭାରତର ପୁଣି ଓଡ଼ିଶାର ଚିତ୍ର ।

ଅବସରପ୍ରାପ୍ତ ପୁଲିସ ଅଫିସର ରଂଗରାଜନ ଓ ତାଙ୍କ ପତ୍ନୀ ଅନିନ୍ଦିତାଙ୍କର ଏକମାତ୍ର ପୁତ୍ର ମିତ୍ରଭାନୁ । ବାପା, ମା' ଏକା ଓଡ଼ିଶାରେ । ମିତ୍ରଭାନୁ ଡାକ୍ତର ବିଦେଶରେ । ଚିଠି ଆସେ ପୁଅଠୁ, ସେ ଜଣେ ଶ୍ୱେତାଙ୍ଗ ତରୁଣୀକୁ ବାହା ହୋଇଛି ବିଦେଶ ମାଟିରେ । ହତାଶ୍ ହୁଅନ୍ତି ପିତା ମାତା । ମା'ଙ୍କର ପ୍ରତିକ୍ରିୟା ସ୍ୱାଭାବିକ- "ଯେ କୌଣସି ଜାତିର ହିନ୍ଦୁ ଯୁବତୀଟିଏ ବାହା ହୋଇଥାନ୍ତା ପରା ! ମୋର ଆଦୌ ଆପତ୍ତି ନଥିଲା । କିନ୍ତୁ ଜଣେ ନାମ-ଗୋତ୍ର-ଜାତିହୀନ ଇତାଲୀୟ ବାଳାକୁ ଜୀବନସାଥି କରିନେଲା... ଏକଥା ମୁଁ ଆଦୌ ହଜମ କରିପାରୁନାହିଁ"। କିନ୍ତୁ ପିତାଙ୍କର ତଥାପି ଅଗାଧ ବିଶ୍ୱାସ ମିତ୍ରଭାନୁ ଉପରେ- "ଉତ୍କଳୀୟ ରକ୍ତ ତା' ଶିରା ପ୍ରଶିରାରେ ପ୍ରବାହିତ, ସେ ଆମକୁ, ଏ ମାଟିକୁ ଭୁଲି ସବୁଦିନ ବିଦେଶରେ ବାସ କରି ପାରିବନି ।"

ମିତ୍ରଭାନୁ ଚିଠିରେ କ୍ଷମା ମାଗେ; କିନ୍ତୁ ସବିଶେଷ ବିବରଣୀ ଦିଏ କେଉଁ ପରିସ୍ଥିତିରେ ସେ ବିଦେଶିନୀକୁ ହୃଦୟ ଦେଲା । ଇତାଲୀୟ ଡାଇରୀଟି ପଠାଏ ଯାହା ପଢ଼ି ବାପା ମା' ଆଶ୍ୱସ୍ତ ହୁଅନ୍ତି ପୁଅ ବିଷୟରେ । ପୁଅ ତାଙ୍କର ଅବାଟରେ ଯାଇନି । ରୋମ୍ ସମ୍ପର୍କରେ ବିଦେଶର ସଂସ୍କୃତି, ଚାଲିଚଳଣି ସମ୍ପର୍କରେ ପୁଣି ପୁଅ ଓ ବୋହୂଙ୍କ ସମ୍ପର୍କରେ ଅନେକ କଥା ସାମନାକୁ ଆସେ । ତଥାପି ମନରେ ଉତ୍କଣ୍ଠା ଥାଏ ବୋହୂକୁ ଦେଖିବାକୁ, ନିଜେ ପରଖିବାକୁ ।

ସେ ଉତ୍କଣ୍ଠା ତ ପୂରଣ ହୁଏ ଯେତେବେଳେ ମିତ୍ରଭାନୁ ସପତ୍ନୀ ଓଡ଼ିଶା ଆସିବାର ଖବର ଦିଏ । ଏଥର ଶାଶୁ ଶ୍ୱଶୁରଙ୍କ ବୋହୂ ସହ ପରିଚୟ ହେବାର ସମୟ । ତା' ଅପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ବିଦେଶିନୀ ଏଲିଆନାର ଭାରତ ସହ, ଓଡ଼ିଶା ସହ ପରିଚିତ ହେବାର ବେଳ । ଏୟାରପୋର୍ଟରେ ବାତାନୁକୂଳିତ ଟ୍ୟାକ୍ସି ନ ମିଳିବାଠାରୁ ଆରମ୍ଭ ହୁଏ ସମସ୍ୟା । ଭାରତ ସଂପର୍କରେ ଅନେକ ଆଶଙ୍କା, ଅନେକ ଅସୁବିଧା । କିନ୍ତୁ ଏଲିଆନାର ଏ ମାଟି ପ୍ରେମ ଆରମ୍ଭ ହୁଏ ଦେଶୀ

ପଇଡତର ନିର୍ଭେଜାଲ ଅମୃତରସ ପିଇବା ଠାରୁ । ଭାରତୀୟ ସଂସ୍କୃତି ଓ ଦର୍ଶନର ମହନୀୟତା ସଂପର୍କରେ ସେ ଅନେକ କିଛି ଶୁଣିଥିଲା ମିତ୍ରଭାନୁଠାରୁ । ଶ୍ୱଶୁର ଘରକୁ ଆସିବା ପରେ ଆରମ୍ଭ ହୁଏ ଓଡ଼ିଶା ଦର୍ଶନର ପର୍ବ । ଚିଲିକା, ବାଙ୍କୀ, ଧଉଳି, ଓଡ଼ିଶାର ଗୌରବାବହ ଇତିହାସର ପେଡି ଖୋଲିବାର ସୁଯୋଗ ମିଳେ ମିତ୍ରଭାନୁକୁ, ଲେଖକଙ୍କୁ । ଫେରିବା ସମୟକୁ ଆଉ ଏଲିଆନା ଫେରିବାକୁ ଚାହେନା । ଏ ଭୂମିପୁତ୍ରକୁ ନିଜର କରି ନେଇଥିବା ଏଲିଆନା କେବଳ ସେ ପରିବାରକୁ ନିଜର କେରେନି, ନିଜର କରିନିଏ ଏ ଭୂମିକୁ ।

କାହାଣୀର ନିଶ୍ଚୟ କୌଣସି ନୂତନତା ନାହିଁ । ଏ ଦେଶର ପୁଅ ବିଦେଶରୁ ବୋହୂ ଆଣିଲେ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହେବ ଓ ବୋହୂ ମନକୁ ପାଇଗଲେ ଯେଉଁଭଳି ସନ୍ତୋଷ ମିଳିବ ସେ ପରିସ୍ଥିତି ସବୁ ଏ କାହାଣୀରେ ମଧ୍ୟ ବେଶ୍ ଅଛି । ତେବେ ଔପନ୍ୟାସିକ ମହାପାତ୍ର ଏ କାହାଣୀଟିକୁ ଭଲଭାବରେ କହିବାର ଦକ୍ଷତା ଦେଖାଇଛନ୍ତି ଓ କାହାଣୀର ଗତିଶୀଳତା ଦେଶବନ୍ଦନା ଦ୍ୱାରା ଯେମିତି ବ୍ୟାହତ ନ ହୁଏ, ସେଥିପ୍ରତି ଦୃଷ୍ଟି ଦେଇଛନ୍ତି । ଭାଷାର ବ୍ୟବହାର କିନ୍ତୁ ଠାଏ ଠାଏ କିଭଳି ସାବଲୀଳତା ନଷ୍ଟ କରୁଛି । ଉପନ୍ୟାସର ଆରମ୍ଭରେ ପିତାମାତାଙ୍କର ଉତ୍କଣ୍ଠାକୁ ଭାଷା ଦେବାକୁ ଯାଇ ଯେଭଳି ଆଳଙ୍କାରିକ ଓ କାବ୍ୟିକ ଭାଷା ବ୍ୟବହୃତ ହୋଇଛି ତାହା ଏହାର ଏକ ନଜୀର ଏବଂ ଠାଏ ଠାଏ ଏହାର ଅତ୍ୟଧିକତା ମନେହୁଏ । ତେବେ ଦେଶବନ୍ଦନା ଓ ଭୂମିନିଷ୍ଠତା ଏହା ଅନ୍ତର୍ବାଣୀ ହୋଇଥିବାରୁ ପ୍ରତ୍ୟେକ ଦେଶପ୍ରେମୀ ପୁସ୍ତକଟିକୁ ପାଠ କରିବା ଉଚିତ୍ ।

- ପୁସ୍ତକକୀଟ



***ଅମୃତାୟନ, ଅଗଷ୍ଟ ୧୯୯୯***

ଶ୍ରୀମଦ୍‌ଭଗବତ ଗୀତାର ଏକାଦଶ ଅଧ୍ୟାୟରେ ଶ୍ରୀଭଗବାନ ଅର୍ଜୁନଙ୍କୁ ବିଶ୍ୱରୂପ ଦର୍ଶନ କରାଇଲାଭଳି ସ୍ୱନାମଧନ୍ୟ ପ୍ରବୀଣ ଔପନ୍ୟାସିକ ଶ୍ରୀ ରାଧାମୋହନ ମହାପାତ୍ର ତାଙ୍କର ସଦ୍ୟ ପ୍ରକାଶିତ ଏକାଦଶତମ ଉପନ୍ୟାସ, 'ଭୂମିତୃଷ୍ଣା'ରେ ପାଠକମାନଙ୍କୁ ବିଶ୍ୱର ଏକ ବ୍ୟାପକ ରୂପ ଦର୍ଶନ କରାଇଛନ୍ତି କହିଲେ ବିଶେଷ ଭୁଲ୍ ହେବ ନାହିଁ ।

ଏଥି ପୂର୍ବରୁ ଶ୍ରୀ ମହାପାତ୍ରଙ୍କ ପ୍ରକାଶିତ ଦଶଗୋଟି ଉପନ୍ୟାସ ମଧ୍ୟରୁ କେତେଗୋଟି ମଣିଷକୁ ଉପଜୀବ୍ୟ କରି ରଚିତ ହୋଇଥିଲା ଓ କେତେକର କେନ୍ଦ୍ର ଥିଲେ ପଶୁ, ବିଶେଷତଃ ବାଘ । ମାତ୍ର ଏଥରକ 'ଭୂମିତୃଷ୍ଣା'ରେ ଉଭୟ ମଣିଷ ଓ ବାଘ ନିଜ ନିଜ ଭୂମିକାରେ ଅବତୀର୍ଣ୍ଣ ହୋଇ ପାଠକମାନଙ୍କୁ ଏକ ଅଭିନବ ରୁଚିର ବର୍ଣ୍ଣିଳ ଅଭିଜ୍ଞତା ଓ ଦର୍ଶନ ଦେଇଛନ୍ତି ।

କୌଣସି ନାଟକୀୟ ଉତ୍କଣ୍ଠା ରହିତ ସମାଜର ଏକ ସାଧାରଣ ପାରିବାରିକ ଘଟଣା । ନୀଳଗିରି ରାଜବଂଶର ଦାୟାଦ ଶ୍ରୀ ରଙ୍ଗରାଜନ ମର୍ଦ୍ଦରାଜ ହରିଚନ୍ଦନଙ୍କ ଏକମାତ୍ର ପୁତ୍ର ମିତ୍ରଭାନୁ ଏକ ଫେଲୋସିପ୍ ହାସଲ କରି ଡାକ୍ତରୀ ବିଦ୍ୟା ଅଧ୍ୟୟନ କରିବାକୁ ଯାଏ ସୁଦୂର ଇଟାଲୀ । ଏକ ନାଟକୀୟ ପରିସ୍ଥିତିରେ ଅନ୍ୟ ଏକ ଡାକ୍ତର ଛାତ୍ରୀ ଏଲିଆନା ସହ ପରିଚୟ । ପ୍ରେମ ଓ ବିବାହ । ଇଟାଲୀରେ ରହଣି କାଳ ଭିତରେ ମିତ୍ରଭାନୁ ମାଧ୍ୟମରେ ରୋମ୍‌ର ବିଭିନ୍ନ ସ୍ଥାନ, ଐତିହାସିକ ଘଟଣା, କିମ୍ବଦନ୍ତୀ, ସାମାଜିକ ଚଳଣି ପ୍ରକୃତି ବିଷୟରେ ଏକ ସୁବିସ୍ତୃତ ବର୍ଣ୍ଣନା ଦେଖିବାକୁ ମିଳେ ।

ପିତା ମାତାଙ୍କୁ ଦେଖିବା ଓ ତାଙ୍କ ସହିତ ଏକ ଅବସର ବିତାଇବା ଉଦ୍ଦେଶ୍ୟରେ ମିତ୍ରଭାନୁ ଓ ଏଲିଆନା ଯେଉଁଦିନ ନୀଳଗିରି ରାଜପ୍ରସାଦ ମଧ୍ୟରେ ପାଦଦେଲେ, ଉଆସ ମଧ୍ୟରେ ଅବସ୍ଥିତ ରଙ୍ଗରାଜନଙ୍କ ପାଳିତ ବାଘ 'ବନରାଜ'ର ଏକ ଅବିକଳ ପ୍ରତିକୃତି ଦେଖି ଏଲିଆନା ମୂର୍ଚ୍ଛାଯାଏ । ଏହା ଏକ ଜୀବନ୍ତ ବାଘ ନୁହେଁ- ଏଇ କଥା ବୁଝେଇବା ଲାଗି ନୀଳଗିରି ରାଜପରିବାରର କିଛି ପରିଚୟ, ରଙ୍ଗରାଜନଙ୍କ ଅଧ୍ୟୟନ, ଚାକିରୀ, ବାଘ ଶିଶୁର ପ୍ରାପ୍ତି ଓ ପାଳନ, ବିଭିନ୍ନ ବାଘ ଶିକାରର ବିଶଦ୍ ବର୍ଣ୍ଣନାରେ ଉପନ୍ୟାସର ପୃଷ୍ଠାଗୁଡ଼ିକ ଜୀବନ୍ତ ହୋଇ ଉଠିଛି ।

ନୀଳଗିରିରେ ଅବସ୍ଥାନ କାଳରେ ମିତ୍ରଭାନୁ ଏଲିଆନାକୁ ଖିଚିଂ, ଶିମିଳିପାଳ, ଚିଲିକା, ବାଙ୍କୀ, ପୁରୀ, କୋଣାର୍କ, ଧଉଳିଗିରି, ଖଣ୍ଡିଗିରି, ରାଜାରାଣୀ ମନ୍ଦିର ପ୍ରଭୃତି ଦର୍ଶନୀୟ ସ୍ଥାନ ବୁଲେଇ ନିଏ । ଏହି ପରିଦର୍ଶନ ମାଧ୍ୟମରେ ଓଡ଼ିଶାର କଳା, ସ୍ଥାପତ୍ୟ, ଇତିହାସ, ଜଗନ୍ନାଥ ମହିମା, କିମ୍ବଦନ୍ତୀର ସବିଶେଷ ବର୍ଣ୍ଣନା ମିତ୍ରଭାନୁ ମୁହଁରେ ଏଲିଆନା ପାଖରେ ପରିବେଶିତ ତଥା ଉପସ୍ଥାପିତ । ଏଇସବୁ ବିବରଣୀ ଦ୍ୱାରା ମୁଗ୍ଧା ଏଲିଆନା, ଏକ ଚିକିତ୍ସାଳୟ ସ୍ଥାପନ କରି ଜନସେବାରେ ଜୀବନ କଟେଇବା ଲାଗି ଆଉ ଇଟାଲୀ ନ ଫେରି ସବୁଦିନ ଲାଗି ଓଡ଼ିଶାରେ ରହିଯିବାକୁ ଇଚ୍ଛା ପ୍ରକାଶ କରେ । ତେବେ

ସେମାନେ ଇଟାଲୀ ଫେରିଗଲେ କି ଚିକିତ୍ସାଳୟଟିଏ ସ୍ଥାପନ କରି ଓଡ଼ିଶାରେ ରହିଗଲେ, ସେ କଥା, ପାଠକମାନଙ୍କ କଳ୍ପନା ଉପରେ ଛାଡ଼ିଦେଇ ଶ୍ରୀମହାପାତ୍ର କାହାଣୀଟିକୁ ଏଇଠି ଶେଷ କରିଛନ୍ତି ।

ଏଇ ସଂକ୍ଷିପ୍ତ କାହାଣୀଟିକୁ ଆଧାର କରି ଲେଖକ ଯାହା ସବୁ ପରିବେଷଣ କରିଛନ୍ତି ସେଥିରେ ଅଛି ଇତିହାସ, ଭୂଗୋଳ, କାହାଣୀ, ଗୋଇନ୍ଦା, କିମ୍ବଦନ୍ତୀ, ସଂସ୍କୃତି, ପରିବେଶ, ଧର୍ମ, କୁସଂସ୍କାର, ଦୁର୍ନୀତି, ଜୀବନ ସଂଗ୍ରାମ ଇତ୍ୟାଦିର ସୁବିପୁଳ ସମାହାର । ବୁଦ୍ଧଦେବଙ୍କ ଜନ୍ମସ୍ଥାନ ଭୁବନେଶ୍ୱର ସନ୍ନିକଟ କପିଳପ୍ରସାଦ ଗ୍ରାମରେ ବୋଲି, ଗୋଟିଏ ପରେ ଗୋଟିଏ ଏଗାର ଗୋଟି ଯୁକ୍ତି ଉପସ୍ଥାପନା କରି ଶ୍ରୀ ମହାପାତ୍ର ଜଣେ ଗବେଷକର ପରିଚୟ ପ୍ରଦାନ କରିଛନ୍ତି । ଇତିହାସ ପୃଷ୍ଠାରେ ଅବହେଳିତ ସମ୍ରାଟ ଖାରବେଳେଙ୍କୁ ବିଶ୍ୱର ଶ୍ରେଷ୍ଠ ସମ୍ରାଟ ବୋଲି ଅଭିହିତ କରି ଯଥେଷ୍ଟ ଯୁକ୍ତି ପାଠକ ସମ୍ମୁଖରେ ଉପସ୍ଥାପନା କରିଛନ୍ତି ।

ବର୍ଣ୍ଣନା ପ୍ରସଂଗରେ ଶ୍ରୀମହାପାତ୍ର ଠାଏ ଠାଏ ଯେଭଳି ମୂଲ୍ୟବାନ୍ ତତ୍ତ୍ୱର ଅବତାରଣା କରିଛନ୍ତି ସେଗୁଡ଼ିକ ବିଶେଷ ପ୍ରଣିଧାନଯୋଗ୍ୟ । ଅଳ୍ପ କେତୋଟି ଉଦାହରଣ ଯଥେଷ୍ଟ ହେବ-

"ଅହଂ ହିଁ ଅଶାନ୍ତିର କାରଣ- ମଣିଷ ମଣିଷ ମଧ୍ୟରେ, ପରିବାର ମଧ୍ୟରେ, ଜାତି ଜାତି ମଧ୍ୟରେ, ଦେଶ ଦେଶ ମଧ୍ୟରେ ଅହଂ ହିଁ ବିଦ୍ୱେଷର କାରଣ । ଜଗନ୍ନାଥ ହିଂ ଅଂହ ନିବାରକ ।

"ପୃଥିବୀର ପ୍ରତ୍ୟେକ ମଣିଷ ଜଣେ ଜଣେ ହିନ୍ଦୁ, ମୁସଲମାନ୍ , ଖ୍ରୀଷ୍ଟିଆନ୍, ଜୈନ, ଜିଉ, (ଇହୁଦୀ) ବୌଦ୍ଧାଦି ଧର୍ମ ସବୁ ଏହି ହିନ୍ଦୁଧର୍ମର ଅଂଶ ବିଶେଷ । ଏହାକୁ ସନାତନ ହିନ୍ଦୁଧର୍ମ ବୋଲାଯାଏ, ଅର୍ଥାତ୍ ଅନାଦି କାଳରୁ ଜଗତର ସୃଷ୍ଟି ବେଳରୁ ହିନ୍ଦୁର ଉତ୍ପତ୍ତି । ଏହାର ପ୍ରତିଷ୍ଠାତା କୌଣସି ବ୍ୟକ୍ତି ବିଶେଷ ନୁହଁନ୍ତି । ସ୍ୱୟଂ ସୃଷ୍ଟିକର୍ତ୍ତା ଈଶ୍ୱର ଏହାର ପ୍ରବର୍ତ୍ତକ ।"...

"ମନେରଖ, କୌଣସି ଜାତି କେବେ ହୀନ ନୁହେଁ, କୌଣସି ଜୀବନ ନ୍ୟୂନ ନଗଣ୍ୟ ନୁହେଁ। ପ୍ରତ୍ୟେକ ନିଜ ବୀର୍ଯ୍ୟରେ ବଳବାନ୍, ନିଜ ଗୁଣରେ ଗରୀୟାନ୍ । ସଭିଙ୍କୁ ସମାନ ଚକ୍ଷୁରେ ଦେଖିବା, ଶ୍ରଦ୍ଧା କରିବା ମାନବୀୟ ଧର୍ମ ।"

ବହୁ ବର୍ଣ୍ଣର ପୁଷ୍ପରେ ଗ୍ରଥିତ, ମନୋରମ ମାଳାଟିଏ ଭଳି ବାଣୀ ମନ୍ଦିରର ଶୋଭାବର୍ଦ୍ଧନକ୍ଷମ ସାର୍ଥକ ସୃଷ୍ଟି ୩୨୦ ପୃଷ୍ଠାର "ଭୂମିତୃଷ୍ଣା" ଉପନ୍ୟାସ । ପୁସ୍ତକର ପ୍ରତ୍ୟେକ ଫର୍ଦ୍ଦରେ ଜାତି ସ୍ୱାଭିମାନର ବାସ୍ନା ଭରି ରହିଛି । ଉପନ୍ୟାସର ଅନ୍ୟନାମ ଓଡ଼ିଶା ଆବିଷ୍କାର କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଆ କହି ଗର୍ବ ଅନୁଭବ କରିବା ଭଳି ଏକ ଜାତି ଗଢ଼ିବା ଲେଖକଙ୍କର ଅନ୍ତର୍ନିହିତ ପ୍ରୟାସ ସ୍ପଷ୍ଟ ହୋଇ ଉଠିଛି । ଓଡ଼ିଆ ସାହିତ୍ୟରେ ନିକଟ ଅତୀତରେ ପ୍ରକାଶିତ ସୁବର୍ଣ୍ଣତୁଲ୍ୟ କେତୋଟି ହାତ ଗଣତି ଉପନ୍ୟାସ ତାଲିକାରେ 'ଭୂମିତୃଷ୍ଣା'ର ସ୍ଥାନ ସୁପ୍ରକଟିତ । ଲେଖକ ଶ୍ରୀ ରାଧାମୋହନ ମହାପାତ୍ରଙ୍କୁ ବଧାଇ ଜଣାଇବାରେ ସାମାନ୍ୟତମ କୁଣ୍ଠା ନାହିଁ । ବହିର ପ୍ରଚୁର ପ୍ରଚାର, ଆଦର ଓ ଲୋକପ୍ରିୟତା କାମନା କରୁଛୁଁ ।

- ପବିତ୍ରାନନ୍ଦ ମହାନ୍ତି

◆

***ସମାଜ, ରବିବାର- ୨୦।୧୨।୯୮***

ଔପନ୍ୟାସିକ ରାଧାମୋହନଙ୍କ ଏହା ଏକାଦଶ ଉପନ୍ୟାସ । କେବଳ କଳେବର ଦୃଷ୍ଟିରୁ ଯେ 'ଭୂମିତୃଷ୍ଣା' ସୁବୃହତ୍ ତାହା ନୁହେଁ ବିଷୟବସ୍ତୁ ଉପସ୍ଥାପନାରେ କଥାଶିଳ୍ପୀ କିନ୍ତୁ ଛୁଆଁ ଅଛୁଆଁ ଦିଗକୁ ମଧ୍ୟ ସ୍ପର୍ଶ କରିଛନ୍ତି । ଲେଖକଙ୍କ ବିଷୟବସ୍ତୁରେ ସେଭଳି ନୂତନତା ନଥିଲେ ମଧ୍ୟ ଉତ୍କଳୀୟ ସଂସ୍କୃତି, ଜୀବନଧାରା, ସାମାଜିକ ବ୍ୟବସ୍ଥା ସର୍ବୋପରି ଐତିହାସିକ ତଥ୍ୟକୁ ଘଟଣା ପ୍ରବାହ ସହ ଚରିତ୍ରର ସ୍ପଷ୍ଟ ଚିନ୍ତନ ମାଧ୍ୟମରେ ଚମତ୍କାର ଶୈଳୀରେ ବ୍ୟାଖ୍ୟା କରାଯାଇଛି । ଏହି ଉପନ୍ୟାସର କଥା ଭଙ୍ଗୀରେ ଥିବା ନୂତନତା ପାଠକଙ୍କୁ ଅଭିଭୂତ କରିପାରିବ । ବସ୍ତୁନିଷ୍ଠ ଅତ୍ୟାଧୁନିକ ପାଶ୍ଚାତ୍ୟ ରାଷ୍ଟ୍ରର ପ୍ରାଚୁର୍ଯ୍ୟ ଭାରତୀୟ ଜନଜୀବନରେ ଥିବା ସାମାଜିକ ଓ ପାରିବାରିକ ପବିତ୍ର ବିଧାନ ନିକଟରେ କିଭଳି ତୁଚ୍ଛ ତାହା ଏହି ଉପନ୍ୟାସର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ । ତାହା ପ୍ରତ୍ୟେକ ସ୍ୱାଭିମାନୀ ବ୍ୟକ୍ତିକୁ ସ୍ୱତନ୍ତ୍ର ଭାବେ ଆକର୍ଷିତ କରିବ ।



**'ଭୂମିତୃଷ୍ଣା' ଉପନ୍ୟାସପାଇଁ ୨୦୦୦ ମସିହା ଓଡ଼ିଶା ସାହିତ୍ୟ ଏକାଡେମି ପୁରସ୍କାର ରାଜ୍ୟପାଳଙ୍କଠାରୁ ଗ୍ରହଣ କଲାବେଳେ ରାଧାମୋହନ ମହାପାତ୍ର (ତା.୨୭/୧୧/୨୦୦୫)**

***ଅନୁପମ ଭାରତ, ସୌରଭ, ତା ୦୬.୧୨.୧୯୯୮***
***ଭୂମି ଓ ଭୂମାର ମହକ: 'ଭୂମିତୃଷ୍ଣା'***

ତିନିଶହ କୋଡିଏ ପୃଷ୍ଠାର କଳେବର ବିଶିଷ୍ଟ ଔପନ୍ୟାସିକ ରାଧାମୋହନ ମହାପାତ୍ରଙ୍କ ସଦ୍ୟ ପ୍ରକାଶିତ ଏକାଦଶ ଉପନ୍ୟାସ 'ଭୂମିତୃଷ୍ଣା' ଏକ ଅତ୍ୟୁଜ୍ଜ୍ୱଳ ସଫଳ ସାରସ୍ୱତ ରଚନା, ଯାହାକି ଦେଶମାତୃକାର ଶ୍ରେଷ୍ଠତ୍ୱ ପ୍ରତିପାଦନ କରେ । ଯେଉଁ କାଳଖଣ୍ଡରେ ମାଟିନିଷ୍ଠ ସ୍ୱାଭିମାନ ପ୍ରାୟତଃ ବିସ୍ମୃତ, ସେତେବେଳେ ଏହାକୁ ଏକ ଅଙ୍ଗୀକାରଧର୍ମୀ ଉପନ୍ୟାସ ବୋଲି ନିର୍ଦ୍ୱନ୍ଦ୍ୱରେ କୁହାଯାଇପାରେ ।

ଉପନ୍ୟାସଟି ଚବିଶ ଗୋଟି ଅଧ୍ୟାୟ ଦେଇ ପ୍ରଲମ୍ବମାନ । ସୂଚୀପୃଷ୍ଠାକୁ ଲକ୍ଷ୍ୟ କଲେ ସତେ ଅବା ପୁସ୍ତକଟି ଚବିଶଟି ଗଳ୍ପର ସମାହାର । କିନ୍ତୁ ପ୍ରକୃତରେ ତାହା ନୁହେଁ; ଏଥିରେ ଚବିଶଟି ପରିଚ୍ଛେଦ ସୁନ୍ଦର ଭାବେ ଖଞ୍ଜାଯାଇଛି ଏବଂ ଔପନ୍ୟାସିକ ପ୍ରତି ପ୍ରତିଚ୍ଛେଦର ନାମକରଣ କରିଛନ୍ତି ଯାହାକି ଏକ ନୂତନତା । ଏଣୁ ସୂଚୀପୃଷ୍ଠାକୁ କୋଠରିନାମା ଭାବେ ଅଭିହିତ କରିଛନ୍ତି ସୁଦକ୍ଷ ଲେଖକ । ପ୍ରତ୍ୟେକ କୋଠରି (ପରିଚ୍ଛେଦ) ଉପନ୍ୟାସ-ଇମାରତ୍‌ର ଏକ ଏକ ସୁବିନ୍ୟସ୍ତ କାହାଣୀପୂର୍ଣ୍ଣ କୋଠରି । କ୍ରମାନ୍ୱୟରେ ପର୍ଯ୍ୟବସିତ ଘଟନାରାଜି ଓ ତତ୍‌ସହ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତର ମନୋବିଜ୍ଞାନମୂଳକ ବିଶ୍ଳେଷଣ, ସୁନ୍ଦର ଉପାଖ୍ୟାନ ଓ କାହାଣୀ ମାଧ୍ୟମରେ ପ୍ରାଚ୍ୟର ଉତ୍କର୍ଷ ପ୍ରତିପାଦନ, ଏ ଦେଶର ଗୌରବ ଓ ଗାରିମାକୁ ଉର୍ଦ୍ଧାୟିତ ଓ ଜୀବନ୍ତ କରିପାରିଛି ।

କାହାଣୀ ବିନ୍ୟାସକୁ ଲକ୍ଷ୍ୟକଲେ ଜଣାଯାଏ, ସୁଦୂର ଇଟାଲି ଦେଶର ପାଣି ପବନ ଓ ବିଭବରେ ଗଢା ଅଲିଅଳି ଏଲିଆନାର ଉତ୍କଳୀୟ ରାଜଦାୟାଦ ସହ ପାଣିଗ୍ରହଣ, ଅନିଚ୍ଛା ସତ୍ତ୍ୱେ ଓଡ଼ିଶାକୁ ତାର ଭ୍ରମଣମୂଳକ ଆଗମନ, କଳା, ଭାସ୍କର୍ଯ୍ୟ ସହ ତାର ପ୍ରତ୍ୟକ୍ଷ ଅନୁଭୂତି, ଜନସମାଜ ଓ ବନଜୀବନ, ମନ ହଜିଯାଏ ବନ ଭିତରେ, ଅରଣ୍ୟର ଦାନ ଅମୃତ ସନ୍ତାନ, ପଶୁର ପ୍ରଭକ୍ତି : ତ୍ୟାଗର ନାହିଁ ଇତି ଆଦିର ନିଖୁଣ ବର୍ଣ୍ଣନା ଓ ବିବରଣୀ ତଥା ଉଦ୍‌ବେଗପୂର୍ଣ୍ଣ ଉପସ୍ଥାପନା ପାଠକକୁ ମୋହିତ, ଅଭିଭୂତ କରାଏ । ଉପସଂହାରରେ ନାୟିକା ଏଲିଆନର ସ୍ୱକ୍ଷୋକ୍ତି- 'ଯେଉଁ ଦେଶ ଐତିହ୍ୟପୂର୍ଣ୍ଣ, ଯାହାର କଳା ସଂସ୍କୃତି, ଭାଷା ଓ ଭାସ୍କର୍ଯ୍ୟ ମହିମାମଣ୍ଡିତ, ଯେଉଁଠି ପ୍ରତିଟି ପଥର କଥା କହେ, ପାଷାଣରେ ପଦ୍ମ ଫୁଟେ, ପଶୁ ପକ୍ଷୀମାନେ ସଂଗୀତ ରଚନା କରନ୍ତି, ଯାହାର ବଂଶୀସ୍ୱନ ଓ ବୀଣାର ଝଙ୍କାରରେ ଜଡ଼ ପୁନର୍ଜୀବନ ଲାଭ କରେ, ସଂଜୀବନୀ ମନ୍ତ୍ର ଧ୍ୱନିରେ ମୁର୍ଦ୍ଦାର ମଶାଣିରୁ ଉଠି ପୁନଶ୍ଚ ଜୀଇଁ ଉଠେ, ଯେଉଁଠି ପଶୁ ତା ପ୍ରଭୁ ପାଇଁ ଜୀବନ ବିସର୍ଜନ କରେ, ସେହି ମହାନ୍ ଦେଶ ମୋ ସ୍ୱାମୀଙ୍କର । ସ୍ୱାମୀଙ୍କ ଦେଶ ହିଁ ମୋ ଦେଶ ।" ଏହିଭଳି ଛତ୍ରେ ଛତ୍ରେ ଜାତିପ୍ରୀତିର ସୁଗନ୍ଧିରେ ପୁସ୍ତକରେ ପ୍ରତି ପୃଷ୍ଠା ମହକିତ ।

ଉପନ୍ୟାସର ଅନ୍ୟ ଅଧ୍ୟାୟମାନଙ୍କ ମଧ୍ୟରୁ, ଡାଇରୀ ନୁହେଁ ତ ଇତିହାସର ଧାରା ବିବରଣୀ, ସତୀତ୍ୱର ଶେଷ ଠିକଣା, ନିୟତି ପେଡିରେ ଜୀବନ ଯୋଡି, ଅତୀତ ଆଜି ଛବିରେ ସୀମିତ, ଚିଲିକା

ରାଣୀର ଉପକାହାଣୀ, ବୀରା ରମଣୀ ବାଙ୍କୀ ରାଣୀ, ପଥରର ମହାକାବ୍ୟ, ସମର ହୁଙ୍କାର ଓ ଶାନ୍ତିର ଓଁକାର, ମହାବଳ ମହାମେଘବାହନ ଐର ଖାରବେଳ, ଅଶ୍ରୁକାନ୍ତା, ଏଇ ମୋ ଦେଶ ଆଦି ଅଧ୍ୟାୟ ଭିତରେ ଦେଶ ମାଟିର ବହୁ ଜ୍ଞାତବ୍ୟ ଓ ଅଜ୍ଞାତ ଇତିହାସ, ସଂସ୍କୃତି ତଥା ଐତିହ୍ୟର ରୋମନ୍ଥନ ବେଶ୍ ହୃଦ୍ୟ । ଅନ୍ୟ ପକ୍ଷରେ କାନନ କୁନ୍ତଳା, ତଟିନିମେଖଳା, ଗିରିବହୁଳା ଉତ୍କଳୀୟ ବନଦେଶ ଓ ଓଡ଼ିଶାର ଆରଣ୍ୟକ ଶୋଭାଶ୍ରୀରେ ଲୁଚି ରହିଥିବା ବହୁ କଥା ଓ ଉପକଥାରୁ ଔପନ୍ୟାସିକ କାହାଣୀର ନିର୍ଯ୍ୟାସ ସଂଗ୍ରହ କରିଛନ୍ତି । ଜୀବପ୍ରୀତି ନେଇ ଏକ ନୂତନ ଦୃଷ୍ଟିଭଙ୍ଗୀ ଓ ଏକ ପୋଷାବାଘ ବନରାଜର ହୃଦୟ ବତ୍ତା ଓ ତାର ମାଲିକ ଓ ମଣିଷ ସହିତ ସମ୍ବନ୍ଧ, ଶ୍ରଦ୍ଧା ଓ ଭକ୍ତିର ଆଦାନ ପ୍ରଦାନ ଓ ପରିଶେଷରେ ପଶୁର ଜୀବନ ଦାନ ଏକ ଉଦ୍‌ବେଗପୂର୍ଣ୍ଣ ଘଟନାପ୍ରଭାହରେ କାହାଣୀ ଗତିଶୀଳ ହୋଇପାରିଛି । ଜଙ୍ଗଲ ଜୀବନ ଓ ପଶୁ ଚରିତ୍ରକୁ ଅନୁଧ୍ୟାନ ଓ ଉପଜୀବ୍ୟ କରି ଔପନ୍ୟାସିକ ଶ୍ରୀ ମହାପାତ୍ର ଏଥିପୂର୍ବରୁ ଉପନ୍ୟାସ ଜଙ୍ଗଲର ଜମାନବନ୍ଦୀ, ବ୍ୟାଘ୍ର ନିନାଦ, ଅରଣ୍ୟ ଅତିଥି ରଚନା କରି ଅପୂର୍ବ ସଫଳତା ହାସଲ କରିଛନ୍ତି । ସଦ୍ୟ ପ୍ରକାଶିତ ଉପନ୍ୟାସ 'ଭୂମିତୃଷା' ବନ ଜୀବନ ସହିତ ଅଧୁନା ଜନସମାଜର ଏକ ସମ୍ମିଶ୍ରିତ ସାରସ୍ୱତ ଉପସ୍ଥାପନା ହୋଇପାରିଛି । ଯଦିଚ ଗଳ୍ପକଳାଟି ଗତିଶୀଳ ଓ ଉନ୍ମୁକ୍ତ, ପରୋକ୍ଷରେ ଏହା ଏକ ଦେଶମାତୃକାର ଗାଦ୍ୟିକ ବନ୍ଦନା । ମୋଟା ମୋଟି ଭାବରେ ପରୀକ୍ଷାମୂଳକ ଏହି ରଚନାଟି ସଫଳ । ଔପନ୍ୟାସିକ ରାଧାମୋହନ ମହାପାତ୍ରଙ୍କ ଏହା ଆଉ ଏକ ସାରସ୍ୱତ ଶିରୋପା । ସ୍ୱାଧୀନତାର ପଚାଶ ବର୍ଷ ପୂର୍ତ୍ତି ଉପଲକ୍ଷେ ଭୂମିତୃଷା ଯେ ଦେଶମାତୃକାକୁ ଏକ ସାରସ୍ୱତ ଭେଟି- ମୁକ୍ତ କଣ୍ଠରେ ସ୍ୱୀକାର୍ଯ୍ୟ । ପ୍ରତି ଓଡ଼ିଆ ଉପନ୍ୟାସଟିକୁ ପାଠ କରି ନିଜ ଭିତରେ ଲୁକ୍‌କାୟିତ ଥିବା ସୁପ୍ତ ସ୍ୱାଭିମାନକୁ ଜାଗ୍ରତ କରାଇବା ଉଚିତ୍ ମନେ ହୁଏ- ଲେଖକଙ୍କର ବୋଧହୁଏ ଏହା ନୀରବ ଆବେଦନ । ତାଙ୍କ ଶ୍ରମ, ସାଧନା ଓ ଉଦ୍ଦେଶ୍ୟ ସଫଳ ହେଉ- ଆମର ବିନମ୍ର ଅଭିପ୍ରାୟ ।

**- ଗୌରାଙ୍ଗ ଚରଣ ହୋତା**

ସାମ୍ବାଦିକ ଓ ସମାଜସେବୀ, ଜଗତସିଂହପୁର



***ପ୍ରଜାତନ୍ତ୍ର ସାପ୍ତାହିକୀ***
***ଡିସେମ୍ବର ୨୭, ୧୯୯୮ ରୁ ଜାନୁଆରୀ ୨, ୧୯୯୯***
***ପ୍ରଜ୍ଞା ଓ ଅନୁଭୂତିର ମିଳନ: 'ଭୂମିତୃଷ୍ଣା'***

ଓଡ଼ିଶା ଉପନ୍ୟାସ ସାହିତ୍ୟ ଜଗତରେ ଭିନ୍ନ ନାଁଟିଏ- ରାଧାମୋହନ ମହାପାତ୍ର । ବୈଚିତ୍ର୍ୟମୟ କଥାବସ୍ତୁ, ମନଛୁଆଁ ଉପସ୍ଥାପନା, ସାମାଜିକ ଅଙ୍ଗୀକାରବଦ୍ଧ ଆଭିମୁଖ୍ୟକୁ ନେଇ ତାଙ୍କ ଉପନ୍ୟାସଗୁଡ଼ିକ ବେଶ୍ ପ୍ରଭାବଶାଳୀ । ବନ୍ୟପ୍ରାଣୀ ଓ ଅରଣ୍ୟାନୀକୁ ନେଇ ଉପନ୍ୟାସ ରଚନାରେ ତାଙ୍କ ସିଦ୍ଧି ସୁବିଦିତ । 'ପ୍ରଥମ ପ୍ରଭାତ' ଠାରୁ 'ରକ୍ତର ରଙ୍ଗ' ଯାଏ ତାଙ୍କ ଉପନ୍ୟାସଗୁଡ଼ିକରେ ତାଙ୍କର ଯେଉଁ ସ୍ୱତନ୍ତ୍ର ପରିଚୟ ଦେଇଥିଲା, ତାହାର ଏକ ବଳିଷ୍ଠ ସ୍ୱାକ୍ଷର ବହନ କରିଛି ତାଙ୍କର ସଦ୍ୟ ପ୍ରକାଶିତ ଉପନ୍ୟାସ 'ଭୂମିତୃଷ୍ଣା' । ଉପନ୍ୟାସର ଅନ୍ୟତମ ମୁଖ୍ୟ ଚରିତ୍ର ବିଦେଶିନୀ ଏଲିଆନା ଯେଉଁ ମତ ଦେଇଛନ୍ତି ତାହା ହିଁ ସ୍ୱୀକାର କରିନେବା ଭିତରେ ଲେଖକଙ୍କ ମୁଖ୍ୟ ଲକ୍ଷ୍ୟ ସାଧିତ ହୋଇଛି ଏହି ଉପନ୍ୟାସରେ । "ସ୍ୱାମୀଙ୍କ ଦେଶ ହିଁ ମୋ ଦେଶ, ଇଟାଲୀ ମୋ ଜନ୍ମଭୂମି ହେଲେ ହେଁ ମୋର ପୁନର୍ଜନ୍ମ ହୋଇଛି ଏଇ ପବିତ୍ର ଭୂମିରେ । ଆଜିଠୁଁ ଭାରତ ମୋ ଦେଶ । ଓଡ଼ିଶା ମୋର ତୀର୍ଥସ୍ଥଳ, କର୍ମକ୍ଷେତ୍ର ।" (ପୃ. ୩୨୦)

ସୁଦୂର ଇଟାଲୀରେ ଗବେଷଣା କରୁଥିବା ମିତ୍ରଭାନୁ ନିଜ କର୍ମରେ ସଫଳତା ଲାଭ କଲାପରେ ଇଟାଲୀୟ ଯୁବତୀ ଏଲିଆନାଙ୍କୁ ବିବାହ କରନ୍ତି । ଏହି ବିବାହକୁ ମାଆ ଅନିନ୍ଦିତା ସହଜରେ ଗ୍ରହଣ କରି ନେଇ ନାହାଁନ୍ତି । ପିତା ରଙ୍ଗରାଜନଙ୍କ ପୁତ୍ର ଉପରେ ପ୍ରଗାଢ଼ ଆସ୍ଥା । ଅନିନ୍ଦିତାଙ୍କ ଆଶଙ୍କାକୁ ଠିକ୍ ନୁହେଁ ବୋଲି ମତବ୍ୟକ୍ତ କରନ୍ତି । ଅନିନ୍ଦିତା ଓ ରଙ୍ଗରାଜନଙ୍କ ପରସ୍ପର ଭିନ୍ନ ଦୃଷ୍ଟିଭଙ୍ଗୀକୁ ସମର୍ଥନ କରି କହୁଥିବା କଥୋପ କଥନ ମଧ ଦେଇ ପ୍ରକାଶ ପାଇଛି ପାଶ୍ଚାତ୍ୟ ଜୀବନ, ମୂଲ୍ୟବୋଧ ସଂସ୍କୃତି ମଧରେ ଥିବା ଫରକ୍ ତୁଳନାତ୍ମକ ବିଚାର ଦ୍ୱାରା ସ୍ପଷ୍ଟ ହୋଇଯାଇଛି । ରଙ୍ଗରାଜନଙ୍କ ପାଶ୍ଚାତ୍ୟ ସଭ୍ୟତା ସମ୍ପର୍କୀୟ ବକ୍ତବ୍ୟ, ମିତ୍ରଭାନୁଙ୍କ ପତ୍ର ଓ ଡାଏରୀ ମଧରୁ ପ୍ରାଚ୍ୟ ପାଶ୍ଚାତ୍ୟର ଭଲମନ୍ଦର କାହାଣୀ ପ୍ରକାଶ ପାଇଛି । ଦୁଇ ସଭ୍ୟତାରୁ ସୁଗୁଣତକ ଗ୍ରହଣ କରିନେଲେ ବିଶ୍ୱ ସୁନ୍ଦର, ମଧୁମୟ ହୋଇପାରନ୍ତା ବୋଲି ମତ ପୋଷଣ କରାଯାଇଛି । ଇଟାଲୀର ରାଜଧାନୀ ରୋମ୍, କୋଲାସିଅମ୍‌ରେ ଶେଷ ନରବଳି, ଭେସୁଭିଅସ୍ ଆଗ୍ନେୟଗିରିର ଭୀମରୂପ, ବେସିଫେରା ବନାଞ୍ଚଳ ଆଦି ବିଷୟରେ ଯେଉଁ ବର୍ଣ୍ଣନା ରହିଛି ତାହା ଇଟାଲୀ ଦେଶର ଭୌଗୋଳିକ ରୂପ ଓ ଐତିହାସିକ ବିଭବକୁ ମଧ ସ୍ପଷ୍ଟ କରିଦିଏ । ଏଠି ଚରିତ୍ରକୁ ଭ୍ରମଣକାରୀର ଭୂମିକା ଦେଇ ବେଶ୍ ସୁନ୍ଦର ଭାବେ ଉପନ୍ୟାସର ଘଟଣା ପ୍ରବାହକୁ ଆଗେଇ ନେଇଛନ୍ତି ଔପନ୍ୟାସିକ ଶ୍ରୀ ମହାପାତ୍ର । ଏହି ଘଟଣା ପ୍ରବାହ ମଧରେ ଏଲିଆନା ସହ ମିତ୍ରଭାନୁଙ୍କ ପରିଚୟ, ପ୍ରେମ, ପ୍ରଣୟ ଓ ବିବାହ ମଧ ସ୍ଥାନ ପାଇଛି । ଏ ମଧରେ ମଧ ପ୍ରକାଶ ପାଇଛି ସଂସ୍କୃତି ସମୃଦ୍ଧ ଦେଶ ଭାରତବର୍ଷର ମହତ୍ତ୍ୱ ଓ ଗୁରୁତ୍ୱ ।

ଉପନ୍ୟାସର ଦ୍ୱିତୀୟ ପର୍ଯ୍ୟାୟରେ ଭାରତବର୍ଷର ଜଳବାୟୁ, ପ୍ରାକୃତିକ ସଂପଦ ଓ ଚାଲିଚଳନର ବିସ୍ତୃତ ବର୍ଣ୍ଣନା ରହିଛି । ଉଭୟ ଏଲିଆନା ଓ ମିତ୍ରଭାନୁ ଭାରତବର୍ଷକୁ ଆସିବା ପରେ ଆରମ୍ଭ ହୋଇଛି ଏହି ଦ୍ୱିତୀୟ ପର୍ଯ୍ୟାୟ । ଏଲିଆନା ଦୃଷ୍ଟିରେ ଭାରତବର୍ଷର ଯେଉଁ ମହତ୍ୱ ଔପନ୍ୟାସିକ ପ୍ରଦାନ କରିଛନ୍ତି ତାହା ଏହି ଉପନ୍ୟାସର ଗୁରୁତ୍ୱପୂର୍ଣ୍ଣ ବିଭବ । ଏହି ବିଭବ ମଧ୍ୟରେ ଉତ୍କଳୀୟ ଜନଜୀବନ, ସଂସ୍କୃତି ଓ ସମୃଦ୍ଧ ପରମ୍ପରା ହିଁ ପ୍ରତିପାଦିତ ହୋଇଛି । 'ଚିଲିକାରାଣୀର ଉପକାହାଣୀ', 'ବୀରା ରମଣୀ ବାଙ୍କୀ ରାଣୀ', 'ଧରା ବୈକୁଣ୍ଠ', 'ପଥରର ମହାକାବ୍ୟ', 'ମହାବଳି ମହାମେଘ ବାହାନ ଐର ଖାରବେଳ' ଆଦି ଶୀର୍ଷକରେ ଓଡ଼ିଶାର ମହାନ୍ ଓ ସମୃଦ୍ଧ ଅତୀତ ଓ ସୌନ୍ଦର୍ଯ୍ୟମୟୀ ରୂପଲାବଣ୍ୟ ହିଁ ପ୍ରକାଶିତ । ଏହି ସୌନ୍ଦର୍ଯ୍ୟ ଓ ସାଂସ୍କୃତିକ ବିଶେଷତ୍ୱରେ ପ୍ରଭାବିତ ହୋଇ ଏଲିଆନା ଏଇ ଦେଶ ଭାରତବର୍ଷକୁ ନିଜର ଦେଶ ବୋଲି ଗ୍ରହଣ କରିନେଇଛି ଦ୍ୱିଧାହୀନ ଭାବରେ । ଏଇଠି ଅନିନ୍ଦିତାଙ୍କ ଆଶଙ୍କା ଅମୂଳକ ସାବ୍ୟସ୍ତ ହୋଇଛି ।

ବନ୍ୟ ଓ ବନ୍ୟପ୍ରାଣୀଙ୍କ ସୃଷ୍ଟିର ଚରିତ୍ର ରୂପେ ଗ୍ରହଣ କରି ଏକାଧିକ ଉପନ୍ୟାସ ରଚନା କରିଥିବା ଶ୍ରୀ ମହାପାତ୍ର 'ଭୂମିତୃଷ୍ଣା'ରେ ମଧ୍ୟ ଅରଣ୍ୟାନୀର ସୌନ୍ଦର୍ଯ୍ୟକୁ ଉପସ୍ଥାପିତ କରିବାକୁ ଭୁଲିଯାଇ ନାହାଁନ୍ତି । 'ମନ ହଜିଯାଏ ବନ ଭିତରେ', 'ଅରଣ୍ୟର ଦାନ: ଅମୃତ ସନ୍ତାନ' ଆଦି ଶୀର୍ଷକରେ ଔପନ୍ୟାସିକ ଏ ଦିଗନ୍ତକୁ ସ୍ପର୍ଶ କରିଛନ୍ତି । ଏଥିରେ କୋରାପୁଟ-ମାଲକାନଗିରିର ପାର୍ବତ୍ୟାଞ୍ଚଳର ଶୋଭାସମ୍ପଦ, ଝିଲିରି ପାହାଡ଼ରେ ରଙ୍ଗରାଜନଙ୍କ ଦୁର୍ଲଭ ଅନୁଭୂତି, କୋୟା ଆଦିବାସୀ ସଂପ୍ରଦାୟର ଯୁବକ ମୋଡକାମୀ ମୁକ୍ସାର ଦୁଃଖସୁଖର ଜୀବନ ଓ ଆଦିବାସୀ ଜୀବନଯାପନର ବିଭିନ୍ନ ଦିଗ ଓ ଜୀବନ ଦର୍ଶନ ପ୍ରକାଶ ପାଇଛି ଏହି ଉପନ୍ୟାସରେ । ରଙ୍ଗରାଜନଙ୍କ ପାଳିତ ବାଘ 'ବନରାଜ'ର କ୍ରିୟାକଳାପ ମଧ୍ୟଦେଇ ପଶୁଜୀବନର ବୈଚିତ୍ର୍ୟମୟ ଦିଗ ଓ ପଶୁର ପ୍ରଭୁଭକ୍ତିକୁ ଦେଖାଇ ଦିଆଯାଇଛି । ରଙ୍ଗରାଜନଙ୍କ ଛଡ଼ା ତାଙ୍କ ଅଜା ବୀରକିଶୋର ଜଗଦେବଙ୍କ ଚରିତ୍ର ମଧ୍ୟ ଦେଇ ବାଘ ଶିକାର ସମୟରେ ଶିକାରୀ ନେଉଥିବା ବିଭିନ୍ନ ପଦକ୍ଷେପ ସୂଚିତ ।

'ଭୂମିତୃଷ୍ଣା' ବେଶ୍ ବୈଚିତ୍ର୍ୟମୟ । ଏ ଭୂମି ପ୍ରତି ମଣିଷର ଯୁଗଯୁଗ ଧରି ରହିଥିବା ତୃଷ୍ଣାର ଏହା ପରିପ୍ରକାଶକ । କାହାଣୀ, ଇତିହାସ, ଭୌଗୋଳିକ ବାତାବରଣ ମଧ୍ୟ ଦେଇ ପ୍ରାଚ୍ୟ ଓ ପାଶ୍ଚାତ୍ୟର ସଂସ୍କୃତି ଓ ଏହାର ବୈଶିଷ୍ଟ୍ୟ, ମନୁଷ୍ୟ ଓ ବନ୍ୟଜୀବ ମଧ୍ୟରେ ଆତ୍ମିକ ସମ୍ପର୍କକୁ ମଧ୍ୟ ଏଥିରେ ସ୍ପଷ୍ଟ କରିଦିଆଯାଇଛି । ସ୍ଥାନେ ସ୍ଥାନେ ତଥ୍ୟପୂର୍ଣ୍ଣ ଘଟଣାକୁ ବେଶ୍ ନାଟକୀୟ ଓ ସୁଖପାଠ୍ୟ କରି ପରିବେଷଣ କରିଛନ୍ତି ଔପନ୍ୟାସିକ । ଉପନ୍ୟାଟି ନିଶ୍ଚିତ ରୂପେ ସଂଗ୍ରହଣୀୟ ।

- ଗୋବିନ୍ଦ ଚନ୍ଦ୍ର ଚାନ୍ଦ



***Times of India, Date:05.02.1999***
***Book review: Bhumitrushna***
***Patriot games: A second homecoming***

The golden jubilee celebration of India's independence is the perfect time to reminisce the glorious heritage and culture of the country. Against this backdrop is set Radhamohan Mahapatra's novel, 'Bhumitrushna'. Though his earlier works revolved round the lives of tribals, forests and wildlife, in Bhumitrushna, he wraps up the entire gamut of Indian history, legend and mythology.

The author tries to explore the identity of a country glorified by litterateurs over the ages. With an unmistakable pride in his lineage, Mahapatra goes on to unfold various facets including religion, philosophy, natural resources, rich art and literature of this diverse yet unique land.

The novel is about a young medical student Mitrabhanu who marries an Italian girl Ileana while pursuing his course in medicine in Italy. The newly-married couple come to India for their honeymoon. The visit turns out to be a learning experience for Ileana and an opportunity for Mitrabhanu to rediscover his origin.

As most of the action in the novel takes place with Orissa as the background, the novel is focused mostly on the natural resources and legends of the state. Like the Dasavatar of Lord Vishnu, the tale of Shakuntala, the legend of the village deity of the protagonist, Tusi Devi at Jashipur, famous Khiching Temple in Mayurbhanj, the Sun Temple at Konark, and the Jagannath Temple at Puri are elaborated by the author with a refreshing touch.

The first thing about the novel that strikes the readers is its intense presentation and the lucid yet gripping style. It is an engaging novel that Mahapatra has written managing to envelope the cultural ethos as well as philosophy of the land. The approach is conspicuously patriotic as he delineates the history of his motherland with emotions running strong and deep. The author, undoubtedly during his long tenure as Class I officer of Orissa Finance Service, has gleaned enough information and experience over the years about different places which has proved handy in writing the book. He is now Chief Finance Officer of Forest Development Corporation. The book, however, lays too much stress on the past without interweaving it with the present. Another flaw of the book lies in its sketchy characters. Most of them lack proper thought behind their development. All said and done, the book, one hopes, will influence youths hankering after the label of modernity to take pride in their roots.

**By Alaka Sahani**



***Hindusthan Times, New Delhi***
***Date: Wednesday, May 12,1999***
***Return to the roots: BHUMI TRUSHNA***

While novels on history and culture of a country are not new to literature, Radhamohan's last novel, the tenth one, titled Bhumitrushna loosely translated as 'Lust for the land', though not new, is unique and different in putting the glory of the land in an unprecedented style with skilled touch of facts, fiction, legends and history. From the known history the book goes indepth into the unknown facts depicting the great Motherland as the primoval pendal of light and civilisation. A scion of the soil in going through the book is bound to be charmed and mirthful of being himself a descent-pedigree of a rare race. There lies the success of the book, the aim and object of the writer to educate and rejuvenate adolescent mind with magical touch of patriotism. Like 'Paradise Lost' and 'Paradise Regained', the writer unveils the fathomless glory of the land through glimpses of ancient history and mythological versions and brings facts of life to its present shape while conjecturing a bright future for the youth. The 50$^{th}$ anniversary of Indian Freedom is, therefore, the right time for the birth of the book.

The book, however, presents a deep study of Eastern and Western culture, lifestyle of people having vices and virtues and brings home the value of life and society rooted in tradition, culture and heritage of the country. The novel puts the Oriyan landscape on the national map with a picturesque view. It recites the often quoted popular verse of the land – If India is lotus on earth, Orissa is he yolk in it, a pivot in the scenario.

Then, what is new in the book? Yes, it is new. While telling the story, told and untold, it revamps the hidden spirit of an Oriyan youth, Mitrabhanu, the last of the royal race of Nilagiri Estate who is a young doctor, educated outside Orissa for obvious safeguard of the endangered royal family- completes medical study at Delhi and flies to Italy for higher course in genetic engineering.

While in Rome, Mitrabhanu, falls in love with a sweet sixteen Italian girl Ileana. His parents Rangarajan and Anindita are heart-broken but the father is hopeful that the son would return to his native land. A true son of the soil can never be indifferent to the call of the Motherland. After much persuasion Ileana agrees to come to India for a short visit. The new couple come for a happy honeymoon.

Ileana is soon bewitched by its soul. The visit turns out to be a learning experience for Ileana and an opportunity for Mitrabhanu to rediscover his origin as he takes Ileana round the well-known places of Orissa keeping up a constant commentary on history, heritage and culture of the country.

As most of the actions in the novel take place with Orissa as the background, the novel is focussed mostly on the rich natural resources, bounty of forest and its uncommon denizens, history and legends of the State. Still more unique and important is author's baffling presentation of the role of a pet tiger 'Banraj' who impressed on the mind that where man fails to understand, an animal can. The author, of course, has closely studied the life and living of forest people, beasts and animals and has discovered the facts of animal value through vast experience. Pity and love for animal occupy a pivotal place Radhamoha's novel.

Besides this book, he has three more exclusive novels on jungle life and animals which claim to be first of the feature novels on jungle life and animals ever written. Bumitrushna, is another novel experiment in the new arena of feature novels mixing facts, fiction, history and legends into one lucid presentation.

**By Ashok Palit**



***Date- 03.01.1999***
***The New Indian Express, Bhubaneswar***
***Presenting native land resplendent in culture***

While novels in Oriya literature have been few Radhamohan Mohapatra needs to be commended for churning out one novel every year with mechanical regularity. True, his novels have not been earthshaking either in the novelty of subject matter or in the way of treatment; but they have also never fallen below a certain standard. The present novel as the title Bhumitrushna (love of the motherland, loosely translated) suggests, has the purpose of presenting India resplendent in its culture and bounty of nature.

Mitrabhanu, the only son of Rangaranjan and Anindita, marries an Italian girl abroad. The parents are heart-broken; but the father is hopeful that his culture and land would one day make Mitrabhanu return to Orissa. Rather a twisted concept of patriotism, but let it pass. Mitrabhanu writes letters, sends his Italian diary to apprise the parents of the life on foreign land as well as the events leading to his getting spliced. The parents are a bit reassured. Then the son flies back to the native land with his bride who is first bewildered by Orissa's backwardness, its penury, but is soon bewitched by its soul. The parents-in-law are also won over and now it is time for the discovery of Orissa as Mitrbhanu takes Iliana his bride round the well known places of Orissa keeping up a constant commentary on the history and culture. The end is predictable. Iliana is so much smitten by Orissa that she decides to stay back.

The author impresses with his longish forays into history and culture of Orissa and India but it does sound propagandist at times and facts mar the flow of fiction. Since the native land becomes the central character, other characters fail to grow and recede to background while paean to the nation becomes the major concern.

**By Bibhuti Mishra**



ପୁସ୍ତକ ନାମ : ତମସା ତୀର୍ଥ

ପ୍ରକାଶକ : ପ୍ରତିଭା ମହାପାତ୍ର,
୧୪୭, ବୁଦ୍ଧେଶ୍ୱରୀ,
ଭୁବନେଶ୍ୱର-୬

ପ୍ରକାଶ କାଳ : ୧.୧.୧୯୯୩

ପୃଷ୍ଠା : ୧୬୦

ପ୍ରଚ୍ଛଦ : ଅସୀମ ବସୁ

ମୂଲ୍ୟ : ୯୦/-






'ତମସାତୀର୍ଥ'କୁ ଲେଖକ ଚନ୍ଦ୍ରଶେଖର ରଥ ଉନ୍ମୋଚନ କରୁଛନ୍ତି ।

ସମ୍ବାଦ, ୨୮-୨-୯୩, ରବିବାର

ମଣିଷ ଭୁଲ କରେ, ପୁଣି ଅନୁତପ୍ତ ହୋଇ ନିଜକୁ ସୁଧାରିବାର ପ୍ରୟାସ କରେ। କିନ୍ତୁ ବେଳବେଳେ ଭୁଲ୍ ଜନିତ ଶାସ୍ତି ଏତେ ପ୍ରଶସ୍ତ ହୋଇଯାଏ ଯେ, ଯାହା ପାଇଁ ପ୍ରାୟଶ୍ଚିତ କରିବାରେ ବିତିଯାଏ ସାରା ଜୀବନଟା। ସବୁକିଛି ଥାଇ ବି ଜୀବନ ନିରର୍ଥକ ହୋଇଯାଏ। ସରସତା ହଜିଯାଏ। ଜୀବନ ପାଲଟିଯାଏ ଏକ ବ୍ୟର୍ଥ ସାହାରା। ଔପନ୍ୟାସିକ ରାଧାମୋହନ ମହାପାତ୍ରଙ୍କ ଉପନ୍ୟାସ 'ତମସାତୀର୍ଥ'ର ଅନ୍ତରାତ୍ମାରେ ଏଇ ସତ୍ୟଟି ଲୁଚି ରହିଛି।

କ୍ଷମା ପ୍ରସାଦ ଏବଂ ଅଳକା କେଉଁ ଏକ ଦୁର୍ବଳ ମୁହୂର୍ତ୍ତରେ ଏମିତି ଗୋଟାଏ ଭୁଲ୍ କରିବସିଲେ, ଯାହା ପାଇଁ କ୍ଷମା ପ୍ରସାଦଙ୍କ ସଂସାର ଉଜୁଡ଼ିଗଲା। ଅଗ୍ନିକୁ ସାକ୍ଷୀରଖି ବିବାହ କରିଥିବା ଧର୍ମପତ୍ନୀ 'ରତ୍ନା'କୁ ସେ ନିଜ ହାତରେ ମୃତ୍ୟୁର ମହାନିଦ୍ରାରେ ଶୁଆଇଦେଲେ । ନୂଆ ଘର ସଂସାରକୁ ନର୍କରେ ପରିଣତ କରି ହରାଇ ବସିଲେ ନିଜର ଶିଶୁପୁତ୍ର। ତାପରେ..... ତାପରେ ଧନର ପ୍ରାଚୁର୍ଯ୍ୟରେ ଅଣନିଃଶ୍ୱାସୀ ହୋଇପଡ଼ିଲେବି କ୍ଷମା ପ୍ରସାଦଙ୍କ ଜୀବନରୁ ହଜିଗଲା ଶାନ୍ତି। ଜୀବନ ଥାଇ ସେ ଚୁମିଲେ ମୃତ୍ୟୁର ପାଦ ପ୍ରତିମୁହୂର୍ତ୍ତରେ। ଆତ୍ମଗ୍ଲାନି, ଅନୁଶୋଚନାରେ ଦଗ୍ଧୀଭୂତ ହେଲା ତାଙ୍କ ମନ, ମାନସିକତା। ଅବଶେଷରେ ୨୦ ବର୍ଷ ପରେ ହଜିଲା ପୁତ୍ର ଅଭିଜିତକୁ ଫେରିପାଇଲେ କ୍ଷମା ପ୍ରସାଦ ଯେତେବେଳେ ସେ ପତ୍ନୀଶୋକ, ପୁତ୍ରହରାଜନିତ ଦୁଃଖରେ ମ୍ରିୟମାଣ। ତାପରର କଥାରେ କିଛି ନାଟକୀୟତା, କିଛି ଉତ୍କଣ୍ଠାର ଏକ ମିଶ୍ରିତ ସ୍ପର୍ଶ।

କହିବାକୁ ଗଲେ ଏକ ସମ୍ଭାବନାକୁ ଆଧାରକରି ଆରମ୍ଭ ହୋଇଥିବା 'ତମସାତୀର୍ଥ' ଉପନ୍ୟାସର ଯବନିକାପାତ ହୋଇଛି ଏକ ସୁଖାନ୍ତକ ମିଳିନରେ।

'ତମସାତୀର୍ଥ' ସମ୍ପର୍କରେ ଯେଉଁ କେତୋଟି କଥା ମନକୁ ଆନ୍ଦୋଳିତ କରେ ତାହା ହେଉଛି, ସାମଜରୁ ବିଷୟବସ୍ତୁ, ଚରିତ୍ର ଆହରଣ କରିବାକୁ ଯାଇ ଲେଖକ କେତେକାଂଶରେ ଗତାନୁଗତିକ ହୋଇ ଉଠିଛନ୍ତି। ତେବେ 'ତମସାତୀର୍ଥ' ମଧ୍ୟରେ ସେ ସାରସ୍ୱତ ଇଲାକାର ଯେଉଁ ମହାନ୍ ତୀର୍ଥରେ ବିଚରଣ କରିଛନ୍ତି,ତାହା ଦିନେ ନା ଦିନେ ତାଙ୍କୁ ସଫଳତା ଆଡ଼କୁ ଟାଣି ନେବ । ହୁଏତ ସେ ସମୟ ଖୁବ୍ ବିଳମ୍ବ ନ ହୋଇପାରେ, ଯେତେବେଳେ ରାଧାମୋହନ ମହାପାତ୍ର ଜଣେ ସଫଳ ଔପନ୍ୟାସିକ ସ୍ୱୀକୃତି ପାଇଯିବେ ଆପେ ଆପେ।

- ରାଧାନାଥ ମହାପାତ୍ର



***ପ୍ରଜାତନ୍ତ୍ର ସାପ୍ତାହିକୀ***
***ଜୁନ୍, ୨୭ ରୁ ଜୁଲାଇ ୩***
***ପରସ୍ପର ପ୍ରତି ସ୍ନେହ, ଶ୍ରଦ୍ଧା ଓ ତ୍ୟାଗ ହିଁ ପାରିବାରିକ ଜୀବନକୁ ସୁଖମୟ କରିଥାଏ***

ସୁସ୍ଥ ପରିବାର ଗଠନରେ ପରିବାରର ମୁଖ୍ୟଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ। ଯେଉଁ ପରିବାରର ମୁଖ୍ୟ ଯେତେ ଭଦ୍ର, ଚରିତ୍ରବାନ, ସାଧୁ, ସହିଷ୍ଣୁ ଓ ବନ୍ଧୁବତ୍ସଳ ସେହି ପରିବାରର ଅନ୍ୟ ସମସ୍ତେ ପ୍ରାୟ ସେହି ସ୍ୱାଭବର ହୋଇଥାନ୍ତି। ପରିବାରର ମୁଖ୍ୟ ନିଜର ସ୍ନେହ, ତ୍ୟାଗ, ଶ୍ରଦ୍ଧାରେ ସମସ୍ତଙ୍କୁ ଗୋଟିଏ ପାରିବାରିକ ଶୃଙ୍ଖଳାରେ ଶୃଙ୍ଖଳିତ କରିଥାନ୍ତି। ଫଳରେ ପରିବାରରେ ପରସ୍ପର ମଧ୍ୟରେ ସ୍ନେହ ଶ୍ରଦ୍ଧା ଭାବ, ଭକ୍ତି ରହିଥାଏ। ପରିବାରରେ ଯେତେବେଳେ ଏ ସବୁର ଅଭାବ ପରିଲକ୍ଷିତ ହୋଇଥାଏ, ସେତେବେଳେ ପାରିବାରିକ ଶୃଙ୍ଖଳ ଛିନ୍ନ ହୋଇଥାଏ। ପରିବାରରେ ଅଶାନ୍ତ ଓ ଅସୁସ୍ଥ ବାତାବରଣ ଦେଖା ଦେଇଥାଏ। ମାନବିକତାଶୂନ୍ୟ କାର୍ଯ୍ୟକଳାପ ଆଡକୁ ସମସ୍ତେ ପ୍ରଧାବିତ ହୋଇଥାନ୍ତି।

ସମାଜରେ ଯେତେସବୁ ବ୍ୟଭିଚାର ସୃଷ୍ଟି ହେଉଛି, ତାହା କେବଳ ଉଦ୍ଧତ ପ୍ରକୃତିର ପୁରୁଷମାନଙ୍କ ଦ୍ୱାରା ସଂଘଟିତ ହୋଇଥାଏ କହିଲେ ଭୁଲ୍ ହେବ ନାହିଁ। ତେବେ ନାରୀମାନଙ୍କଠାରେ କେବଳ ସତୀ, ଅସତୀର ପ୍ରଶ୍ନ ଉଠୁଛି କାହିଁକି ? ପୁରୁଷମାନଙ୍କର ନଷ୍ଟ ଚରିତ୍ରକୁ ଭ୍ରୂକୁଞ୍ଚନ କରାଯାଉ ନାହିଁ କାହିଁକି ? ଏହି ସବୁ ପ୍ରଶ୍ନବାଚୀ ପାଠକ ମନକୁ ଆସିଯାଏ, ଶ୍ରୀ ରାଧାମୋହନ ମହାପାତ୍ରଙ୍କ ସଦ୍ୟ ପ୍ରକାଶିତ ସଂସ୍କାରଧର୍ମୀ ଉପନ୍ୟାସ 'ତମସାତୀର୍ଥ' ପାଠ କଲାପରେ। 'ତମସାତୀର୍ଥ' ଶ୍ରୀ ମହାପାତ୍ରଙ୍କର ପଞ୍ଚମ ଉପନ୍ୟାସ। ଉପନ୍ୟାସଟିର ପୃଷ୍ଠଭୂମି ବିଷୟରେ ସମ୍ୟକ ସୂଚନା ଦେଇ ଔପନ୍ୟାସିକ ଶ୍ରୀ ମହାପାତ୍ର ଲେଖିଛନ୍ତି- "ବଂଶ ବୃଦ୍ଧି ଛଡ଼ା ଦାମ୍ପତ୍ୟ ଜୀବନର ଅନ୍ୟ ଏକ ଉଦ୍ଦେଶ୍ୟ ଅଛି। ଏକ ପାରମାର୍ଥିକ ସ୍ୱର ସ୍ୱାମୀ-ସ୍ତ୍ରୀ ସମ୍ପର୍କରେ ନିହିତ। ଏଇ ସ୍ୱର ସଙ୍ଗମରେ ବ୍ୟତିକ୍ରମ ବା ବିଚ୍ୟୁତି ଘଟିଲେ ଜୀବନ ବିଡମ୍ବିତ ହୁଏ, ତାହା ଛିଣ୍ଡା ସୀତାରର ବିଦୀର୍ଣ୍ଣ ସ୍ୱର ଭଳି ଯନ୍ତ୍ରଣାମୟ ହୋଇଉଠେ, ସଂସାର ହୋଇଯାଏ ଜ୍ୱଳାମୁଖୀ।"

ଜଣେ ପ୍ରତିଷ୍ଠିତ ଧନଶାଳୀ ଠିକାଦାର ଜୟରାଜ। ଶିକ୍ଷିତ ବେକାର କ୍ଷମାପ୍ରସାଦ ଜୟରାଜଙ୍କ ଅଧୀନରେ ଚାକିରି କରନ୍ତି। ଜୟରାଜଙ୍କ ମା' ଛେଉଣ୍ଡି ଦୁଇ ଝିଅ, ରତ୍ନା ଓ ଅଳକା। ଜୟରାଜ ସଂସାରରୁ ବିଦାୟ ନେବା ପୂର୍ବରୁ କ୍ଷମାପ୍ରସାଦ ସହିତ ବଡଝିଅ ରତ୍ନାର ବିବାହ କରାଇ ଦେଇଥିଲେ। ମାତ୍ର କ୍ଷମାପ୍ରସାଦ (ଧନ ଲୋଭରେ) ଅଳକା ସହିତ ପ୍ରେମ ସମ୍ପର୍କ ଖୁବ୍ ସୁଦୃଢ଼ ଥାଏ। ଯାହାକି ପରବର୍ତ୍ତୀ ସମୟରେ ପତ୍ନୀ ରତ୍ନାକୁ ଆତ୍ମହତ୍ୟା କରିବାକୁ ବାଧ୍ୟ କରିଥିଲା । ରତ୍ନା ଆତ୍ମହତ୍ୟା କରିବା ପୂର୍ବରୁ ଅଭିଜିତକୁ ଜନ୍ମ ଦେଇଥାଏ। ପୁଅ ଅଭିଜିତ ମା'ର ମୃତ୍ୟୁ ଓ ବାପାଙ୍କର ଚାରିତ୍ରିକ ସ୍ଖଳନର କୁପ୍ରଭାବରେ ଘରଛାଡ଼ି ଚାଲିଯାଏ । କ୍ଷମାପ୍ରସାଦ ଅଳକାକୁ ନେଇ ପରିଣତ ବୟସରେ ଉପନୀତ ହେବାବେଳେ ପୁତ୍ର ଅଭିଜିତର ସନ୍ଧାନ ପାଇଛନ୍ତି ନିଜ ସାନ ଶ୍ୱଶୁର ନଟରାଜଙ୍କଠାରୁ । ଖୁସିର ସୀମା ନାହିଁ ତାଙ୍କର। ପୁଅର ସନ୍ଧାନ ମିଳିଛି। ପୁତ୍ର ଅଭିଜିତ ବିଷୟରେ ସବୁକଥା ଜାଣିପାରିଛନ୍ତି। କ୍ଷମାଙ୍କର ପୁତ୍ର ଅଭିଜିତକୁ ଘରକୁ

ଫେରାଇ ଆଣିବାର ପ୍ରଚେଷ୍ଟାକୁ ଅଭିଜିତ ପ୍ରତ୍ୟାଖ୍ୟାନ କରେ । ଅଭିଜିତ ଚରିତ୍ରର ବିତୃଷ୍ଣା ମନୋଭାବକୁ ବର୍ଣ୍ଣନା କରି ଔପନ୍ୟାସିକ ଲେଖିଛନ୍ତି- "ଜଣେ ନିରପରାଧିନୀ ନାରୀ ତା ନିଷ୍ଠୁର ସ୍ୱାମୀ ହାତରେ ଦଣ୍ଡିତା। ମାନବିକତା କେବେ ଏପରି ଜଘନ୍ୟ ଅପରାଧକୁ କ୍ଷମା ଦେଇ ନ ପାରେ। ଏଣୁ ଅମଣିଷମାନଙ୍କଠାରୁ ଦୂରେଇ ରହିବା ଶ୍ରେୟ।" ସେ ଯାହା ହେଉ ଅଭିଜିତ ପରିଶେଷରେ ଘରକୁ ଫେରିଛି। କ୍ଷମାପ୍ରସାଦ ପୁଅକୁ ଜଣେ ଉଚ୍ଚଶିକ୍ଷିତା, ଆଧୁନିକା ଝିଅ ମିତାଲି ସହିତ ବିବାହ କଲେ। ମାତ୍ର ପୁଅ ନିଜ ପରିବାରର କୁପ୍ରଭାବରେ ପ୍ରଭାବିତ ହୋଇ ପାରିବାରିକ ଶୃଙ୍ଖଳରୁ ବାହାରି ଯାଇ ଚରିତ୍ରହୀନ ହୋଇଯାଇଛି। ଅନେକ ପତିତା ଓ ବାରାଙ୍ଗନାଙ୍କ ସଂସ୍ପର୍ଶରେ ଆସିଛି। ବିବାହର ମଧୁରାତିରେ, ପୂର୍ବ ପରିଚିତା ଜଣେ ପତିତା ନାରୀ ଆଜି ତାର ସ୍ତ୍ରୀ ହେବାକୁ ଯାଉଛି ଜାଣି ତାକୁ ଭର୍ତ୍ସନା କରି ଘରୁ ବାହାର କରିଦେଇଛି। ଔପନ୍ୟାସିକଙ୍କ ବର୍ଣ୍ଣନାରେ ଜଣେ ନାରୀର ମନ କ'ଣ ଚାହେଁ? ପରସ୍ଥିତି କିପରି ଜଣେ ନିରୀହା ସରଳା ନାରୀକୁ ବାରଙ୍ଗନାରେ ପରିଣତ କରିଥାଏ ତା'ର ସ୍ପଷ୍ଟ ଚିତ୍ର ପ୍ରଦାନ କରିବାକୁ ଯାଇ ଲେଖିଛନ୍ତି- "ଜାଣି ଜାଣି କେହି ଏ ଦୁର୍ଗମ ପଥ ଆଦରି ନଥାନ୍ତି। ଆଦରି ନେବାକୁ ବାଧ ହୁଅନ୍ତି। କିଏ ଇଚ୍ଛା କରେ ନାହିଁ ସ୍ୱାମୀ ସହିତ ସୁଖ ସଂସାର ତୋଳିବାକୁ? କିନ୍ତୁ ସବୁ ଝିଅଙ୍କ ଭାଗ୍ୟ ସମାନ ନୁହେଁ। ଅନେକ ବାଧ ହୋଇ ବାଛି ନିଅନ୍ତି ଏ ଅଭାଗା ଜୀବନକୁ। ପ୍ରତି ପତିତା ନାରୀର ହୃଦୟ ଅନ୍ତରାଳରେ ଏକ ଅଶ୍ରୁଳ ଇତିହାସ ଆତ୍ମଗୋପନ କରିଥାଏ।" (ପୃ-୧୦୫)। ଏହାପରେ ଅଭିଜିତ ଚରିତ୍ର କାର୍ ଦୁର୍ଘଟଣାରେ ଚିକିତ୍ସିତ ହେଉଥିବା ବେଳେ ନିଜର ଚାରିତ୍ରିକ ସ୍ଖଳନରେ ନର୍ସ ଲାବଣ୍ୟ ପ୍ରତି ଖରାପ ବ୍ୟବହାର ଦେଖାଇ, ଠିକଣା ଜବାବ ପାଇଛି। ପରିଶେଷରେ (ସୁଲତା) ସେହି ଝିଅ, ଯାହାକୁ ସେ ବିଭା ହୋଇଥିଲା, ତା'ର ପାପପୁଣ୍ୟକୁ ସମଦୃଷ୍ଟିରେ ଦେଖିଛି ଏବଂ ତାକୁ ସ୍ତ୍ରୀ ରୂପେ ଗ୍ରହଣ କରିଛି। ସୁଖଲତାକୁ ଆଶ୍ରୟ ଦେଇଥିବା ନିଃସନ୍ତାନ ବିଧବା ବୁଢ଼ୀମାଉସୀ ଚରିତ୍ର ଚିତ୍ରଣ କରିବାକୁ ଯାଇ ଔପନ୍ୟାସିକ ଦୁନିଆର ଅନ୍ୟ ଚରିତ୍ରମାନଙ୍କ ସହିତ ଏକ ତୁଳନାତ୍ମକ ବିଚାର କରିଛନ୍ତି। "ବଡ଼ ବିଚିତ୍ର ଏ ଦୁନିଆ, ବିଚିତ୍ର ଲୋକମାନେ, କେଉଁଠି ସ୍ୱାର୍ଥର ପାହାଡ଼ ତ ବିପରୀତ ଦିଗରେ ତ୍ୟାଗର ମନ୍ଦିରଟିଏ ରହିଛି।" (ପୃ-୧୨୬)

ସମଗ୍ର ଉପନ୍ୟାସର ବିଷୟବସ୍ତୁ ସତେଯେପରି ଏକ ସତ୍ୟ ଘଟଣା ଉପରେ ଆଧରିତ। ଉପନ୍ୟାସ ବର୍ଣ୍ଣନାର ଛତ୍ରେ ଛତ୍ରେ ପାରିବାରିକ ଜୀବନକୁ ସହଜ ଓ ସୁଖମୟ କରିବା ପାଇଁ ଔପନ୍ୟାସିକ ବହୁ ଉପଦେଶାବଳୀ ସନ୍ନିବେଶିତ କରିଛନ୍ତି । ନାରୀ ଜାତି ପୁରୁଷ ଜାତିଠାରୁ ଅଧିକ ସହିଷ୍ଣୁ ତାହା ବର୍ଣ୍ଣନା କରିବାକୁ ଯାଇ ଔପନ୍ୟାସିକ ଲେଖିଛନ୍ତି- "ନାରୀ ଜୀବନ ପଥର ତଳେ, ପୁରୁଷ ଜୀବନ ପତର ତଳେ। ପଥରକୁ ଆଦରି ପଥ ଚାଲିବା ନାରୀର ଧର୍ମ। ନାରୀ ସର୍ବଂସହା ଧରତ୍ରୀ। ଧରିତ୍ରୀ ଜ୍ୱଳାମୁଖୀ ହେଲେ ସଂସାର ଧ୍ୱଂସ" (ପୃଷ୍ଠା-୩୯)। ଉପନ୍ୟାସର ବିଷୟବସ୍ତୁ ଓ ବର୍ଣ୍ଣନା ଶୈଳୀ ଉଚ୍ଚକୋଟୀର। ଭାଷା ଭାବର ଜଟିଳତା ଆଦୌ ନାହିଁ। ସବୁ ସ୍ତରର ପାଠକ ବର୍ଗଙ୍କ ନିକଟରେ ଏହି ଉପନ୍ୟାସ ସୁଖପାଠ୍ୟ ହୋଇପାରିବ ବୋଲି ଆମର ଆଶା।

**- ରବି ନାରାୟଣ ପଣ୍ଡା**

◆

*ପ୍ରଗତିବାଦୀ (୨୭.୦୪.୧୯୯୩)*

ଔପନ୍ୟାସିକ ରାଧାମୋହନ ମହାପାତ୍ରଙ୍କର ଏକ ସଫଳ କୃତୀ। ବିଷୟ ବସ୍ତୁକୁ ବାଦ୍‌ଦେଲେ ଉପନ୍ୟାସଟିରେ ଲେଖକ ଶବ୍ଦବିନ୍ୟାସ ଉପରେ ସର୍ବାଧିକ ଗୁରୁତ୍ୱ ଦେଇଛନ୍ତି। ଚରିତ୍ର ବିଶ୍ଳେଷଣ ବେଳେ ସେ ଏପରି କେତେକ ଶବ୍ଦ ପ୍ରୟୋଗ କରିଛନ୍ତି, ଯାହା ବିଷୟବସ୍ତୁକୁ ଜୀବନ୍ତକରି ତୋଳିଛି। ଘଟଣା ପ୍ରବାହର ପୁଙ୍ଖାନୁପୁଙ୍ଖ ବର୍ଣ୍ଣନାରୁ ଲେଖକଙ୍କ ନିରୀକ୍ଷଣ କ୍ଷମତା ସ୍ପଷ୍ଟ ଅନୁମେୟ। ଲେଖକ ଉପନ୍ୟାସର ଚରିତ୍ରମାନେ ବ୍ୟବହାର କରୁଥିବା ଜିନିଷ କେଉଁ କମ୍ପାନୀର ସେ କଥା ମଧ୍ୟ ଲେଖିବାକୁ ଭୁଲିନାହାନ୍ତି।

ଦାମ୍ପତ୍ୟ ଜୀବନରେ ସ୍ୱାମୀ ସ୍ତ୍ରୀର ଚାରିତ୍ରିକ ସ୍ଖଳନ ଯେ ପାରିବାରିକ ଜୀବନରେ ଝଡ଼ ସୃଷ୍ଟିକରେ, ଏହା ହିଁ ଉପନ୍ୟାସର ବିଷୟବସ୍ତୁ। ଦେହଜ ପ୍ରେମର ନୈସର୍ଗିକ ବର୍ଣ୍ଣନାରେ ଗୁଦ୍ଧିମନ୍ତ ଏହି ପୁସ୍ତକରେ ସଂଳାପ ମୁଖ୍ୟ ଭୂମିକା ଗ୍ରହଣ କରିଛି। ଉପନ୍ୟାସର ନାୟକ କ୍ଷମା ପ୍ରସାଦ ତାଙ୍କ ଶାଳିକା ସହିତ ସ୍ଥାପନ କରିଥିବା ଦୈହିକ ସମ୍ପର୍କର ସୁନ୍ଦର ଚିତ୍ର ଉପସ୍ଥାପିତ ହୋଇଛି ଏହି ଉପନ୍ୟାସରେ। ଏହି ସମ୍ପର୍କକୁ ଏତେ ସୁନ୍ଦର ଶବ୍ଦରେ ରୂପାୟିତ କରିଛନ୍ତି ଲେଖକ ଯାହା ଓଡିଆ ଉପନ୍ୟାସ କ୍ଷେତ୍ରରେ ପୂର୍ବରୁ ଦେଖାଯାଇ ନ ଥିଲା। ଉପମା ଏବଂ ଅନୁପ୍ରାସରେ ସମୃଦ୍ଧ ଏହି ଉପନ୍ୟାସଟି ପ୍ରତ୍ୟେକ ଦମ୍ପତିଙ୍କ ପାଇଁ ଏକ ଅମୂଲ୍ୟ ସମ୍ପଦ ହୋଇ ରହିବ।

ଉଦୟ ଜେନାଙ୍କ ଦ୍ୱାରା ଅଙ୍କିତ ପ୍ରଚ୍ଛଦପଟର ରଙ୍ଗବିନ୍ୟାସ ଚମତ୍କାର। ପ୍ରଚ୍ଛଦପଟ ହିଁ ବହିକୁ ଆହୁରି ଓଜନଦାର କରିଛି। ପାଠକଙ୍କ ଦ୍ୱାରା ଏହା ବହୁଳ ଭାବେ ଆଦୃତ ହେବ। ଲେଖକଙ୍କ ଲେଖନୀ ଏହିପରି ଗତିଶୀଳ ଥାଉ।

ବହିର ଆରମ୍ଭରୁ ଲେଖକଙ୍କ ଉଦାରତାର ଯଥେଷ୍ଟ ପରିଚୟ ମିଳେ। ୧୫୦ ପୃଷ୍ଠାର ଏହି ବହିଟିର ପ୍ରକାଶନ ପାଇଁ ସେ ୮ଜଣ ବ୍ୟକ୍ତିଙ୍କ ନିକଟରେ କୃତଜ୍ଞତା ସ୍ୱୀକାର କରିଛନ୍ତି। ଅନ୍ୟାନ୍ୟ ଲେଖକମାନେ ଏଥିରୁ ଶିକ୍ଷାଲାଭ କରିବା ଉଚିତ।



ପୁସ୍ତକ ନାମ : ରକ୍ତର ରଂଗ

ପ୍ରକାଶକ : ପ୍ରତିଭା ମହାପାତ୍ର,

୧୪୭, ବୁଦ୍ଧେଶ୍ୱରୀ,

ଭୁବନେଶ୍ୱର-୬

ପ୍ରକାଶ କାଳ : ୧୫.୮.୧୯୯୭

ପୃଷ୍ଠା : ୧୧୨

ପ୍ରଚ୍ଛଦ : ଅସୀମ ବସୁ

ମୂଲ୍ୟ : ୫୦/-






ରକ୍ତର ରଂଗ ଲୋକାର୍ପଣ ଉତ୍ସବ

***ସମ୍ବାଦ ରବିବାର ୨୩-୨୯- ନଭେମ୍ବର'୯୭***
***(ଜଣେ କୃଷାଙ୍ଗୀ ତରୁଣୀର କରୁଣ କାହାଣୀ)***
***ଲୋଧା ସଂପ୍ରଦାୟର ମାର୍ମିକ ଛବି: ରକ୍ତର ରଂଗ***

ରକ୍ତର ରଂଗ ଉପନ୍ୟାସଟି ହେଉଛି ଲେଖକ ରାଧାମୋହନ ମହାପାତ୍ରଙ୍କର ନବମ ଉପନ୍ୟାସ । ପୂର୍ବରୁ ତାଙ୍କର ଆଠଟି ଉପନ୍ୟାସ ବିଭିନ୍ନ ସମୟରେ ପ୍ରକାଶ ପାଇ ପାଠକ ମହଲରେ ବେଶ୍ ଆଦୃତି ଲାଭ କରିଛି । ଉଲ୍ଲେଖନୀୟ ଯେ ଯେତେବେଳେ ଆମ ଭାଷାରେ ଉପନ୍ୟାସ ରଚନାରେ ଲେଖକମାନେ ବୀତସ୍ପୃହ, ଶ୍ରୀ ମହାପାତ୍ର ଗତ ୧୯୯୨ ମସିହାରୁ କ୍ରମାଗତ ଉପନ୍ୟାସ ପ୍ରକାଶ କରି ଉପନ୍ୟାସ ରଚନା ପ୍ରତି ତାଙ୍କର ନିଷ୍ଠା ଓ ପ୍ରତିବଦ୍ଧତା ପ୍ରମାଣିତ କରିଛନ୍ତି । ଏହା ଆମର ତରୁଣ ଲେଖକମାନଙ୍କୁ ଯେ ଅନୁପ୍ରାଣିତ କରିବ ଏଥିରେ ଦ୍ୱିରୁକ୍ତି ନାହିଁ ।

ଆଲୋଚ୍ୟ ଉପନ୍ୟାସଟି ମୟୂରଭଞ୍ଜ ଅଞ୍ଚଳର କୁଖ୍ୟାତ ଲୋଧା ସଂପ୍ରଦାୟର ସାମାଜିକ ଓ ଅର୍ଥନୈତିକ ଜୀବନର ଏକ ମାର୍ମିକ ଚିତ୍ର ପ୍ରଦାନ କରିବାକୁ ସମର୍ଥ ହୋଇଛି । ଗଳ୍ପର ନାୟିକା କଲ୍ୟାଣୀ ଜଣେ ଦୁର୍ଦ୍ଧର୍ଷ ଲୋଧା ସର୍ଦ୍ଦାରର କନ୍ୟା । କିନ୍ତୁ ପରିସ୍ଥିତିକ୍ରମେ ସେ ସହରର ଗୋଟିଏ ଅଭିଜାତ ପରିବାରର କନ୍ୟା ଭାବରେ ପ୍ରତିପାଳିତ ହୋଇଥାଏ । ହଠାତ୍ ନାଟକୀୟ ଭାବେ ଲୋଧା ସର୍ଦ୍ଦାର ଜେଲ୍‌ରୁ ମୁକ୍ତ ହେଇ ନିଜର ଜନ୍ମିତ ଝିଅକୁ ଖୋଜାଖୋଜି କରି ଠାବ କରେ ଓ ତାକୁ ଅପହରଣ କରିନିଏ ଜଙ୍ଗଲ ଭିତରକୁ । ସେଇଠାରେ କଲ୍ୟାଣୀ ନିଜର ଏକ ନୂତନ ଆତ୍ମ ପରିଚୟ ପାଏ । ସେ ଜାଣେ ଯେ ସେ ଜଣେ ଲୋଧା । ପରେ ମ୍ୟାଲେରିଆ ରୋଗରେ ପୀଡିତ ହୋଇ ସେ ଫେରିଆସେ ନିଜର ପାଳିତ ପିତାମାତାଙ୍କ ପାଖକୁ । ସେମାନେ ସ୍ୱୀକାର କରନ୍ତି ଯେ, କଲ୍ୟାଣୀ ତାଙ୍କର ପାଳିତା କନ୍ୟା । କିନ୍ତୁ ସେମାନଙ୍କର ସ୍ନେହ ଶ୍ରଦ୍ଧାରେ ଊଣା ନଥାଏ । କଲ୍ୟାଣୀ ସ୍କୁଲ ପାଠ ସାରି କଲେଜରେ ପାଦ ଦିଏ ଓ ଭଲ ପାଇ ବସେ ତା'ର ଜଣେ ସହାଧ୍ୟାୟୀ ସ୍ୱଦେଶକୁ । ସେମାନଙ୍କ ସଂପର୍କକୁ ସ୍ୱୀକୃତି ଦେଇ କଲ୍ୟାଣୀର ବାପା ମା' ରାଜି ହୋଇଯାନ୍ତି ସେମାନଙ୍କର ବିବାହ ପାଇଁ । ପୁଣି ଏକ ଘଟଣା ବଦଳାଇ ଦିଏ କାହାଣୀର ଦୃଶ୍ୟପଟ୍ଟ । ବାହାଘର ଦୁଇଦିନ ପୂର୍ବରୁ ଲୋଧା ସର୍ଦ୍ଦାର କଲ୍ୟାଣୀକୁ ଡାକିନିଏ ନିଜ ଘରକୁ ଓ ଆନନ୍ଦରେ ଭେଟିଦିଏ ଅନେକ ଲୁଣ୍ଠିତ ସ୍ୱର୍ଣ୍ଣ ଅଳଙ୍କାର । ସେଇ ଅଳଙ୍କାର ଭିତରୁ 'କଲ୍ୟାଣୀ' ନାମାଙ୍କିତ ଏକ ମୁଦ୍ରିକା ଆବିଷ୍କାର କରି କଲ୍ୟାଣୀ ମନ ପାପ ଛୁଏଁ । ଅନୁସନ୍ଧାନରୁ ଜଣାପଡେ ପୂର୍ବଦିନ ତା'ର ପ୍ରିୟତମ ଭାବୀ ସ୍ୱାମୀ ସ୍ୱଦେଶ କଲ୍ୟାଣୀ ପାଇଁ କଲିକତାରୁ ଉପଢୌକନ ସବୁ ଧରି ମଟର ସାଇକେଲରେ ଆସୁଥିବା ସମୟରେ ଲୋଧାମାନଙ୍କ ଆକ୍ରମଣର ଶିକାର ହୋଇ ପ୍ରାଣ ହରାଇଥାଏ । ଏପରି ଦୁଃସମ୍ବାଦରେ କଲ୍ୟାଣୀର ହୃଦୟ ହାହାକର କରି ଉଠେ । ସେ ଆଉ

ଏଇ ଅଭିଜାତ ସମାଜ ଭିତରକୁ ଫେରି ନଆସି 'ସ୍ୱଦେଶ ଆଶ୍ରମ' ଗଢି ଲୋଧା ଶିଶୁମାନଙ୍କର ଲାଳନ ପାଳନର ସଂକଳ୍ପ ନିଏ ଓ ଲୋଧାମାନଙ୍କର ସୁସ୍ଥ ଜୀବନଯାପନ ଓ ସଂସ୍କାର ପାଇଁ ଉଦ୍ୟମ ଆରମ୍ଭ କରେ । ସମଗ୍ର ଉପନ୍ୟାସଟି ପ୍ରଥମ ପୁରୁଷରେ କଲ୍ୟାଣୀର ବକ୍ତବ୍ୟ ଭାବେ ଉପସ୍ଥାପିତ । କାହାଣୀର ଗତିଶୀଳତା, ବର୍ଣ୍ଣନାର ଚମତ୍କାରିତା ତଥା ସାବଲୀଳ ଭାଷା ବିନ୍ୟାସ ଶ୍ରୀ ମହାପାତ୍ରଙ୍କ ରଚନାର ବିଶେଷତ୍ୱ । ବିଶେଷକରି ଲୋଧାମାନଙ୍କ ଜୀବନଚର୍ଯ୍ୟାକୁ ଉପସ୍ଥାପିତ କରିବାରେ ସେ ନିଜର ଦକ୍ଷତା ପ୍ରତିପାଦନ କରିଛନ୍ତି । ବୋଧହୁଏ ଲୋଧାମାନଙ୍କର ଜୀବନକୁ ନେଇ ଆମ ସାହିତ୍ୟରେ ଏହା ଏକ ଅନନ୍ୟ ଓ ଅଦ୍ୱିତୀୟ ସଂଯୋଜନା ଯେଉଁଥିପାଇଁ ଔପନ୍ୟାସିକ ଶ୍ରୀ ମହାପାତ୍ର ଧନ୍ୟବାଦର ପାତ୍ର । ଲୋଧାମାନଙ୍କ ଜୀବନ ନୃତାତ୍ତ୍ୱିକ ଓ ସମାଜତାତ୍ତ୍ୱିକ ବିଶ୍ଳେଷଣ ତରୁଣ ଗବେଷକମାନଙ୍କ ପାଇଁ ଉପଯୋଗୀ ହୋଇପାରିବ ବୋଲି ମଧ୍ୟ ଆଶା କରାଯାଏ ।

- ଶ୍ରୀ ସାତ୍ୟକି



**ବହି ଜଗତ, ମେ, ୧୯୯୮**

'ରକ୍ତର ରଙ୍ଗ' ଶ୍ରୀ ରାଧାମୋହନ ମହାପାତ୍ରଙ୍କ ଦଶମ ଉପନ୍ୟାସ ଯଦିଓ ପ୍ରକାଶକ୍ରମ ଦୃଷ୍ଟିରୁ ନବମ। 'ରାତି ବଢୁଥିଲା, ଅନ୍ଧାର ରାତି... ଆସନ୍ନ ବର୍ଷା... ରିକ୍ସାଚାଳକ ବ୍ୟତୀତ ଆଉ କେହି ଦିଶୁ ନ ଥିଲେ।

...ଜିପ୍ ଭିତରୁ ଭୂତ ପରି ଚାରିଜଣ ଦୀର୍ଘକାୟ ଦୁର୍ଦ୍ଦାନ୍ତ ଭୁଷୁଣ୍ଡା ମଣିଷ ଭୁସ୍‌ଭାସ୍ ଓହ୍ଲାଇ ଆସି ରିକ୍ସା ଚାଳକକୁ କାବୁ କରି ନେଲେ। ତା ମୁହଁକୁ ବାନ୍ଧି ପକାଇଲେ ଦୁଇଜଣ... ସେମାନେ ସମସ୍ତେ ଆପାଦମସ୍ତକ କଳା ପୋଷାକ ପିନ୍ଧିଥିଲେ। ହାତରେ ପିସ୍ତଲ ଓ ବନ୍ଧୁକ ଆଉ ଛୁରି...

ଉପନ୍ୟାସର ନାୟିକା କିଶୋରୀଟି ନୃତ୍ୟ ପ୍ରଦର୍ଶନ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିସାରି ଫେରିବା ବେଳେ ଏଭଳି ଏକ ଲୋମହର୍ଷଣକାରୀ ପରିବେଶରେ ହୁଅନ୍ତି ଅପହୃତା।

ପରବର୍ତ୍ତୀ ଘଟଣା ସଂଘାତ ଆହୁରି ରୋମାଞ୍ଚକର। ଯାହାଙ୍କ ନିର୍ଦ୍ଦେଶରେ ଅପହରଣ କାର୍ଯ୍ୟ ସାଧିତ ହୁଏ ସେଇ ଲୋଧା ସର୍ଦ୍ଦାର 'ଜିଙ୍ଗା' କିଶୋରୀଟିର ପ୍ରକୃତ ପିତା ଯଦିଓ କିଶୋରୀଟି ବଢ଼ି ଆସିଛି ସହରର ଉପନଗରପାଳ ପ୍ରତିପତ୍ତିସମ୍ପନ୍ନ ଜନୈକ ଭଦ୍ରବ୍ୟକ୍ତିଙ୍କର କନ୍ୟା ଭାବେ।

ଏଣେ ପୋଲିସ ସହ ଜିଙ୍ଗା ଆଗ୍ନେୟାସ୍ତ୍ରରେ ଯୁଦ୍ଧରତ, ତେଣେ ପତ୍ନୀର ପ୍ରସବ ଯନ୍ତ୍ରଣା। ଜିଙ୍ଗା ଜେଲ୍‌ଯାଏ, ପତ୍ନୀ ଅବଶ୍ୟ ଯାଏ ଆର ପାରିକୁ। ନବଜାତ କନ୍ୟାଟି ନିର୍ଭୟା ଅନାଥାଶ୍ରମ ଯାଏ ପୋଷ୍ୟ କନ୍ୟା ହବାକୁ, ଅସ୍ତ୍ରୋପଚାର ପରେ ମୃତ ସନ୍ତାନ ଜନ୍ମ କରିଥିବା ଆତୁରା ପତ୍ନୀଙ୍କର ଜୀବନ ରକ୍ଷା ପାଇଁ କାତର ସ୍ୱାମୀଙ୍କ ଦ୍ୱାରା।

ପରବର୍ତ୍ତୀ ସମୟରେ କିଶୋରୀଟିର ଭାବୀ ସ୍ୱାମୀ ନିହତ ହୁଅନ୍ତି ଲୋଧାଙ୍କ ଘୋଟିଆରେ। କିଶୋରୀ ଜଣକ ଏ ଭିତରେ ପାଳକ ପିତାମାତା ଓ ପ୍ରକୃତ ପିତା ଓ ସାବତ ମା' ଏଇ ଉଭୟ କୁଳର ହୋଇ ସାରିଥାନ୍ତି ଓ ମୃତ ଯୁବକଙ୍କର ମୁଦ୍ରିକାରୁ ଜଣାପଡେ ଭାବୀ ପତ୍ନୀ ନିକଟରେ ଓ ତାଙ୍କ ମୃତ୍ୟୁର ସମାଚାର।

କେବଳ ଘଟଣାର ଘନଘଟା ନୁହେଁ ଶ୍ରୀ ମହାପାତ୍ରଙ୍କ ଉପନ୍ୟାସରେ ରହିଛି ବି ଅନାବିଳ ପ୍ରେମର ଅମର କାହାଣୀ। ନାୟିକା ଯଦି ନୃତ୍ୟାଙ୍ଗନା ହୁଏ ନାୟକ ତ ଅନ୍ତତଃ ବଂଶୀ ବାଦକଟିଏ ହେବା ଉଚିତ ଏବଂ ସେ ଦୃଷ୍ଟିରୁ କୌଣସି ଅନୌଚିତ୍ୟକୁ ପ୍ରଶ୍ରୟ ଦେଇ ନାହାନ୍ତି ଔପନ୍ୟାସିକ।

ଉପସଂହାର ବେଳକୁ ବରିଷ୍ଠ ତପସ୍ୱିନୀ ଭଳି ଆଶ୍ରମ ଭିତରୁ ଶୁଭ୍ରବସ୍ତ୍ର ଶୋଭିତା ଦିବ୍ୟ ବଦନଧାରିଣୀ ମାତୃରୂପିଣୀ ଜଣେ ସୁଦୃଶ୍ୟ ରମଣୀ (ନାୟିକା) ଧୀର ସଂଯତ ପାଦରେ ଆଗେଇ ଆସିଲେ ସ୍ୱାଗତ କରିବାକୁ ସନ୍ଧାନୀ ବିଶିଷ୍ଟ ସାମ୍ବାଦିକଙ୍କୁ ଆଶ୍ରମର ଇତିବୃତ୍ତ ମିଡ଼ିଆରେ ପ୍ରକାଶନ ପାଇଁ।

ଏ ଉପନ୍ୟାସର ଏକ ବିଶେଷତ୍ୱ ଲୋଧା ଜନଜାତିର ଜୀବନ ଉପରେ ଆଲୋକପାତ ଯେଉଁ

ଦୁର୍ଦ୍ଧର୍ଷ ସଂପ୍ରଦାୟ ଉପରେ ବହି ନାହିଁ । ସମାଜର ମୁଖ୍ୟ ସ୍ରୋତକୁ ଫେରାଇ ଆଣିବା ଲେଖନୀ ମାଧ୍ୟମରେ ଲେଖକଙ୍କ ସାଧୁଉଦ୍ୟମ ପ୍ରସଂଶାର୍ହ ।

ଚଳଚ୍ଚିତ୍ରର ନିର୍ମାତାମାନଙ୍କର ଦୃଷ୍ଟି ଯଦି ଏ ଉପନ୍ୟାସ ଉପରେ ଏ ପର୍ଯ୍ୟନ୍ତ ପଡିନାହିଁ ତାହା ଦୁର୍ଭାଗ୍ୟଜନକ। ସାହିତ୍ୟିକ ଶ୍ରୀ ଚନ୍ଦ୍ରଶେଖର ରଥ ଶ୍ରୀ ମହାପାତ୍ରଙ୍କ ପଞ୍ଚମ ଉପନ୍ୟାସର ଉନ୍ମୋଚନ ଅବସରରେ ସେ ଶତ ସନ୍ତାନର ଜନକ (ଉପନ୍ୟାସ ମାନସ ସନ୍ତାନଙ୍କ) ହୁଅନ୍ତୁ ବୋଲି କାମନା କରିଥିଲେ। ଓଡ଼ିଆ ଉପନ୍ୟାସର ପରିମାଣାତ୍ମକ ସମୃଦ୍ଧି ପାଇଁ ଶ୍ରୀ ରଥଙ୍କର ଏପରି ଇଚ୍ଛାର ବୈଧତାକୁ ସ୍ୱୀକାର କରିବାକୁ ଏ ସମୀକ୍ଷକ ପ୍ରସ୍ତୁତ ନୁହେଁ।

**- ନାରାୟଣ ପଣ୍ଡା**
ମାଳିସାହି, କୋରାପୁଟ



*କ୍ରାନ୍ତିଧାରା (୭-୧-୯୮)*
***ଲୋଧା ଆଦିବାସୀ ଜୀବନର ମାର୍ମିକ ଛବି***

'ରକ୍ତର ରଙ୍ଗ' ସମାନ ଆମ ସମସ୍ତଙ୍କର ପାଖରେ। ରକ୍ତର ସମ୍ପର୍କ ଓ ଆକର୍ଷଣର ମାଧୁର୍ଯ୍ୟ କେତେବେଳେ ମଧୁମୟ ପ୍ରେମବାରୀ ପରି ସୁଶୀତଳ ତ କେତେବେଳେ ଜ୍ୱଳନର ଜୀଅନ୍ତା ଜୁଇ ପରି ବିଭୀଷିକାମୟ ଓ ଭୟଙ୍କର। ବିଶେଷ କରି ବଣଜଙ୍ଗଲରେ ଜନ୍ମନେଇ ଜୀବନ ବିତାଉଥିବା, ସରଳ ଆଦିବାସୀ ଲୋଧାମାନଙ୍କ ରକ୍ତର ସମ୍ପର୍କର ଉଷ୍ମ ଅନୁଭବ ଓ ହିଂସ୍ରତାକୁ ଔପନ୍ୟାସିକ ଶ୍ରୀ ରାଧାମୋହନ ମହାପାତ୍ର ମାପିବାକୁ ଯାଇ ସେମାନଙ୍କ ପାରିବାରିକ, ସାମାଜିକ ଓ ସାଂସ୍କୃତିକ ଜୀବନର ବହୁ ବାସ୍ତବ ଛବି ଆଙ୍କିଛନ୍ତି 'ରକ୍ତର ରଙ୍ଗ'ରେ।

ସରଳ ଲୋଧା ପ୍ରାଣରେ ବି ପ୍ରେମ ଫଲ×ଗୁର ଝର, ତରୁଣ ତରୁଣୀ ଲୋଧା ଆଖିରେ ବି ସୃଷ୍ଟିର ସୌନ୍ଦର୍ଯ୍ୟକୁ ଅନୁଭବ କରିବାର ଆଶା ଓ ନିଶା। ଗୁହିନ କୋଟଲଟ ବା'ଘରରେ ବରଯାତ୍ରୀ ହୋଇ ଯାଇଥିବା ଲୋଧା ସର୍ଦାର ଜିଙ୍ଗା ଡିଗାର ଗାଁ ଛାଟିଆ ଝିଅ ସୁନ୍ଦରୀ ପୂରବୀକୁ ଦେଖି ପ୍ରେମରେ ଉଲ୍ଲସିତ ହୋଇ କହିଛି 'ତା ମୁହଁ କୁତୁଚି ଫୁଲ ଭଳି ଦିଶିଲା, ଦିହ ତାର ଧାଡିକି ଫୁଲ ପରି ବାସିଲା। ସତରେ କେତେ ସୁନ୍ଦର ସେମାନଙ୍କର ପ୍ରେମ ଓ ସୌନ୍ଦର୍ଯ୍ୟ ଜ୍ଞାନର ଉପମା। ଠିକ୍ ସେହିପରି ସୃଷ୍ଟିର ସୌନ୍ଦର୍ଯ୍ୟକୁ ଅନୁଭବ କରି ଲୋଧା ବାଳକ ବାଳିକା ଗାଉଛନ୍ତି। "ଚୈତ୍ୟ ବୈଶାଖ ମାସେ, ନଦୀ ବହେ ରସେ ରସେ, ଧାଡିକି ଫୁଲ ଫୁଟେ ମାଘମାସେ।"

ଏତେ ସୁନ୍ଦର ଉଷ୍ମ ଅନୁଭବ ଥାଇବି ସେମାନଙ୍କର ହିଂସ୍ରତା ଓ ନୃଶଂସତା କ'ଣ ପାଇଁ? ଏହାର ଉତ୍ତର 'ରକ୍ତର ରଙ୍ଗ'ରେ ମିଳିଥାଏ।

ତେବେ "ରକତରେ ନାହିଁ ଜାତି ଅଜାତି, ପାଠ ଦି'ଅକ୍ଷର ଜୀବନ ସାଥୀ 'ରକ୍ତର ରଙ୍ଗ'ର ସାରବତ୍ତା ବା ସାରକଥା।

ଶିକ୍ଷାଦୀକ୍ଷା ଅଭାବରୁ ମୂର୍ଖ ଲୋଧା ସର୍ଦ୍ଦାର ଜିଙ୍ଗା ଡିଗାର ଘୋଟିଆ (ଡକାୟତି)କୁ ଜୀବନର ପରମ କର୍ତ୍ତବ୍ୟ ଭାବି କରି ଶେଷରେ ତା ଔରସରୁ ଜାତ ଏକ ଅସ୍ୱାଭାବିକ ପରିସ୍ଥିତିରେ ପଡି ଏକ ଭଦ୍ର ସମ୍ଭ୍ରାନ୍ତ ପରିବାରରେ ଲାଳନ ପାଳନ ହୋଇଥିବା ଝିଅ କଲ୍ୟାଣୀର ବିବାହ ଉପଲକ୍ଷେ ସୁନା ଅଳଙ୍କାର ଭେଟି ଦେବା ଆଶାରେ ତତ୍ପର। ଅଜାଣତରେ ନିଜ ଭାବିଜ୍ୱାଇଁକୁ ଘୋଟିଆ (ଡକାୟତି)ରେ ଶିକାର କରି ମାରିଦେବା ଏକ ବେଦନାକ୍ତ କାହାଣୀ। ପାଠ ପଢ଼ି ଶିକ୍ଷା ଦୀକ୍ଷାରେ ନିଜକୁ ଶିକ୍ଷିତ କରିଥିବାରୁ ସରଳା ଲୋଧା ବାଳିକା କଲ୍ୟାଣୀ ଏତେ ବଡ ବିପତ୍ତିକୁ ଧୈର୍ଯ୍ୟ ଓ ସାହସିକତା ସହ ସାମ୍ନା କରି ଦେଶ ଓ ଜାତିର କଲ୍ୟାଣ ପାଇଁ ଲୋଧା ଜାତିକୁ ଘୋଟିଆରୁ (ଡକାୟତି) ନିବୃତ କରାଇବା ସଙ୍ଗେ

ସଙ୍ଗେ ନିଜର ନିହତ ପ୍ରେମିକ ସ୍ୱଦେଶ ନାମରେ ବାଳାଶ୍ରମ କରି ଅଶିକ୍ଷିତ ଅନାଥ ତଥା ଉତ୍ସାହୀ କୋମଳମତି ବାଳକବାଳିକାଙ୍କୁ ଉପଯୁକ୍ତ ଶିକ୍ଷାଦେଇ ଜୀବନର ଦିଗ୍‌ଦର୍ଶନ ଦେବା ବାସ୍ତବିକ୍ ଏକ ଉତ୍ସର୍ଗୀକୃତ ଆଦର୍ଶ ଜୀବନର ନମୁନା। ଏକ ସରଳା ଶିକ୍ଷିତ ଲୋଧା ତରୁଣୀର ଜୀବନ କାହାଣୀକୁ ନେଇ ରଚିତ 'ରକ୍ତର ରଙ୍ଗ'ରେ ଗାମ୍ଭୀର୍ଯ୍ୟ ସାଙ୍ଗକୁ ଲୋଧା ଜାତିର ବହୁ ବିଚିତ୍ର ଜୀବନଧାରା ପାଠକଙ୍କୁ ନିଶ୍ଚୟ ଆନନ୍ଦିତ ଓ ଉତ୍ସାହ ଦେବ- ଏଥିରେ ସନ୍ଦେହ ନାହିଁ। ଦୁର୍ଦ୍ଧର୍ଷ ହିଂସ୍ର ଲୋଧା ଜାତି ଉପରେ ଭାରତର ହୁଏତ ଉକ୍ତ ପୁସ୍ତକଟି ପ୍ରଥମ। ଏହା ପୂର୍ବରୁ ଅନ୍ୟ କେହି ଲୋକ ଲୋଧାମାନଙ୍କ ଉପରେ ଲେଖି ନ ଥିବାର କାରଣ ଔପନ୍ୟାସିକ ଶ୍ରୀ ମହାପାତ୍ର କହିଛନ୍ତି ତାଙ୍କ ପ୍ରକାଶନ ସମ୍ପର୍କରେ ସଂଳାପ ଭିତରେ। କାହାଣୀର ଉପସ୍ଥାପନା ଓ ବର୍ଣ୍ଣନା ଶୈଳୀ ଅତୀବ ଉଚ୍ଚକୋଟୀର ସତେ ଯେମିତି ଏହା ଏକ ଲୋଧା ରମଣୀର ଆତ୍ମଜୀବନୀ। ପୂର୍ବରୁ ଔପନ୍ୟାସିକ ଶ୍ରୀ ମହାପାତ୍ର ଜଙ୍ଗଲ ଜୀବନ ସମ୍ବନ୍ଧରେ ଅନୁଭୂତିମୂଳକ ତିନୋଟି ଉପନ୍ୟାସ ପ୍ରକାଶ କରିଛନ୍ତି ଓ ସାହିତ୍ୟ ପ୍ରେମୀଙ୍କ ନିକଟରେ ସେସବୁ ବିଶେଷ ଭାବେ ଆଦୃତ ହୋଇପାରିଛନ୍ତି। ରକ୍ତର ରଙ୍ଗ ଗାଉଁଲି ତଥା ଆଧୁନିକ ଜୀବନର ଏକ ସ୍ୱତନ୍ତ୍ର ସମ୍ମିଶ୍ରଣର ସ୍ୱାଦ ଦେବାରେ ଏକ ସଫଳ ସର୍ଜନା- ଏଥିରେ ଦ୍ୱିମତ ନାହିଁ।

ପ୍ରଚ୍ଛଦ ଚିତ୍ରଟି ବେଶ୍ ଭାବ ଉଦ୍ରେକକାରୀ। ଓଡ଼ିଆ ଉପନ୍ୟାସ, ସାହିତ୍ୟ ଭଣ୍ଡାରକୁ ରାଧାମୋହନ ମହାପାତ୍ରଙ୍କ ଏହା ନବମ ଭେଟି, ବହିଟି ଅନ୍ୟ ଭାଷା ବିଶେଷ କରି ହିନ୍ଦୀ କିମ୍ବା ଇଂରାଜୀରେ ଅନୁବାଦ ହୋଇପାରିଲେ ବେଶି ଆଦୃତ ହୁଅନ୍ତା। ଓଡ଼ିଆରେ ଯେ ବଳିଷ୍ଠ କାହାଣୀ ରହିଛି ତାହା ବାହାର ଜଗତ ଜାଣିପାରନ୍ତା। ବିଶେଷ କରି ଦୁର୍ଦ୍ଧର୍ଷ ଲୋଧାମାନଙ୍କ ଜୀବନ ଉପରେ ରଚିତ ରକ୍ତର ରଙ୍ଗର କାହାଣୀକୁ ନେଇ ଚଳଚ୍ଚିତ୍ରଟିଏ କଲେ ଜନମାନସରେ ବହୁ ପ୍ରଶଂସିତ ହୋଇ ପୁରସ୍କାର ପାଇବା ପାଇଁ ଯୋଗ୍ୟ ବିବେଚିତ ହୁଅନ୍ତା।



***ଧରିତ୍ରୀ, ରବିବାର, ଛୁଟିଦିନ, ତା ୩୦.୦୫.୧୯୯୮***
***ଲୁହ ଓ ଲୁହର ଲିପିରେ 'ଲୋଧା' ଜାତିର ଜୀବନଚରିତ***

ବାରିପଦାରେ ଜଣେ ପଦସ୍ଥ, ସମ୍ଭ୍ରାନ୍ତ, ଭଦ୍ରବ୍ୟକ୍ତି ରଜନୀରଞ୍ଜନ ପଟ୍ଟନାୟକଙ୍କ ଏକମାତ୍ର ଅଲିଅଳି କନ୍ୟା କଲି ବା କଲ୍ୟାଣୀର ଆତ୍ମକଥନରୁ ଆରମ୍ଭ ହୋଇଛି 'ରକ୍ତର ରଙ୍ଗ' ଉପନ୍ୟାସ। ମାତ୍ର ଏହା ଯଦି କେବଳ 'କଲ୍ୟାଣୀ' ନାମ୍ନୀ ଝିଅଟିର ଜୀବନ କଥା ହୋଇଥାଆନ୍ତା ତାରି ସ୍ୱପ୍ନ ଓ ସଂସାରର ଚିତ୍ରକୁ ବହନ କରୁଥାଆନ୍ତା, ତେବେ ଏ ସମ୍ପର୍କରେ ଆଲୋଚନା କରିବାର ବିଶେଷ ଆବଶ୍ୟକତା ମୁଁ ଅନୁଭବ କରି ନ ଥାଆନ୍ତି। ମାତ୍ର ଏଇ ଝିଅଟିର ଜୀବନ ଗାଥା ସହିତ ଜଡିତ ହୋଇ ରହିଛି ଆମ ଓଡିଶାର ଏଭଳି ଏକ ସମ୍ପ୍ରଦାୟ ତଥା ଜନଜାତିର ଜୀବନ ବୃତ୍ତାନ୍ତ, ଯାହା ଉପରେ ବିଶେଷ ଆଲୋଚନା ବା ଆଲୋକପାତ ଆମ ସାହିତ୍ୟରେ ସମ୍ଭବ ହୋଇ ନ ଥିଲା। ସମ୍ଭବତଃ ପ୍ରଥମଥର ପାଇଁ ଔପନ୍ୟାସିକ ରାଧାମୋହନ ମହାପାତ୍ର ଏଭଳି ଏକ ଅନାଲୋଚିତ ତଥା ଅନାଲୋକିତ ବନବାସୀର ଜୀବନଚର୍ଯ୍ୟାକୁ ଆମ ସମ୍ମୁଖରେ ଉପସ୍ଥାପିତ କରିବାର ଅଭିନନ୍ଦନୀୟ ସାରସ୍ୱତ କାର୍ଯ୍ୟ ସମ୍ପାଦନ କରି ଆମମାନଙ୍କର ଧନ୍ୟବାଦର ପାତ୍ର ହୋଇଛନ୍ତି। ତାଙ୍କର ଏ ସୃଜନ ପ୍ରୟାସ ପୁଣି କେବଳ ଇତିହାସର ନଥିପତ୍ରକୁ ଆଧାର କରି ନୁହଁ, ବରଂ ପ୍ରତ୍ୟକ୍ଷ ସମ୍ପର୍କାନୁଭୂତି ସମ୍ବଳିତ। ଆରମ୍ଭରୁ ପ୍ରକାଶନ ସମ୍ପର୍କରେ ପଦେ କହିବାକୁ ଯାଇ ଔପନ୍ୟାସିକ ନିଜେ କହିଛନ୍ତି, 'ସେମାନଙ୍କୁ ସାକ୍ଷାତ୍ କରିବା କୌଣସି ଲେଖକ ପକ୍ଷେ ସମ୍ଭବ ହୋଇ  ନଥାଏ- ଠିକ୍ ମଣିଷ ମୃତ୍ୟୁକୁ ସାକ୍ଷାତ କରିବା ଭଳି ଦୁଷ୍କର। କେତୋଟି ବିରଳ ମୁହୂର୍ତ୍ତରେ ସେମାନଙ୍କୁ ଭେଟିବାର ସୁଯୋଗକୁ ହାତଛଡା କରି ନ ଥିଲି।

ରଜନୀରଞ୍ଜନଙ୍କ ଝିଅ କଲ୍ୟାଣୀ ଦିନେ ଏକ ନୃତ୍ୟାନୁଷ୍ଠାନରେ ନୃତ୍ୟ ପରିବେଷଣ କରି ଘରକୁ ଫେରିବା ବାଟରେ ଅପହୃତା ହୋଇଯାଏ ଏବଂ ନିଜକୁ ଆବିଷ୍କାର କରେ ଘନଜଙ୍ଗଲ ଭିତରେ ଏକ ଡକାୟତ ସର୍ଦ୍ଦାରର ବସାରେ। ନା ଏ ଡକାୟତ ଝିଅଟି ଉପରେ କୌଣସି ଅତ୍ୟାଚାର କରିନାହିଁ। ବରଂ ତାକୁ ଝୁଅ ଝୁଅ ବୋଲି ସମ୍ବୋଧନ କରି ତାକୁ ଖୁଆଇ ପିଆଇ ସାନ୍ତ୍ୱନା ଦେବାରେ ଲାଗିଥାଏ ଏବଂ ଦାବି କରୁଥାଏ ଯେ, କଲ୍ୟାଣୀ ହେଉଛି ତା ନିଜ ଝିଅ 'ସତ କହୁଚି ଝୁଅ, ସତ ଛଡା ଅନ୍ୟ କିଛି ବୋଲିବି ନାଇଁ, ଆମେ ଲୋଧାଜାତି, କ୍ଷତ୍ରିୟ ଜାତି ମିରବୁ ପଛେ, ମିଛ କହିବୁ ନାହିଁ କେବେ।' (ପୃଷ୍ଠା-୩୩)

ହଁ କଲ୍ୟାଣୀର ଏକ ନାଟକୀୟ ଜୀବନ କାହାଣୀ ଭିତରେ ଲେଖକ ମେଲି ଦେଇଛନ୍ତି ଲୋଧା ଜାତିର ଇତିହାସ। ସେମାନଙ୍କ ବୃତ୍ତି ପ୍ରବୃତ୍ତି, ବାସ, ଖାଦ୍ୟପେୟ, ଚଳଣି, ଚାହାଣି ଓ ଚରିତ୍ରର ଚିତ୍ରାବଳୀ। ଆମର ମୂଳକରେ ଇତିହାସର କାହିଁ କେଉଁ ଆଦିମ କାଳରୁ, ଶିକ୍ଷା ସଭ୍ୟତାଠାରୁ ବହୁ ଦୂରରେ ଏବେ ମଧ୍ୟ ନିଜର ଭୟଙ୍କର ନିଶା ଓ ପେଷାକୁ ପାଥେୟ କରି ବଞ୍ଚିଥିବା ଏକ ଜନଜାତି ସହିତ ଆମର ପରିଚୟ। ପିଲାଦିନେ କଲ୍ୟାଣୀ ତା' ବୋଉଠାରୁ ଶୁଣିଥିଲା ଢଗଟିଏ- 'ହଳଦୀ

ମଥାମାଖି, ନରଣଗଡ଼ ପାରିହେଲେ କୁଟୁମ୍ବ ମୁହଁ ଦେଖାଦେଖି’। ଟିକିଏ ବଡ ହେଲାପରେ ଏଇ ଢ଼ଗର ଅର୍ଥ ମଧ୍ୟ ସେ ବୁଝିଥିଲା ବୋଉଠାରୁ- ଉତ୍ତର ବାଲେଶ୍ୱର ଓ ମୟୂରଭଞ୍ଜର ବହୁ ଲୋକ କୃଷି ବ୍ୟତୀତ ବେପାର ବଣିଜ କରି ଜୀବିକା ନିର୍ବାହ କରନ୍ତି। ବଣିଜ ପାଇଁ ସେମାନେ ବିହାରର ସିଂହଭୂମ ଓ ବଙ୍ଗଳାର ମେଦିନାପୁର ଅଞ୍ଚଳକୁ ଯାଇଥାନ୍ତି। ଗମନାଗମନର ସୁବିଧା ନଥାଏ। ଘୋର ଜଙ୍ଗଲ ଦେଇ ସେମାନେ ଶଗଡ କିମ୍ବା ପାଦରେ ଯା’ ଆସ କରନ୍ତି। ଭୟସଙ୍କୁଳ ଜଙ୍ଗଲ ରାସ୍ତା। ଲୋଧାମାନଙ୍କ ଦ୍ୱାରା ଲୁଣ୍ଠିତ ହୋଇଥାନ୍ତି ବଣିକମାନେ। ସେମାନଙ୍କ ଦୌରାତ୍ମ୍ୟ ଏକ ନିତିଦିନିଆ ଘଟଣା। ବିଦେଶରୁ ବଣିକ ଘରକୁ ନଫେରିଲା ଯାଏ ବଣିକାଣୀ ଘୋର ଆଶଙ୍କା ଓ ଉତ୍କଣ୍ଠାରେ କାଳକାଟେ। ବଣିକମାନେ ନରଣଗଡ (ଲକ୍ଷ୍ମଣନାଥ) ନ ପହଞ୍ଚିଲା ପର୍ଯ୍ୟନ୍ତ ଜୀବନ ନୁହେଁ ନିରାପଦ। ବଣିକ ଜୀବନ ଧରି ଫେରିଲେ ଯାଇ କୁଟୁମ୍ବ ପ୍ରାଣରେ ଜୀବନ ପଶେ (ପୃଷ୍ଠା-୩୪)

ଲୋଧାମାନେ କେତେ ଭୟଙ୍କର, ତା’ର ପ୍ରମାଣ ମିଳେ ଏଇ ପ୍ରବାଦରୁ। ଏମାନେ ନୃଶଂସ ନିଷ୍ଠୁର ପ୍ରକୃତିର। ସାକ୍ଷାତ ଯମ ସଦୃଶ। ଚୋରି କରନ୍ତି, ଡ଼କାୟତି କରନ୍ତି, ଖୁନ୍ କରନ୍ତି, ରକ୍ତରେ ହୋଲି ଖେଳନ୍ତି, ଜୀବନକୁ ହେୟ ମଣନ୍ତି, ମୃତ୍ୟୁକୁ ବେଖାତିର କରନ୍ତି। ଅପରାଧ ଏମାନଙ୍କ ପଣ୍ୟ, ଅପହରଣ ଏମାନଙ୍କ ପେଶା, ନୃଶଂସତା ଏମାନଙ୍କ ବୃତ୍ତି, ବେଉସା,ଏମାନଙ୍କ ନାଁ ଶୁଣିଲେ ଭୁବନ ଥରେ। ଲୋକେ ତାଟି,କବାଟ କିଳି ଘରେ ପଶନ୍ତି।

ପୂର୍ବେ ଲୋଧାମାନେ ତୀର, ତରବାରି ଧରି ଜଙ୍ଗଲରେ ଶିକାର କରୁଥିଲେ। କ୍ରମଶଃ ସେମାନଙ୍କ ସଂଖ୍ୟା ଓ ପରିବାର ବଢ଼ିବାରୁ ଅରଣ୍ୟ ଭିତରେ ବସ୍ତିକରି ରହିଲେ। ପୁରୁଷମାନେ ପଶୁପକ୍ଷୀ ଶିକାର କରି କାଳ କାଟିଲେ ଓ ମହିଳାମାନେ ଘରେ ରହି ବନଜାତ ଦ୍ରବ୍ୟ ସଂଗ୍ରହ କରି ଜୀବିକା ନିର୍ବାହ କଲେ। କାଳକ୍ରମେ ସେମାନଙ୍କ ଅଖଣ୍ଡ ଇଲାକାରେ ଅଣଆଦିବାସୀଙ୍କ ଅନୁପ୍ରବେଶ ଘଟିଲା। ବଣ ଠିକାଦାରମାନେ ଅବିଚାରିତ ଭାବେ କାଠକାଟି ଜଙ୍ଗଲ ପଦା କରିଦେଲେ। ପରିବାର ପୋଷିବା ପାଇଁ ଲଘୁ ବନଜାତ ଦ୍ରବ୍ୟ ଯଥେଷ୍ଟ ହେଲାନାହିଁ। ଜଙ୍ଗଲର ଅବକ୍ଷୟ ଯୋଗୁଁ ବନ୍ୟଜନ୍ତୁ ଶିକାର କରି ବଞ୍ଚିବା ମଧ୍ୟ କଷ୍ଟକର ହୋଇପଡ଼ିଲା। ପ୍ରକୃତିର ଦାନରୁ ବଞ୍ଚିତ ହୋଇ ପ୍ରଥମେ ସେମାନେ ‘ପେଟପୋଷ ନାହିଁ ଦୋଷ’ର ଆହ୍ୱାନରେ ବେଆଇନ ଗଛ କଟାରେ ଲିପ୍ତ ରହିଲେ। ବିଭିନ୍ନ କଟକଣା ଯୋଗୁଁ ତାହା ଅଯଥେଷ୍ଟ ହେବାରୁ ସହଜ ବିଦ୍ୟା ଚୋରି, ଲୁଣ୍ଠନ ଆଦି ଅସାମାଜିକ କାର୍ଯ୍ୟରେ ଲିପ୍ତ ରହିଲେ। ପୁରୁଷ ଲୋଧାମାନେ ଆଇନକୁ ଡରି ଜଙ୍ଗଲରେ ସମୟ ବିତାଇଲେ ଓ ସ୍ତ୍ରୀ ପିଲାମାନେ ବାଧ ହୋଇ ବସ୍ତିରେ ବାସକଲେ। ପୁରୁଷ ଲୋଧାମାନେ କ୍ରମଶଃ ଆଳସ୍ୟ ପରାୟଣ ଓ ଅପରାଧପ୍ରବଣ ହୋଇଉଠିଲେ ଓ ବଂଶାନୁକ୍ରମେ ତାହା ଏକ ଗୋଷ୍ଠୀଗତ ବ୍ୟାଧି ଭାବେ ତିଷ୍ଠି ରହିଲା। ଛୋଟ ଛୋଟ ଚୋରି, ଲୁଣ୍ଠନ ଓ ସିନ୍ଧି ଘଟଣାରୁ ଉଠିଲା ସୁପରିକଳ୍ପିତ, ସୁସଂଗଠିତ ଡକାୟତି ଅଭିଯାନମାନ। ଏହି ଅଭିଯାନକୁ ସେମାନେ ଘୋଟିଆ କହନ୍ତି। ପାରମ୍ପରିକ ଅସ୍ତ୍ର ବଦଳରେ ସେମାନେ ଅତ୍ୟାଧୁନିକ ମାରଣାସ୍ତ୍ରରେ ସଜ୍ଜିତ ହେଲେ। ସେମାନେ

ଆନ୍ତଃପ୍ରବେଶ ଡାକୁଦଳ ସହିତ ସମ୍ପର୍କ ରଖିଲେ। ଏଇ ଶାସନରେ ସେମାନଙ୍କୁ ଆୟତ୍ତ କରିବା ସମ୍ଭବ ହେଲାନାହିଁ । ସଂକ୍ଷେପରେ ଏଇ ହେଉଛି ଲୋଧାମାନଙ୍କର ଇତିହାସ।

ଏହିଭଳି ଦୁର୍ଦ୍ଧର୍ଷ, ଦୁର୍ଦ୍ଦମନୀୟ ଲୋଧାମାନଙ୍କ ଦ୍ୱାରା ଅପହୃତା ଉପନ୍ୟାସର ନାୟିକା କଲ୍ୟାଣୀ। ଉପନ୍ୟାସରେ ବର୍ଣ୍ଣିତ ଲୋଧାଙ୍କ ସର୍ଦ୍ଦାର ଜିଙ୍ଗା ଡିଗାର କହୁଛି କଲ୍ୟାଣୀକୁ ଯେ ସେ ତା' ଝିଅ। ଶୁଣେଇ ବସିଛି ତା' ଜୀବନର ଦୁଃଖଦ କାହାଣୀ। କିଭଳି ତାକୁ ପୁଲିସ ବାନ୍ଧି ନେଇଗଲା- ତା ସ୍ତ୍ରୀ, ଝିଅଟିକୁ ଜନ୍ମ ଦେଇ ମଲା ଏବଂ ଝିଅ ସରକାରୀ ତତ୍ତ୍ୱାବଧାନରେ ସହରର ଏକ ଅନାଥ ଆଶ୍ରମକୁ ଗଲା ଏବଂ ଘଟଣାପ୍ରବାହରେ ପାଳିତା କନ୍ୟା ହେଲା ରଜନୀରଞ୍ଜନଙ୍କର। ଜେଲ୍‌ରୁ ଫେରିବା ପରେ ଜିଙ୍ଗାର ସନ୍ତାପିତ ପିତୃହୃଦୟ ସନ୍ଧାନ କରି କରି ଶେଷରେ ପାଇଛି କଲ୍ୟାଣୀକୁ। ଏକ ନିଷ୍ଠୁର, ନୃଶଂସ ପଥର ହୃଦୟର ଡାକୁ ସର୍ଦ୍ଦାର ପ୍ରାଣରେ ପିତୃତ୍ୱର ସ୍ନେହ-ଶୀତଳ ଝରଟିଏ କିପରି ବହି ଚାଲିଥିଲା, ତା'ର ଏକ ଅପୂର୍ବ ଆଲେଖ୍ୟ ଆମେ ଦେଖିବକୁ ପାଉ 'ରକ୍ତର ରଙ୍ଗ' ଉପନ୍ୟାସରେ। ଏ ଉପନ୍ୟାସର ବଡ କଥା ହେଲା, କେବଳ ଲୁହ ଓ ଲହୁର ଲିପିରେ ଏହା ଶେଷ ହୋଇଯାଇନାହିଁ। ଲୋଧା ସମ୍ପ୍ରଦାୟର ସକଳ ଅପରାଧ ଭିତରେ ମଧ୍ୟ ନିଜକୁ ସୁଧାରିବାର ଶପଥ ଓ ଆଶାବାଦ ମୁଣ୍ଡ ଟେକିଛି। କଲ୍ୟାଣୀର ଜୀବନର ସର୍ବନାଶ ଭିତରେ ମଧ୍ୟ ସମାଜ, ସଂସ୍କାର ଓ ସ୍ୱଦେଶ କଲ୍ୟାଣର ଭାବ ଓ ଭାବନା ତା' ଭିତରେ ଫୁଟି ଉଠିଛି।

ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ, ବିହାର ପ୍ରଭୃତି ରାଜ୍ୟର ଦୁର୍ଦ୍ଧର୍ଷ ଡକାୟତମାନଙ୍କ ଜୀବନକାହାଣୀକୁ ଆଧାର କରି ବିଭିନ୍ନ ପ୍ରାନ୍ତୀୟ ଭାଷାରେ ଏବଂ ହିନ୍ଦୀ ସାହିତ୍ୟରେ ବହୁ ଗଳ୍ପ ଓ ଉପନ୍ୟାସ ରଚିତ ହୋଇଛି। ମାତ୍ର ଓଡିଶାର ଏହି ଦୁର୍ଦ୍ଧର୍ଷ ଜନଜାତିର ଇତିହାସକୁ ଭିତ୍ତିକରି ଓଡିଶାରେ ଏ ପ୍ରକାର ଉପନ୍ୟାସ ଲେଖା ହୋଇ ନ ଥିଲା। ପ୍ରଖ୍ୟାତ ଔପନ୍ୟାସିକ ଗୋପୀନାଥ ମହାନ୍ତି ତାଙ୍କ ପ୍ରଶାସନିକ ବୃତ୍ତିଗତ ଜୀବନରେ ଯଦି କୋରାପୁଟ ଭଳି ମାଳ ଅଞ୍ଚଳକୁ ଯାଇ ନ ଥାନ୍ତେ କିମ୍ବା ସେଠାକାର ଆଦିବାସୀଙ୍କ ସହିତ ଆତ୍ମୀୟତା ସ୍ଥାପନ କରି ନ ଥାନ୍ତେ, ତେବେ ଭାରତୀୟ ସାହିତ୍ୟ 'ପରଜା' ଭଳି କାଳଜୟୀ ଉପନ୍ୟାସ ସୃଷ୍ଟିରୁ ବଞ୍ଚିତ ହୋଇଥାନ୍ତା। ସେହିଭଳି ରାଧାମୋହନ ବାବୁଙ୍କ ବୃତ୍ତିଗତ ଜୀବନ ସହିତ ତାଙ୍କ ଲେଖନୀ ଓ ପ୍ରବୃତ୍ତିର ସମନ୍ୱୟ ଘଟି ନ ଥିଲେ ଆମେ ଆମ ଭାଷାରେ ଅଦିବାସୀ ଓ ଅରଣ୍ୟଭିତ୍ତିକ ଉପନ୍ୟାସ ପଢ଼ିବାର ସୁଯୋଗ ପାଇ ନ ଥାନ୍ତେ। କେତେବେଳେ ହାତରେ ବନ୍ଧୁକ ତ କେତେବେଳେ ହାତରେ ବଂଶୀ। ବନ୍ଧୁକର ବର୍ବରତା, ବଂଶୀର ଲଳିତ ଧ୍ୱନି, କେତେବେଳେ ପୁଣି ସଂଚରିଯାଏ ବହିର ପୃଷ୍ଠାରେ ପୃଷ୍ଠାରେ- ରାଧାମୋହନଙ୍କ କଲମର କାଳିରେ, କାହାଣୀର କଳ୍ପନାରେ।

- ଅଧ୍ୟାପକ ବିଶ୍ୱରଂଜନ

◆

*ଉତ୍କଳିକା, ରବିବାର(ଇନ୍ଦ୍ରଧନୁ), ତା ୨୮।୬।୧୮*

ପଚାଶ ଟଙ୍କା ମୂଲ୍ୟର ଏକଶତ ବାର ପୃଷ୍ଠାର ଉପନ୍ୟାସ 'ରକ୍ତର ରଙ୍ଗ', କିନ୍ତୁ ଅନ୍ୟାନ୍ୟ ଲେଖା ତୁଳନାରେ ସ୍ୱତନ୍ତ୍ରତା ଦାବି କରେ । ମାତ୍ର ଏକମାସ ମଧ୍ୟରେ ଏହି ଉପନ୍ୟାସଟି ସଂପୂର୍ଣ୍ଣ ହୋଇଥିବା ବୋଲି ଔପନ୍ୟାସିକ କହନ୍ତି । "ଯେଉଁମାନଙ୍କୁ ଉପଜୀବ୍ୟ କରି 'ରକ୍ତର ରଙ୍ଗ' ଲିଖିତ, ସେମାନେ ଅନାଲୋଚିତ ଅନାଲୋକିତ ରହି ଆସିଛନ୍ତି, ଲେଖକର ପରିସର ସ୍ପର୍ଶ କରି ନଥାନ୍ତି । ସେମାନଙ୍କୁ ସାକ୍ଷାତ କରିବା କୌଣସି ଲେକଙ୍କ ପକ୍ଷେ ସମ୍ଭବ ହୋଇନଥାଏ । ଠିକ୍ ମଣିଷ ମୃତ୍ୟୁକୁ ସାକ୍ଷାତ କରିବା ଭଳି ଦୁଷ୍କର । "କେତୋଟି ବିରଳ ମୁହୂର୍ତ୍ତରେ ସେମାନଙ୍କୁ ଭେଟିବାର ସୁଯୋଗକୁ ହାତଛଡା କରିନଥିଲି । ଉପନ୍ୟାସଟି ରଚନା କରିବାକୁ ପରିକଳ୍ପନା କରିଥିଲି ସେହି ଦିନଠୁଁ । ଆଶା କରୁଛି ଭିନ୍ନ ଏଇ ଏକ ଶ୍ୟାମାଙ୍ଗୀ ତରୁଣୀର ଦୁଃଖଦ କାହାଣୀ ପାଠକ ହୃଦୟକୁ ପୀଡ଼ିତ କରିବ, ସମାଜର ମଙ୍ଗଳ ରଚନା କରିବାରେ ସହାୟକ ହେବ" । ଔପନ୍ୟାସିକଙ୍କ ଏହି ଆଶାକୁ ପାଠକ ମହଲ ପୂରଣ କରିବେ ବୋଲି ଆମେ ଆଶା କରୁଛୁ ।

ମୟୂରଭଞ୍ଜ ଜିଲ୍ଲାର ଲୋଧା ସମ୍ପ୍ରଦାୟର ପୁରୁଷମାନେ ବଡ ଦୁର୍ଦ୍ଦାନ୍ତ ଓ ଅପରାଧପ୍ରବଣ ବୋଲି ସେମାନଙ୍କ ସାମାଜିକ ଇତିହାସ କହେ । ଯଦିଚ ପରିବାର ଗାଁରେ ଥାନ୍ତି, ସେମାନେ ଜଙ୍ଗଲରେ ଯାଯାବର ଭଳି ବାସ କରନ୍ତି ଓ କ୍ୱଚିତ ଗାଁକୁ ଆସନ୍ତି ରାତିରେ । ଘଟଣା ଚକ୍ରରେ ନବ ପ୍ରସବିତ ଲୋଧା କନ୍ୟା-ଶିଶୁଟିଏ ପୋଲିସ୍ ଏନ୍‌କାଉଣ୍ଟର ବେଳେ ନଜରକୁ ଆସେ ଯେତେବେଳେ ତା'ର ମା' ପ୍ରସବ ଜନିତ ମୃତ୍ୟୁରେ ପ୍ରାଣ ହରାଏ ଏବଂ ପୋଲିସ ନବଜାତ ଶିଶୁକୁ ହାସପାତାଳରେ ଭର୍ତ୍ତିକରନ୍ତି । ଏଇଠି ଘଟଣାର ମୋଡ଼ ବଦଳେ । ଶିଶୁର ଲାଳନପାଳନ ଦାୟିତ୍ୱ ଜଣେ ଓକିଲ ପରିବାର ଗ୍ରହଣ କରି କଲ୍ୟାଣୀ ନାମ୍ନୀ କନ୍ୟା ବୋଲି ପରିଚିତ କରାନ୍ତି । ସମାଜରେ ଯାହାର ଇତିହାସ ଗୁପ୍ତ ରଖାଯାଏ ଏବଂ ଘଟଣାର ଘୂର୍ଣ୍ଣବାୟୁରେ ପରିଶେଷରେ ଶିକ୍ଷିତା କଲ୍ୟାଣୀ ବିଧବା ହୁଏ ଏବଂ ତାର ମର୍ମାନ୍ତିକ ଜୀବନ କାହାଣୀ (ବକ୍ତବ୍ୟ ଢ଼ଙ୍ଗରେ) ଉପନ୍ୟାସର ଛାଞ୍ଚ ନାଟକୀୟ ଭାବେ ଗଢ଼ିଉଠେ । ଲୋଧାମାନଙ୍କ ଉପରେ 'ରକ୍ତର ରଙ୍ଗ' । ଏକ ନିଛକ ଡକ୍ୟୁମେଣ୍ଟାରୀ ବା ଦଲିଲ୍ ବୋଲିଯାଇପାରେ ।



***ପ୍ରଜାତନ୍ତ୍ର ସାପ୍ତାହିକୀ***
***ଜାନୁଆରୀ, ୧୧-୧୭, ୧୯୯୮***
***ରକ୍ତର ରଙ୍ଗ: ବଂଶୀରେ ସେ ଏକ କରୁଣ ସ୍ୱରଲିପି***

"ଶୈଶବକୁ ମୋର ଏୟା ଦେଖିବୁ ବୋଲି ମୋତେ ଡ଼ାକିଥିଲୁରେ ନିଷ୍ଠୁର ଶଇତାନ୍। ନିରୀହ ନର ରକ୍ତ ପିଇ କି ଲାଭ ମିଳିଲାରେ ରକ୍ତମୁଖା ଅସୁର ! ମୋର ତଣ୍ଟି ଚିପି ମାରିଦେ, ତୋ ଖଣ୍ଡାରେ ହାଣିଦେ, ତୋ ଗୁଳିରେ ସାଙ୍ଗେ ସାଙ୍ଗେ ଶେଷ କରିଦେରେ ଦୁଷ୍ଟ ଦୁରାଚାର। ମୁଁ କାହିଁକି ଏ ଦଶା ଦେଖିବାକୁ ବଞ୍ଚି ରହିଲିରେ ନରାଧମ। ତୋ କୁକର୍ମର ଫଳ ତୋ ଝିଅ ଉପରେ ପଡିଲାରେ ପାପିଷ୍ଠ। ଏମିତି ନୃଶଂସ କାଣ୍ଡ କରିବାକୁ ତୋ ହାତ ଗଲା କିପରିରେ ପାଷାଣ୍ଡ !... ମଣିଷକୁ ମାରି କଅଣ ତମେ ସବୁ ମୁଣ୍ଡେଇ କରି ନେବ ଏ ସଂସାରରୁ ପିଶାଚଗଣ ! ତମକୁ କେବଳ ନର୍କଯୋଗରେ ଦୁରାଚାରୀମାନେ ! ମୋତେ ମୋ ମଣିଷ ପାଖକୁ ନେଇଯାରେ ଖୁଣୀ !" (ପୃ-୧୦୧)। ମୁହଁକୁ ଲୁଗାକାନିରେ ଘୋଡାଇ ରଖି ଲୁହ ପରେ ଲୁହ ପୋଛି ଚାଲିଛି ହତଭାଗିନୀ 'କଲ୍ୟାଣୀ'। କାହ୍ନୁଚରଣଙ୍କ ଧୋବୀ ପରି କଲ୍ୟାଣୀ ଯେମିତି ଏକ ଅସରନ୍ତି ଲୁହର ଚିରସ୍ରୋତା ନଦୀ ପାଲଟି ଯାଇଛି। ସେ ନିଜେ କାନ୍ଦିଛି, ଅନ୍ୟମାନଙ୍କୁ କନ୍ଦାଇଛି। ତା'ଲୁହରେ ବଦଳିଯାଇଛି ଲୋଧାମାନଙ୍କ କୁକାର୍ଯ୍ୟ। କଲ୍ୟାଣୀର ଜୀବମନ ଆକଶରେ ଯେଉଁ ନାଟକୀୟ ଝଡ ସୃଷ୍ଟି ହୋଇଛି, ତାକୁ ହିଁ ନେଇ ରାଧାମୋହନ ମହାପାତ୍ର 'ରକ୍ତର ରଙ୍ଗ' ଉପନ୍ୟାସ ରଚନା କରିଛନ୍ତି। ଗୋପୀନାଥଙ୍କ 'ପରଜା' ପରି ଏଥିରେ ଅଛି ଆଦିବାସୀର ଗୋଟିଏ ସମ୍ପ୍ରଦାୟର ପରିବର୍ତ୍ତିତ ଜୀବନର ପ୍ରତିଛବି। ଔପନ୍ୟାସିକଙ୍କ ଦୃଷ୍ଟିକୁ ଆସିଥିବା ଅନେକ ଅନୁଭବ ଓ ଅନୁଭୂତି ହିଁ ତାଙ୍କ କଥାକୃତିର ଭାବବିନ୍ଦୁ ହୋଇଛି। ସେ ଅନେକ ଗଳ୍ପ ଓ ଉପନ୍ୟାସ ରଚନା କରିଥିଲେ ମଧ୍ୟ ଜଙ୍ଗଲ, ଜନ୍ତୁ ଓ ଆଦିବାସୀମାନଙ୍କ ଜୀବନଚର୍ଯ୍ୟାକୁ ପୁଞ୍ଜିକରି 'ଜଙ୍ଗଲର ଜମାନବନ୍ଦୀ', 'ବ୍ୟାଘ୍ର ନିନାଦ' ଓ 'ଅରଣ୍ୟ ଅତିଥି' ପ୍ରଭୃତି ଉପନ୍ୟାସ ରଚନା କରି ଯଶସ୍ୱୀ ହୋଇଛନ୍ତି। ଜୀବନର ବାସ୍ତବ ଅନୁଭୂତି ସହିତ ମାଟିର ମଣିଷ ପ୍ରତି ଅହେତୁକ ସହାନୁଭୂତି ତାଙ୍କ 'ରକ୍ତର ରଙ୍ଗ' ସୃଷ୍ଟିରେ ଝରିପଡିଛି। ଏଣୁ ବନ୍ଧୁକ ପରିତ୍ୟାଗ କରି ବଂଶୀ ଧରିଥିବା କଥାକାରଙ୍କ ବଂଶୀରେ କଲ୍ୟାଣୀ ନିଶ୍ଚୟ ଏକ କରୁଣ ସ୍ୱରଲିପି।

'ନନ୍ଦରାଜା' ଓ 'ଯଶୋଦା'ଙ୍କ ପରି 'ରଜନୀରଞ୍ଜନ' ଓ 'ଅନ୍ନପୂର୍ଣ୍ଣା' କୃଷ୍ଣଙ୍କ ପରି ପାଳି ଆଣିଛନ୍ତି 'କଲ୍ୟାଣୀ'କୁ। ସେମାନେ ତାକୁ ସ୍ନେହରେ 'କଲି' ବୋଲି ଡାକନ୍ତି। ସମୟକ୍ରମେ କଲିର ପାଠପଢ଼ା ସହ ନୃତ୍ୟଶିକ୍ଷା ଆରମ୍ଭ କରାଇଛନ୍ତି ପିତା ରଜନୀରଞ୍ଜନ। ତେଣେ ଜେଲ୍‌ରୁ ମୁକ୍ତି ପାଇ ପିତା ଜିଙ୍ଗା ଡିଗାର ପ୍ରଥମେ ଖୋଜିଛି ନିଜ ଝିଅକୁ। ଏହା ଜିଙ୍ଗା ଡିଗାରକୁ ଅଛପା ରହିନାହିଁ। ଝିଅ ରଜନୀରଞ୍ଜନଙ୍କ ଘରେ ଅଛି ଜାଣି ସେ ଚେଷ୍ଟା କରିଛି ତାକୁ ଦେଖା କରିବାକୁ। ଏହାର କିଛିଦିନ ପରେ ଜିଙ୍ଗା ଚକ୍ରାନ୍ତ କରି କଲ୍ୟାଣୀକୁ ନେଇଯାଇଛି ନିଜ ଘରକୁ। ନୃତ୍ୟ ଶିଖିବାକୁ ଆସିଥିବା କଲ୍ୟାଣୀ

ଏସବୁ କିଛି ବୁଝିପାରିନି, ବରଂ ଭୟରେ ବାପା, ବୋଉ ଦୁହିଁଙ୍କୁ ଖୋଜିଛି । ଜିଙ୍ଗାର ଝୁଅ ସମ୍ବୋଧନ କଲ୍ୟାଣୀକୁ ବଡ ଅଡୁଆରେ ପକାଇଛି, 'ତୁ ସର୍ଦ୍ଦାର ଜିଙ୍ଗା ଡିଗାରର ଝୁଅ। ତୋ ମା' ପୂରବୀ ପେଟରୁ ଜନମ ହେଇଚୁ।' ଜିଙ୍ଗାର ଏହି କଥା ହିଁ କଲ୍ୟାଣୀର ମନକୁ ଚହଲାଇ ଦେଇଛି। "ମୋ ଭଳି ଏକ ଅନୂଢ଼ା ସାମାନ୍ୟ ନାବାଳିକାର ପୁଣି ଏତେବଡ ରୋମାଞ୍ଚକର ଇତିହାସ। ମୁଁ ସତରେ କ'ଣ ଲୋଧା କନ୍ୟା!। ରଜନୀରଞ୍ଜନ ପଟ୍ଟନାୟକଙ୍କର ପାଳିତା ପୁତ୍ରୀ।।। ବୋଉ ଅନ୍ନପୂର୍ଣ୍ଣା ଗର୍ଭରୁ ଜନ୍ମିତ ଶିଶୁ ନୁହେଁ!।। (ପୃ-୬୦) ଏହାପରେ କଲ୍ୟାଣୀ ନିଜ ଘରକୁ ଫେରିଯିବାକୁ ଜିଙ୍ଗା ନିକଟରେ ଖୁବ୍ ଜିଦ୍ ଧରିଛି ଓ ଘରେ ପହଞ୍ଚି ପିତା ରଜନୀରଞ୍ଜନଙ୍କଠାରୁ ସମସ୍ତ ଘଟଣାର ସତ୍ୟତା ଉପଲବ୍ଧି କରିଛି। " ହୋଇପାରେ ମୁଁ ଲୋଧାକନ୍ୟା, କିନ୍ତୁ ଏମାନଙ୍କ ଦ୍ୱାରା ପ୍ରତିପାଳିତା। ସ୍ନେହର ସ୍ୱର୍ଗ ରାଜ୍ୟରେ ମୁଁ ବଢ଼ିଛି... ବିଶ୍ୱ ବ୍ରହ୍ମାଣ୍ଡରେ ଏପରି ବାପା ବୋଉ ବିରଳ ଯାହାର ତୁଳନା ପୁରାଣ ଯୁଗ ଗୋକୁଳର ନନ୍ଦରାଜା ଓ ଯଶୋଦା। ନନ୍ଦବାଳ ଗୋବିନ୍ଦଙ୍କ ପରି ମୁଁ ମଧ ଭାଗ୍ୟମତୀ- ମୋର ଦୁଇ ମାତା, ଦୁଇ ପିତା- ମୁଁ ଏମାନଙ୍କ ଦୁହିତା।" (ପୃ-୭୦) ବାସ୍ତବିକ୍ ଦୁର୍ଜନ ଜିଙ୍ଗା ଗର୍ଭରୁ ଜାତ ହୋଇଛି ବୁଦ୍ଧିମତୀ କନ୍ୟା- କଲ୍ୟାଣୀ। ଯେପରି ରାକ୍ଷସ ହିରଣ୍ୟକଶିପୁ ଗର୍ଭରୁ ଜନ୍ମ ନେଇଥିଲେ ଭକ୍ତ ପ୍ରହ୍ଲାଦ। ସ୍କୁଲ ଶିକ୍ଷା ପରେ କଲେଜରେ ପାଦ ଦେଇଛି କଲ୍ୟାଣୀ। ଆସିଛି ତା'ର ବାହାଘର ପ୍ରସ୍ତାବ। ସେ ନୃତ୍ୟ କଳାକେନ୍ଦ୍ରରେ ଯେଉଁ 'ସ୍ୱଦେଶ'ଙ୍କୁ ଜାଣେ ତାଙ୍କ ସହିତ ହିଁ ବାହାଘର ଠିକ୍ ହୋଇଛି ତାର। ଝିଅର ଏହି ବିବାହରେ ଅଜସ୍ର ସୁନା ଯୌତୁକ ଦେବବୋଲି ମନସ୍ଥ କରିଛି ଜିଙ୍ଗା ଡିଗାର। ବିବାହର ଆୟୋଜନରେ ଲାଗିପଡିଛନ୍ତି 'ରଜନୀରଞ୍ଜନ' ଓ 'ଅନ୍ନପୂର୍ଣ୍ଣା'। କୌଣସିଠାରେ ଶ୍ରୀକୃଷ୍ଣଙ୍କ ଫଟୋ ବା କ୍ୟାଲେଣ୍ଡର ଦେଖିଲାମାତ୍ରେ ସ୍ୱଦେଶ ମନେପଡିଯାନ୍ତି କଲ୍ୟାଣୀର। ନିର୍ବନ୍ଧ ପରେ 'କଲ୍ୟାଣୀ' ବାହାଘରର ଦିନ ପାଖେଇ ଆସିଛି। ମଙ୍ଗଳ ପାକ ପର୍ବରେ କଲ୍ୟାଣୀ ଆସିଛି, ତା'ର ଜନ୍ମସ୍ଥାନ 'ହାଣ୍ଡିଭଙ୍ଗା' ଗାଁ ବୁଲିଯିବାକୁ। କଲ୍ୟାଣୀ ଆସିଥିବାରୁ ଜିଙ୍ଗା ଡିଗାର ଆନନ୍ଦର ସୀମା ରହିନାହିଁ। ସେ ନାଚି ଉଠିଛି। ସେ 'ଘୋଟିଆ' (ଡକାୟତି ଅଭିଯାନ)ରୁ ଆଣିଥିବା ସବୁ ସୁନା ଗହଣାକୁ କଲ୍ୟାଣୀ ଆଗରେ ଗଦାଇ ଦେଇଛି। ସେଥିରେ 'କଲ୍ୟାଣୀ' ଲେଖାଥିବା ମୁଦିଟି ଦେଖି ହଠାତ୍ ଚମକି ପଡିଛି କଲ୍ୟାଣୀ। ଏହା ସ୍ୱଦେଶଙ୍କୁ ଦିଆଯାଇଥିବା ନିର୍ବନ୍ଧ ମୁଦି ବୋଲି ଚିହ୍ନିଛି ସେ। ଏହାପରେ ବିଷାଦ ବିଷଣ୍ଣତାର କଳା ବଉଦ ଘୋଟି ଆସିଛି କଲ୍ୟାଣୀର ଭାଗ୍ୟଚକ୍ରରେ। ସ୍ୱଦେଶ ଯେତେବେଳେ କଲିକତାରୁ ବାହାଘର ଜିନିଷ ଓ ବୁଲେଟ୍ ମୋଟରସାଇକେଲ କିଣି ଫେରିଛନ୍ତି, ସେତେବେଳେ ଏହି ଲୋଧାମାନେ ହିଁ ସ୍ୱଦେଶଙ୍କୁ ମାରି ଚିନାକାମ ମଣ୍ଡିତ ସୁନା ମୁଦିଟି ଛଡ଼ାଇ ଆଣିଛନ୍ତି। ଗତକାଲି ରାତିରେ ଘୋଟିଆରୁ ହିଁ ଏହା ମିଳିଛି ବୋଲି ଜିଙ୍ଗା କହିଛି । ଅଳ୍ପ ସମୟ ପୂର୍ବରୁ ବିବାହ ପୂର୍ବର ଆହ୍ଲାଦ ଓ ଉଲ୍ଲାସ ବିଷାଦର ଗଭୀର ସାଗରରେ ଭାସି ଯାଇଛି । ଜିଙ୍ଗା ଗଦେଇଥିବା ସବୁତକ ସୁନା ଗହଣା କେତେ ଲୋକଙ୍କ ରକ୍ତରେ ଭିଜି ନ ଥିବ ସତେ ? କଲ୍ୟାଣୀର କରୁଣ କ୍ରନ୍ଦନରେ ଥରିଛି ଭୂଇଁ, କମ୍ପିଛି ମେଦିନୀ, ବଣ

ପାହାଡରୁ ଶୁଭିଛି କ୍ରନ୍ଦନର ପ୍ରତିଧ୍ୱନି। ସେଇ ଧ୍ୱନିରେ ଏକାକାର ହୋଇଯାଇଛି, ସ୍ୱଦେଶ ବଂଶୀର କରୁଣ ସ୍ୱନ। ସ୍ୱଦେଶଙ୍କ ଶବ ସହିତ ଜଳିଛି ଲୋଧାର ଅପରାଧ ପ୍ରବଣତା। ଉପନ୍ୟାସର ଅନ୍ତିମ ପର୍ବରେ କଲ୍ୟାଣୀ ସ୍ୱଦେଶଙ୍କ ସ୍ମୃତିରେ ଗଢ଼ିଛନ୍ତି 'ସ୍ୱଦେଶ ଆଶ୍ରମ'।

ଉପନ୍ୟାସଟିରେ ଚରିତ୍ରର ବିପୁଳ ପଟୁଆର ହିଁ ଦେଖିବାକୁ ମିଳେ। ଅତି ଆପଣାର ମଣିଷ ପରି ଚରିତ୍ରଗୁଡିକ କଥାକାରଙ୍କର ଅତି ଆତ୍ମୀୟ ମନେ ହୁଅନ୍ତି। ଏଥିରେ ଚରିତ୍ରମାନେ କଥାବସ୍ତୁକୁ ସାବଲୀଳ ରୂପେ ପ୍ରକାଶ କରିବାରେ ଯେ କେବଳ ସହାୟକ ହୋଇଛନ୍ତି, ତାହା ନୁହେଁ, ପରନ୍ତୁ ଔପନ୍ୟାସିକ ଜୀବନାଦର୍ଶକୁ ବ୍ୟକ୍ତ କରିବାରେ ସେମାନେ ସମର୍ଥ ହୋଇଛନ୍ତି। ସ୍ୱାଭାବିକ ରୀତିରେ ତାଙ୍କ ଚରିତ୍ର ବଳୟ ଜୀବନର ବସ୍ତବ କ୍ଷେତ୍ରରେ ବିଚରଣ କରିଛନ୍ତି। ଅନେକତ୍ର ପ୍ରଥାସିଦ୍ଧ ସାମାଜିକ ବିଧିର ବନ୍ଧନରୁ ମୁକ୍ତି ପାଇଁ ସେମାନେ ଖୁବ୍ ବ୍ୟସ୍ତ ଓ ବିବ୍ରତ ହୋଇପଡିଛନ୍ତି। ଭାଷା ତାତ୍ତ୍ୱିକ ଦୃଷ୍ଟିରୁ ବିଚାର କଲେ ବହୁ ଦେଶଜ ଶବ୍ଦ ବ୍ୟବହାର ହୋଇଛି ଉପନ୍ୟାସରେ, ଯଥା ଭୁଣ୍ଡି (ନଡା), ନୋଟି(ପାଳ) ଓଲ (ଓଲୁଅ), ଝିଙ୍ଗା (ଜହ୍ନି), ଚାଖନ (ତୁଣ), ବାଇଁଶ (ଧନୁଶର), ବୂଲମ୍ (ଲୁଣ), ଓ ମରିଚି (ଲଙ୍କା ମରିଚ)। ସରଳ ବାକ୍ୟ, କଥୋପକଥନ ଭଙ୍ଗୀ, ନାଟକୀୟ ସଂଳାପ ଓ ଅର୍ଥପୂର୍ଣ୍ଣ ଉପସଂହାର ହେଉଛି ତାଙ୍କ ଉପନ୍ୟାସ ଶୈଳୀର ସ୍ୱାତନ୍ତ୍ର୍ୟ। ତାଙ୍କ ଉପନ୍ୟାସରେ ସବୁଠାରୁ ବଡ ସଫଳତା ହେଉଛି ଚାରିତ୍ରିକ ଦ୍ୱନ୍ଦ୍ୱର ଉପସ୍ଥାପନା। ଶ୍ରୀ ମହାପାତ୍ରଙ୍କ 'ରକ୍ତର ରଙ୍ଗ' ପାଠକ ପ୍ରାଣରେ କ୍ଷଣକ ଝଲକ ସୃଷ୍ଟି ପାଇଁ ଅଭିପ୍ରେତ ନୁହେଁ। ପରନ୍ତୁ ପାତରଅନ୍ତରମୟ ସମାଜ ଭିତରେ ଶୋଷଣ, ଉତ୍ପୀଡନର ଶିକାର ହୋଇ ବଞ୍ଚୁଥିବା ମଣିଷର ଜୀବନ କାହାଣୀ। ଏଥିରେ ଜୀବନର ସତ୍ୟ ଓ ମଣିଷର ଜୀବନ୍ତ ରୂପ ଅତି ଅନ୍ତରଙ୍ଗ ରୂପେ ପ୍ରକାଶିତ ହୋଇଛି।

- ଅମିତାଭ ବେହେରା



**ପ୍ରଗତୀବାଦୀ, ତା ୧୩.୦୨.୧୯୯୯**

**ଉପନ୍ୟାସର ଧାରାରେ ଏକ ନୂଆମୋଡ଼- ରାଧାମୋହନଙ୍କ 'ରକ୍ତର ରଙ୍ଗ'**

ମୟୂରଭଞ୍ଜ ଜିଲାର ଲୋଧା ନାମକ ଏକ ଆଦିବାସୀ ସମ୍ପ୍ରଦାୟର ସାମାଜିକ ଚଳଣୀ ଓ ଜୀବନ ଯାତ୍ରାର ଏକ ବିସ୍ତାରିତ ଚିତ୍ରକୁଶଳୀ କଳାକାର ରାଧାମୋହନଙ୍କ ତୂଳୀରେ ଉପନ÷ାସର ପ୍ରତିଟି ପୃଷ୍ଠାରେ ଅପୂର୍ବ ରଙ୍ଗରାଗରେ ଅଙ୍କିତ ହୋଇଛି । ଆଜିର ବସ୍ତୁନିଷ୍ଠ ଭୋଗବାଦୀ ବଣିକ ଦର୍ଶନରେ ଅନୁପ୍ରାଣିତ ମଣିଷଟି ଅର୍ଥ ଉପାର୍ଜନ ପଛରେ ସାରାଜୀବନ ଅଣନିଃଶ୍ୱାସୀ ହୋଇ ଧାଏଁ। ଅଥଚ ସେ ଅର୍ଜନ କରିଥିବା ବିପୁଳ ଧନସମ୍ପତ୍ତି ତା' ନିଜ ଜୀବନର ସ୍ୱାଭାବିକ ସୁଖଶାନ୍ତିର ଭଣ୍ଡାରକୁ ଅପହରଣ କରିନିଏ। ଏହି ସତ୍ୟର ଏକ ସ୍ଥୁଳଚିତ୍ର ରକ୍ତର ରଙ୍ଗ ଉପନ୍ୟାସରେ ଅଙ୍କିତ ହୋଇଛି।

ଓଡିଆ ସାହିତ୍ୟ ସାରସ୍ୱତ ସାଧନା ଜଗତରେ ଜଣେ ସଫଳ ଔପନ୍ୟାସିକ ଭାବେ ନିଜକୁ ପ୍ରତିଷ୍ଠିତ କରିପାରିଥିବା ରାଧାମୋହନ ମହାପାତ୍ର ୧୯୮୧ଠାରୁ ୧୯୯୭ ପର୍ଯ୍ୟନ୍ତ ବର୍ଷକୁ ଖଣ୍ଡିଏ କରି 'ଜଙ୍ଗଲର ଜମାନବନ୍ଦୀ', 'ବ୍ୟାଘ୍ର ନିନାଦ' ଓ 'ଅରଣ୍ୟ ଅତିଥି' ନାମରେ ଏକାଦିକ୍ରମେ ଯେଉଁ ତିନି ଖଣ୍ଡ ଜାଙ୍ଗଲିକ ଉପନ୍ୟାସ ପାଠକମାନଙ୍କ ନିକଟରେ ପରିବେଷଣ କରିଛନ୍ତି, ସେ ସମସ୍ତ ଉପନ÷ାସର ପ୍ରଧାନ ଉପଜୀବ୍ୟ ବିଷୟ ବସ୍ତୁ ହେଉଛି- ପଶୁ ମଧ୍ୟରେ ମାନବିକତାର ସନ୍ଧାନ। ପ୍ରାକ୍ ୧୯୯୪ କାଳର ଲିଖିତ ଉପନ୍ୟାସମାନଙ୍କ ଧାରାରେ ଶ୍ରୀ ମହାପାତ୍ର ଯେଉଁଳି ଏକ ପରିବର୍ତ୍ତନ ଆଣି ପଶୁଠାରେ ମାନବିକତା ପ୍ରସଙ୍ଗକୁ ଉପଜୀବ୍ୟ କରି ରଚନା ଆରମ୍ଭ କରିଥିଲେ ଏବେ ୧୯୯୭ ମସିହାରେ ପ୍ରକାଶିତ 'ରକ୍ତର ରଙ୍ଗ' ଉପନ୍ୟାସରେ ମଣିଷ ଭିତରେ ଥିବା ପାଶବିକତାକୁ ଉପଜୀବ୍ୟ କରି ନିଜ ଉପନ୍ୟାସ ଧାରରେ ପୁଣି ଏକ ନୂତନ ମୋଡ ସୃଷ୍ଟି କରିଛନ୍ତି। ଶହେ ବାର ପୃଷ୍ଠାର ଏହି ଉପନ୍ୟାସକୁ ଆରମ୍ଭ କରି ଏକା ନିଃଶ୍ୱାସରେ ପାଠ ଶେଷ କଲା ବେଳକୁ ଶ୍ରୀ ମହାପାତ୍ରଙ୍କ ପ୍ରତି ଅନେକ ଶ୍ରଦ୍ଧା ଓ ସମ୍ମାନ ଭାବ ଚେତନାକୁ ଆଚ୍ଛନ୍ନ କରି ସାରିଥିଲା । ପରିବେଷଣର ଶୈଳୀ କ୍ଷେତ୍ରରେ ଲେଖକଙ୍କଠାରୁ ଆଉ କିଛି ଅଧିକ ଆଶା କରାଯାଉଥିଲେ ବି ଉପନ୍ୟାସରେ ଜୀବନ୍ୟାସ ଲାଭ କରିଥିବା ପ୍ରସଙ୍ଗଗୁଡିକ ସାମ୍ପ୍ରତିକ ସାମାଜିକ ମୂଲ୍ୟବୋଧର ପରିପ୍ରେକ୍ଷୀରେ ବିଶେଷ ମହତ୍ତ୍ୱପୂର୍ଣ୍ଣ ମନେ ହେଲା।

ବାରିପଦା ସହରରେ ଏକ ଅଭିଜାତ ପରିବାରର ଏକମାତ୍ର ଗେଲ ବସରର ଝିଅ କଲ୍ୟାଣୀକୁ ଯେତେବେଳେ ଦଶ ବର୍ଷ ବୟସ ସେ ଲୋଧାମାନଙ୍କ ଦ୍ୱାରା ଅପହୃତ ହୁଏ ଓ ଜାଣିବାକୁ ପାଏ ଯେ ସେ ହେଉଛି ପ୍ରକୃତରେ ଲୋଧା ସର୍ଦ୍ଦାର ଜିଙ୍ଗାର ଜନ୍ମିତା କନ୍ୟା। ପାଳିତ ପିତାମାତାଙ୍କ ଅତୁଟ ସ୍ନେହ ବନ୍ଧନର ବଳୟ ମଧ୍ୟକୁ କଲ୍ୟାଣୀ ଫେରି ଆସିଲେ ବି ଜନ୍ମିତ ପିତା ଜିଙ୍ଗା ସହିତ ବି ତା'ର ସମ୍ପର୍କ ଗଢ଼ି ଉଠେ। କଲ୍ୟାଣୀର ବିବାହର କିଛି ଦିନ ପୂର୍ବରୁ ଜିଙ୍ଗା ତାକୁ ତା' ଘରକୁ ଡାକି ନିଏ ଓ ତା' ବାସଗୃହ ପଛପଟେ ପୋତାଥିବା ଗୋଟିଏ ହାଣ୍ଡି ବାହାର କରି ଅନେକଗୁଡିଏ ସୁନା ଗହଣା ଉପହାର ଦିଏ।

ତନ୍ମଧ୍ୟରୁ ନୂଆ ଚକ୍ ଚକ୍ କରୁଥିବା ନିଜର ନାମାଙ୍କିତ ଗୋଟିଏ ସୁନା ମୁଦି ଦେଖି କଲ୍ୟାଣୀ ଜାଣିପାରେ ଯେ ନିର୍ବନ୍ଧ ଦିନ ତା'ର ଭାବି ସ୍ୱାମୀ ହାତରେ ଏ ମୁଦିଟି ସେ ପିନ୍ଧାଇ ଦେଇଥିଲା। ପୂର୍ବଦିନ ରାତ୍ରିରେ ତା'ର ଭାବି ସ୍ୱାମୀ ହତ୍ୟା କରି ସେମାନେ ଏ ମୁଦିଟି ଅପହରଣ କରିବା କଥା ଜଣାପଡିଲା ପରେ ଏକ ପ୍ରଚଣ୍ଡ ପ୍ରତିକ୍ରିୟା ସୃଷ୍ଟି ହୁଏ। ବିବାହ ପୂର୍ବରୁ ବିଧବା ହୋଇଥିବା କଲ୍ୟାଣୀ ତା'ର ଅବଶିଷ୍ଟ ଜୀବନ କଟାଇବା ଲାଗି ଲୋଧା ତରୁଣ ତରୁଣୀମାନଙ୍କୁ ନେଇ ଆଧ୍ୟାତ୍ମିକତା ଓ ଶାସ୍ତ୍ର ଭିତ୍ତିରେ ଗଢ଼ି ତୋଳେ ଏକ ଆଶ୍ରମ। ଏଇ ସଂକ୍ଷିପ୍ତ ମନୋରମ କାହାଣୀକୁ ମାଧ୍ୟମ କରି ଉପନ୍ୟାସଟିର ରଚନା ଧୀର ମନ୍ଥର ଗତିରେ ଆଗେଇ ଯିବା ସଙ୍ଗେ ସଙ୍ଗେ ପାଠକକୁ ଶେଷ ପର୍ଯ୍ୟନ୍ତ ଏକ ନାଟକୀୟ ଉତ୍କଣ୍ଠା ମଧ୍ୟରେ ବାନ୍ଧି ରଖେ। ଶାନ୍ତିପୂର୍ଣ୍ଣ ଜୀବନ ନିର୍ବାହ କରିବା ଲୋଧା ସଂସ୍କୃତି ଓ ପରମ୍ପରାର ପରିପନ୍ଥୀ। ମଣିଷକୁ ନିର୍ବିକାର ହତ୍ୟା ଓ ଅନ୍ୟର ଉପାର୍ଜିତ ସମ୍ପତ୍ତିକୁ ଲୁଣ୍ଠନ କରି ରାତିକ ମଧ୍ୟରେ ହାତୀଏ କମାଉଥିବା ଏଇ ଲୋଧା ଜୀବନରେ ପାଏ କ'ଣ ? ଲୁଣ୍ଠିତ ପେଟିଏ ସୁନାର ବିସ୍କୁଟ ବଦଳରେ ସେ ସଂଗ୍ରହ କରେ ମାରଣାସ୍ତ୍ର, ବନ୍ଧୁକ ଆଉ ଗୁଳି; ଝାଟିମାଟି ଘେରା ଅପରିଚ୍ଛନ୍ନ କୁଡିଆ ଘର ଓ ଜଙ୍ଗଲର ନିଭୃତ ଘାଟି ତା'ର ବାସଗୃହ। ଶିକ୍ଷା, ସ୍ୱାସ୍ଥ୍ୟ, ମାନସିକ ଶାନ୍ତି କ'ଣ ସେ ଜାଣେନା। କଠୋର ନିର୍ମମତା, ଭୟ, ରାକ୍ଷସୀ କ୍ଷୁଧା ଓ ଆଳସ୍ୟପରାୟଣତା ଯାହାର ଜୀବନଧାରା, ତା' ପାଇଁ ସ୍ନେହ ଶ୍ରଦ୍ଧାର ନିବିଡ଼ ସମ୍ପର୍କ ଓ ନିରୁଦ୍‌ବିଗ୍ନ ସାମାଜିକ ପାରିବାରିକ ସୁଖୀ ଜୀବନର ସ୍ୱପ୍ନ, ଏକ ବିଡମ୍ବନା ମାତ୍ର। ସାମାନ୍ୟ ଅସ୍ପଷ୍ଟ ହେଲେ ବି ଏହି ସତ୍ୟ ହେଉଛି 'ରକ୍ତର ରଙ୍ଗ' ଉପନ୍ୟାସର ବିଶ୍ୱମାନବ ପାଇଁ ଏକ ମହତ୍ତ୍ୱପୂର୍ଣ୍ଣ ବାର୍ତ୍ତା।

ଅଜ୍ଞାନ ପ୍ରସୂତ ମଣିଷ ଜୀବନର ଦୁଃଖ ଦୁର୍ଦ୍ଦଶାକୁ କେବଳ ଚିତ୍ରଣ କରିବାରେ ସୀମିତ ରଖି ଲେଖକ ତାଙ୍କର କର୍ତ୍ତବ୍ୟ ଶେଷ କରିନାହାନ୍ତି । ଲେଖକୀୟ ଚେତନାରେ ଏକ ପ୍ରଗାଢ଼ କର୍ତ୍ତବ୍ୟବୋଧର ସୂଚନା ଉପନ୍ୟାସର ଶେଷ କେଇ ପୃଷ୍ଠାରୁ ମିଳେ। ଉପନ୍ୟାସର ପରିସମାପ୍ତିର ଅବ୍ୟବହିତ ପୂର୍ବରୁ ଅବଶ୍ୟମ୍ଭାବୀ ଏକ ନାଟକୀୟ ଦୁର୍ଘଟଣାଜନିତ ପ୍ରଚଣ୍ଡ ମାନସିକ ଆଘାତ ହେତୁ ଜନ୍ମ ନେଇଛି ଯେଉଁ ନୂତନ ଜୀବନ ଅନ୍ୱେଷଣର ଧରା, ତାହାହିଁ ଶ୍ରୀ ମହାପାତ୍ରଙ୍କ ସୃଜନଶୀଳତାର ସ୍ୱାକ୍ଷର ବହନ କରେ। ଅନ୍ଧାରରୁ ଆଲୋକକୁ, ମୃତ୍ୟୁରୁ ଅମୃତକୁ ପଥ କଢ଼େଇ ନିଏ ଲେଖକ, ସ୍ରଷ୍ଟା ଔପନ୍ୟାସିକ ଶ୍ରୀ ମହାପାତ୍ର ତାଙ୍କର ଏହି କର୍ତ୍ତବ୍ୟ ପାଳନ କରିବାରେ ଅବହେଳା ପ୍ରଦର୍ଶନ କରିନାହାନ୍ତି। ତାଙ୍କରି ଭାଷାରେ:-

'ଆଧ୍ୟାତ୍ମିକତାର ତରଙ୍ଗ ଖେଳିଗଲା। ସାନ୍ଧ୍ୟ ପରିବେଶ ବାଙ୍‌ମୟ ଚେତନା ବାୟୁରେ ପୁରିଉଠିଲା। ହାତରେ ଅସ୍ତ୍ର ବଦଳରେ ଶାସ୍ତ୍ର ଧରିଥିବା ତରୁଣ ତରୁଣୀ ଲୋଧା ବାଳକ ବାଳିକାମାନେ ଲଳିତ କଣ୍ଠ ସ୍ୱରରେ ଭକ୍ତି ପ୍ରାର୍ଥନା କରୁଥିଲେ:-

'ଅଖିଳ ବ୍ରହ୍ମାଣ୍ଡ ପତି ମୋ ଜୀବନ ସ୍ୱାମୀ,
ହେ ପରମ ପିତାମାତା ପ୍ରଭୁ ଅନ୍ତର୍ଯ୍ୟାମୀ।'

ଶ୍ରୀମଦ୍ ଭାଗବତ ଗୀତରେ ଶ୍ରୀ ଭଗବାନ କହିଛନ୍ତି- ଯେଉଁମାନେ ଶାସ୍ତ୍ରବିଧି ନ ମାନି କାର୍ଯ୍ୟ କରନ୍ତି, ସେମାନଙ୍କୁ ସିଦ୍ଧି ମିଳେ ନାହିଁ। ସେମାନେ ସୁଖ ପାଆନ୍ତି ନାହିଁ କି ପରମଗତି ଲାଭ କରିପାରନ୍ତି

ନାହିଁ। ମଣିଷ ଯଦି ସିଦ୍ଧି ଚାହେଁ, ସୁଖ ଚାହେଁ, ତେବେ ଶାସ୍ତ୍ରବିଧି ଅବଲମ୍ବନ କରିବାକୁ ହେବ, ଭକ୍ତିକୁ ଆଶ୍ରୟ କରିବାକୁ ହେବ। କେବଳ ସୁନା ଓ ଟଙ୍କାରେ ମଣିଷ ଜୀବନକୁ ଯେଉଁମାନେ ମାପିବାକୁ ଯାଆନ୍ତି, ଠିକ୍ ଲୋଧାମାନଙ୍କ ଭଳି ସବୁ ଟଙ୍କା ସୁନାର ମାଲିକାନା ସତ୍ତ୍ୱେ ବି ମଣିଷ ଜୀବନର ଅସଲ ଅଭିଳଷିତ ବସ୍ତୁ ସୁଖ ଓ ଶାନ୍ତିଠାରୁ ସେମାନେ ଦୂରରୁ ଦୂରକୁ ଅପସରି ଯିବା ଅନିବାର୍ଯ୍ୟ। ଏହି ପରିପ୍ରେକ୍ଷୀରେ ଶ୍ରୀ ରାଧାମୋହନ ମହାପାତ୍ରଙ୍କ 'ରକ୍ତର ରଙ୍ଗ' ଉପନ୍ୟାସ ଏକ ସୃଜନଶୀଳ ସାହିତ୍ୟକୃତୀ ଭାବରେ ବିଶ୍ୱ ସାହିତ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନ ଦାବି କରେ।

ସମୀକ୍ଷା-ପବିତ୍ରାନନ୍ଦ ମହାନ୍ତି





***ସମାଜ, ୩୧.୦୫.୧୯୯୮***
***ରକ୍ତର ରଙ୍ଗ (ଉପନ୍ୟାସ)***

ବିନ୍ୟଜନ୍ତୁଙ୍କ ଉପରେ ଅନେକ ସଫଳ ପୁସ୍ତକର ସ୍ରଷ୍ଟା ରାଧାମୋହନ ମହାପାତ୍ରଙ୍କ କଲମରୁ ଏବେ ପ୍ରକାଶ ଲାଭ କରିଛି ତାଙ୍କର ନବମ ଉପନ୍ୟାସ 'ରକ୍ତର ରଙ୍ଗ'। ପ୍ରାକ୍ ନବତି କାଳରେ ତାଙ୍କ ଲିଖିତ ଉପନ୍ୟାସ ଧାରରେ ଶ୍ରୀ ମହାପାତ୍ର ଯେଭଳି ଏକ ପରିବର୍ତ୍ତନ ଆଣି ପଶୁଠାରେ ମାନବିକତା ପ୍ରସଙ୍ଗକୁ ଆଧାରକରି ରଚନା ଆରମ୍ଭ କରିଥିଲେ ଏବେ ପ୍ରକାଶିତ 'ରକ୍ତର ରଙ୍ଗ' ଉପନ୍ୟାସରେ ମଣିଷ ଭିତରେ ଥିବା ପାଶବିକତାକୁ ଉପଜିବ୍ୟ କରି ନିଜ ଉପନ୍ୟାସ ଧାରାରେ ଏକ ନୂତନ ମୋଡ ସେ ସୃଷ୍ଟି କରିଛନ୍ତି। ଓଡିଶାର ମୟୂରଭଞ୍ଜ ଜିଲାର ଲୋଧାନାମକ ଏକ ଆଦିବାସୀ ସମ୍ପ୍ରଦାୟର ସାମାଜିକ ଚଳଣି ଓ ଜୀବନଯାତ୍ରାର ଏକ ବିସ୍ତାରିତ ଚିତ୍ର ଉପନ୍ୟାସରେ ବର୍ଣ୍ଣିତ ହୋଇଛି। ଅନୁଭବ ଉପରେ ପର୍ଯ୍ୟବସିତ ଏହି ଉପନ୍ୟାସଟି ପାଠକଙ୍କ ଦ୍ୱାରା ଆଦୃତ ହେବା ଆଶା କରାଯାଏ।



ପୁସ୍ତକ ନାମ : ଓଲଟ ପାଲଟ

ପ୍ରକାଶକ : ପ୍ରତିଭା ମହାପାତ୍ର,

୧୪୭, ବୁଦ୍ଧେଶ୍ୱରୀ,

ଭୁବନେଶ୍ୱର-୬

ପ୍ରକାଶ କାଳ : ୫.୨.୨୦୧୨

ପୃଷ୍ଠା : ୧୧୦

ପ୍ରଚ୍ଛଦ : ଅସୀମ ବସୁ

ମୂଲ୍ୟ : ୮୦/-





‘ଓଲଟପାଲଟ’ ଉପନ୍ୟାସ ଉନ୍ମୋଚନ କରୁଛନ୍ତି ଧରିତ୍ରୀ ସଂପାଦକ ତଥାଗତ ଶତପଥୀ।
ତା.୫.୨.୨୦୧୨।

*ସର୍ବସାଧାରଣ- ୩୦-୩-୨୦୧୨*

ମନୋରଞ୍ଜନଧର୍ମୀ ସାମାଜିକ କ୍ଷୁଦ୍ର ଉପନ୍ୟାସ 'ଓଲଟପାଲଟ'ରେ ଲେଖକ ରାଧାମୋହନ ମହାପାତ୍ର ଏକ ଯୁଗୋପଯୋଗୀ ପୁସ୍ତକଟିଏ ଓଡିଆ ପାଠକଙ୍କୁ ଭେଟି ଦେଇଛନ୍ତି। ଉପନ୍ୟାସଟିରେ ସମୟର ସୁଅରେ ବିତିଯାଇଥିବା ଦିନମାନଙ୍କର ସ୍ମୃତିଚାରଣ କରାଯାଇଥିବାବେଳେ ଆଧୁନିକ ପ୍ରଯୁକ୍ତିବିଦ୍ୟାର ପ୍ରଚାର ଓ ପ୍ରସାରକୁ ଧ୍ୟାନରେ ରଖି ଉପନ୍ୟାସରେ ଏକ ସାମାଜିକ କଥାବସ୍ତୁକୁ ନିଖୁଣ ଶବ୍ଦ ସଂଯୋଜନାରେ ସଜାଇଛନ୍ତି ଲେଖକ। ୧୧ଟି ପରିଚ୍ଛେଦରେ ସଂକଳିତ ଉପନ୍ୟାସରେ ଅନେକ କୌତୂହଳ, ହାସ୍ୟରୋଳ ଓ ପ୍ରାସଙ୍ଗିକ ସାମାଜିକ ଚଳଣିକୁ ଚିତ୍ରିତ କଲାବେଳେ ଯେଉଁ ବାକ୍ୟ ବିନ୍ୟାସର ପ୍ରୟୋଗ କରିଛନ୍ତି ତାହା ପ୍ରଶଂସନୀୟ। ପାଠକଟିଏ ପୁସ୍ତକଟିକୁ ନିଜର ଫୁରୁସତ୍ ସମୟର ଏକ ନିଦା ଖୋରାକ୍ ଭାବେ ଉପଭୋଗ କରିପାରିବ, (ଦେଇପାରିବ ଉପହାର କୌଣସି ଏକ ସାମାଜିକ ବନ୍ଧନରେ ବାନ୍ଧି ହେଇ ପଡିଥିବା ବନ୍ଧୁବାନ୍ଧବଙ୍କୁ) । ଆଶା କରାଯାଏ ଏହି ପୁସ୍ତକଟି ଆଗାମୀ ଦିନରେ ଓଡିଆ ପାଠକବର୍ଗଙ୍କଠାରେ ବହୁଳ ଆଦୃତ ଓ ପ୍ରସାରିତ ହେବ।

ଏହି ପୁସ୍ତକର କୀୟଦଂଶ ଏହିପରି-

ପୃଷ୍ଠା ସଂଖ୍ୟା ୧୧୦: ସେ ଅବଶ୍ୟ ତୁମକୁ ବାହା ହେବା ପାଇଁ ଗଣ ବିବାହ ମଣ୍ଡପକୁ ନେଇଥିଲେ। କିନ୍ତୁ ଭୁଲବଶତଃ କାରବାର ଓଲଟପାଲଟ ହୋଇଗଲା। ଜାଣି ଜାଣି କେହି ଭୁଲ କରିନାହାନ୍ତି। ହିନ୍ଦୁ ବିବାହ ପ୍ରଥା କିନ୍ତୁ ଅଣଲେଉଟା। ଥରେ ବେଦୀରେ ବସି ବାହା ହେଇଗଲା ପରେ ସବୁ ସରିଯାଇଥାଏ। ସ୍ୱାମୀକୁ ଗ୍ରହଣ କରାଯାଏ। ପରିସ୍ଥିତିର ବିଚାରକୁ ନେଇ ନିୟିତର ରାୟକୁ ମାନିନେବା ଧର୍ମର କାମ ବୋଲି ଭାବିବା ଉଚିତ । ବିଚ୍ଛେଦ କାହିଁକି ? ଚିନ୍ତା କର - କହିଲେ ବିଚାରପତି। "ଚିନ୍ତା କରିବି, ଯଦି ମୋ ପ୍ରିୟତମ ପ୍ରେମିକ ମୋତେ ଛାଡ଼ି ଆଉ କାହାକୁ ବାହା ହେବାକୁ ରାଜି ହେବେ"-ଉତ୍ତର ଦେଲା କନକ। ହିନ୍ଦୁ ବିବାହ କଥାର ଜଟିଳତା ଭିତରେ ଗଡିକରିଛି ଉପନ୍ୟାସର କଥାବସ୍ତୁ ଏବଂ ପରିଶେଷରେ ସମାଧାନର ସୂତ୍ର ଆଙ୍କିଛନ୍ତି ସଂସ୍କାରଧର୍ମୀ ଔପନ୍ୟାସିକ। ତାଙ୍କ ଉଦ୍ୟମ ପ୍ରଶଂସନୀୟ।



***'ଭିନ୍ନ ମଣିଷ-ଭିନ୍ନ ପୃଥିବୀ' ସାହିତ୍ୟ ଓ ସମାଲୋଚନାମୂଳକ ପତ୍ରିକା***
***ଜାନୁଆରୀ- ଫେବୃଆରୀ- ମାର୍ଚ୍ଚ, ୨୦୧୩***

ପ୍ରଖ୍ୟାତ ଓଡିଆ ଔପନ୍ୟାସିକ ଶ୍ରୀଯୁକ୍ତ ରାଧାମୋହନ ମହାପାତ୍ରଙ୍କର ଏ ଉପନ୍ୟାସଟିର ନାମ ହେଉଛି ଓଲଟପାଲଟ। ଔପନ୍ୟାସିକ ଶ୍ରୀଯୁକ୍ତ ମହାପାତ୍ରଙ୍କର ସରଳ, ତରଳ, ଓ ସାବଲୀଳ ଭାଷା, ମାପଚୁପ ବର୍ଣ୍ଣନା, ପାଠକ ମନର ଉତ୍କଣ୍ଠା ଓ ତୃଷ୍ଣାକୁ ବଜାୟ ରଖିବାର ଅପୂର୍ବ ସାମର୍ଥ୍ୟ- ତାଙ୍କର ଯେ କୌଣସି ଉପନ୍ୟାସକୁ ପାଠକ-ପାଠିକାମାନଙ୍କୁ କରିଥାଏ ଚମତ୍କୃତ ଓ ମନ୍ତ୍ରମୁଗ୍ଧ। ତାଙ୍କର ଅନବଦ୍ୟ ସୃଷ୍ଟି ସମ୍ଭାର ମଧ୍ୟରୁ ଓଡିଆ ଜାତିର ସ୍ୱାଭିମାନ ଓ ସ୍ୱର୍ଣ୍ଣିମ ଇତିହାସକୁ ବହନ କରୁଥିବା କାଳଜୟୀ ଉପନ୍ୟାସ 'ଭୂମିତୃଷ୍ଣା' ୨୦୦୦ ମସିହାରେ ଓଡିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛି। ପ୍ରଥମ ପ୍ରଭାତ, ଝରେ ଶ୍ରାବଣ ଝୁରେ ଫଗୁଣ, ତମସା ତୀର୍ଥ, ବ୍ୟାଘ୍ର ନିନାଦ, ଅରଣ୍ୟ ଅତିଥି, ଜଙ୍ଗଲର ଜମାନବନ୍ଦୀ, ରକ୍ତର ରଙ୍ଗ ଇତ୍ୟାଦି ହେଉଛି ତାଙ୍କର ଲେଖନୀ ନିଃସୃତ କେତୋଟି ଉପନ୍ୟାସ। ବହୁ ଉପନ୍ୟାସର ରଚୟିତା ଶ୍ରୀ ମହାପାତ୍ରଙ୍କର ଓଲଟ ପାଲଟ ହେଉଛି ଓଡିଆ ହିନ୍ଦୁ ପରିବାରର ରୀତି-ରିବାଜ, ପରମ୍ପରା ଓ ନୀତି-ନିୟମ ଇତ୍ୟାଦିକୁ ବହନ କରିଥିବା ଏକ ଯୁଗାନ୍ତକାରୀ ଉପନ୍ୟାସ। ସାମ୍ପ୍ରତିକ ସମାଜରେ ମଣିଷ ଜୀବନର ଦୁଇଟି ଗୁରୁତ୍ୱପୂର୍ଣ୍ଣ କଥା ହେଉଛି ବୃତ୍ତି ଓ ବିବାହ। କେବଳ ବୃତ୍ତି ଓ ବିବାହ ନୁହେଁ ବରଂ ପ୍ରେମ, ପ୍ରେମ ବିବାହରେ ଜାତିପ୍ରଥା ଓ ସାମାଜିକ ସ୍ଥିତିକୁ ନେଇ ଉଠୁଥିବା ନାନା ପ୍ରକାରର ବାଧା ଓ ବନ୍ଧନ, ଗ୍ରାମ୍ୟ ପାରିବାରିକ ଜୀବନର ପ୍ରତିଛବି, ବିଚ୍ଛେଦ ଓ ପୁନର୍ମିଳନ ଇତ୍ୟାଦିର ଦୃଶ୍ୟ ଔପନ୍ୟାସିକଙ୍କ ଦ୍ୱାରା ଅତି ଚମତ୍କାର ଭାବରେ ଉପନ୍ୟାସଟିରେ ଉପସ୍ଥାପିତ ହୋଇଛି।

ଉପନ୍ୟାସଟିର ମୁଖ୍ୟ ଚରିତ୍ର ହେଲେ ଦୁଇଜଣ ନାୟକ ଚନ୍ଦ୍ରକାନ୍ତ ଓ ମନୋଜ କୁମାର ଓ ଦୁଇଜଣ ନାୟିକା କନକଲତା ଓ ସରିତା। ଭୁବନେଶ୍ୱରର ମାରୱାଡି ମହିଳା ସମିତି ଜାତି, ଜାତକ ଓ ଯୌତୁକ ପ୍ରତିବନ୍ଧକ ହୋଇ ଠିଆ ହୋଇଥିବା ସନାତନ ଧର୍ମାବଲମ୍ବୀ ଅଭାବଗ୍ରସ୍ତ ପରିବାରର ଯୁବକ ଓ ଯୁବତୀମାନଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ କରିବା ପାଇଁ ଆୟୋଜନ କରିଥିବା ବିବାହ ଉତ୍ସବର ମଣ୍ଡପରେ ଦୈବାତ୍ ଭଣ୍ଡାରୁଣୀର ଅସାବଧାନତା ଯୋଗୁଁ ଚନ୍ଦ୍ରକାନ୍ତଙ୍କର ପ୍ରେମିକା ତଥା ଭାବିପତ୍ନୀ କନକଲତା ଇଞ୍ଜିନିୟର ମନୋଜକୁମାରଙ୍କ ପାଖରେ ଓ ମନୋଜକୁମାରଙ୍କ ପାଇଁ ଠିକ୍ କରାଯାଇଥିବା କନ୍ୟା ସରିତା ଚନ୍ଦ୍ରକାନ୍ତଙ୍କ ପାଖରେ ବସିଯାଇଛନ୍ତି ଓ ବୈଦିକ ରୀତିରେ ବ୍ରାହ୍ମଣ ବିବାହ କାର୍ଯ୍ୟ ସମାପନ କରିଛନ୍ତି । ବିବାହ ବେଦୀରେ କନ୍ୟା କନକଲତା ଓଢ଼ଣା ଦେଇ ବସିଥିବାରୁ ମନୋଜକୁମାରଙ୍କୁ ଏବଂ କନ୍ୟା ସରିତା ଆଗରୁ କେବେ ଦେଖି ନ ଥିବା ଯୋଗୁଁ ଚନ୍ଦ୍ରକାନ୍ତଙ୍କୁ ଦେଖି ବା ଚିହ୍ନି ପାରିନାହାନ୍ତି। ଘରେ ପହଞ୍ଚି ଚନ୍ଦ୍ରକାନ୍ତ ବାସର ରାତିର ବିଛଣାରେ ଜାଣିଛନ୍ତି ଯେ ସେ ଯାହାକୁ ବିବାହ କରି ଘରକୁ ଆଣି ସେ ତାଙ୍କର ପ୍ରେମିକା କନକଲତା ନୁହେଁ ଓ ଘର ଫେରନ୍ତା ବାଟରେ କନକଲତା ମନୋଜକୁମାରଙ୍କୁ

ଦେଖି ତାଙ୍କର ଚନ୍ଦ୍ରକାନ୍ତ କାହିଁ ବୋଲି ପ୍ରଶ୍ନ କରିଛନ୍ତି। ଇତି ମଧ୍ୟରେ ଚନ୍ଦ୍ରକାନ୍ତ ନୂଆ ଚାକିରିରେ ଯୋଗଦେଇ ବାହାରେ ରହିଛନ୍ତି ଓ ସରିତାଙ୍କୁ ପ୍ରତ୍ୟଖାନ କରିଛନ୍ତି । ମନୋଜକୁମାରଙ୍କ ଦ୍ୱାରା କନ୍ୟା ଅଦଳବଦଳ ଘଟଣା ସମ୍ବାଦପତ୍ରରେ ପ୍ରକାଶ ପାଇବା ପରେ ସେ କନକଲତାଙ୍କ ସନ୍ଧାନ ପାଇଛନ୍ତି । କିନ୍ତୁ ସରିତାଙ୍କର ସ୍ୱାମୀଭକ୍ତି, ଚନ୍ଦ୍ରକାନ୍ତଙ୍କ ବାପା ବୋଉଙ୍କୁ ଶାଶୂ ଶ୍ୱଶୁରର ଯଥାର୍ଥ ସମ୍ମାନ ଓ ସେବା, ଓଡ଼ିଆ ଘରର ଗୃହିଣୀ ପରି ଚାଷୀ ପରିବାରଟିର ଯାବତୀୟ କାମଧନ୍ଦା ସୂଚାରୁରୂପେ ସମ୍ପନ୍ନ କରି ଚନ୍ଦ୍ରକାନ୍ତଙ୍କ ପଥକୁ ଚାହିଁ ରହିଥିବା ସରିତାଙ୍କୁ ଚନ୍ଦ୍ରକାନ୍ତ ନିୟମାନୁଯାୟୀ ଛାଡପତ୍ର ଦେଇ କନକଲତାଙ୍କୁ ଗ୍ରହଣ କରିବାକୁ ଆଇନର ଆଶ୍ରୟ ନେଇଛନ୍ତି। କିନ୍ତୁ ସରିତା ଚାହୁଁଛନ୍ତି ଚନ୍ଦ୍ରକାନ୍ତଙ୍କୁ, କାରଣ ବୈଦିକ ରୀତିରେ ସେ ତାଙ୍କୁ ବିବାହ କରିଛନ୍ତି। ଚନ୍ଦ୍ରକାନ୍ତ ଚାହୁଁଛନ୍ତି କନକଲତାଙ୍କୁ କାରଣ ସେ ତାଙ୍କର ପ୍ରେମିକା, ପ୍ରାଣପ୍ରିୟା ଓ ଜୀବନ।

ଏ ଉପନ୍ୟାସଟିରେ ଔପନ୍ୟାସିକ କହିଦେବାକୁ ଚାହଁଛନ୍ତି ଯେ, ସ୍ୱାମୀ-ସ୍ତ୍ରୀଙ୍କର ସଂଯୋଗ ପୂର୍ବଜନ୍ମର ଫଳ ଓ ସମାଜରେ ପତ୍ନୀର ଆସନ ନିଶ୍ଚିତ ଭାବରେ ପ୍ରେମିକା ଆସନଠାରୁ ଉଚ୍ଚତର । ହିନ୍ଦୁରମଣୀ ପୁଣିଥରେ ଆଉ କାହାର ହାତଧରି ବିଭା ହେଲେ ସେ ପୁରୁଷ କେବେ ତାର ମଥାର ସିନ୍ଦୂର ହୋଇପାରେନା, ତାହା ବରଂ ସିନ୍ଦୂର ଭଳି ଦିଶୁଥିବା ନାଲି ଟିକିଲିଟିଏ ମାତ୍ର ହୋଇଥାଏ (ପୃଷ୍ଠା-୧୦୯)। ଏଠାରେ ଔପନ୍ୟାସିକଙ୍କର ଭାରତୀୟ ହିନ୍ଦୁ ବୈଦିକ ସଂସ୍କୃତି, ପରମ୍ପରା, ଧର୍ମବିଶ୍ୱାସ, ନୀତି-ନିୟମ ଓ ନିଷ୍ଠାକୁ ଇତ୍ୟାଦିକୁ ସମ୍ମାନ ଦେଇଛନ୍ତି।

ଅନ୍ୟ ସଂପ୍ରଦାୟରେ ଯାହା ଥାଉ ନା କାହିଁକି ହିନ୍ଦୁ ବିବାହ କିନ୍ତୁ ଅଣଲେଉଟା । ସକଳ ଚେଷ୍ଟା, ଇଚ୍ଛା ଆକାଂକ୍ଷା ଉଦ୍ୟମ ସତ୍ତ୍ୱେ ମଣିଷ ଯେତେବେଳେ ଅସଫଳ ହୁଏ, ଭାଗ୍ୟର ନିର୍ଦ୍ଦେଶକୁ ମାନିବାକୁ ବାଧ୍ୟ ହୁଏ- ଉପନ୍ୟାସ ଓଲଟ ପାଲଟର ସାରାଂଶ । ଔପନ୍ୟାସିକ କହିବାକୁ ଚାହୁଁଛନ୍ତି ଯେ, ଓଲଟ ପାଲଟ ଘଟଣା ଭଳି ସାମନ୍ୟ ତ୍ରୁଟିର ପରିଣାମ ସୁଦୂର ପ୍ରାସରୀ ହୋଇଥାଏ । ଯେମିତି ଘଟିଥିଲା ଚନ୍ଦ୍ରକାନ୍ତି ସରିତା, ମନୋଜକୁମାର କନକଲତା ଜୀବନରେ । ଏଠି ଔପନ୍ୟାସିକ ଭାରତ ଇତିହାସର ଏକ ଅନାଲୋଚିତ ପୃଷ୍ଠାର ଅବତାରଣା କରି କହିଛନ୍ତି ଯେ ଯୋଦ୍ଧା ସିରାଜଉଦ୍ଦିଲା ଗୋଡ଼ରେ ସାଞ୍ଜୁ ପିନ୍ଧିବାର କୌଶଳ ଜାଣିନଥିବାରୁ ଯୁଦ୍ଧରେ ବ୍ରିଟିଶ ଫୌଜ ଦ୍ୱାରା ନିହତ ହୋଇଥିଲେ । ଯୁଦ୍ଧ ଭୂମିରେ ସେ ପଛ ଘୁଞ୍ଚା ଦେବାବେଳେ ଅପର ପାର୍ଶ୍ୱ ହୁଗୁଳି ନଦୀ କୂଳରେ ତାଙ୍କ ସେନା ଛାଉଣି ଅପେକ୍ଷା କରିଥିଲେ ଓ ତାଙ୍କୁ ଉଦ୍ଧାର କରିବା ପାଇଁ ନୌକା ଅପେକ୍ଷା କରି ରହିଥିଲ । ସେ ନୌକାରେ ବସିବାକୁ ଯିବାବେଳେ ପଙ୍କପୂର୍ଣ୍ଣ ନଦୀ କୂଳରେ ତାଙ୍କ ସାଞ୍ଜୁ ପିନ୍ଧା ଗୋଡ଼ ପଶିଗଲା ଏବଂ ସେ ତହିଁରୁ ମୁକ୍ତ ହୋଇପାରିଲେ ନାହିଁ, ସାଞ୍ଜୁ ହୋଇଥିଲା ତାଙ୍କର କାଳ । ସାମନ୍ୟ ଅଜ୍ଞତା ଭଳି ଏମିତି ସମାନ୍ୟ ତ୍ରୁଟି ଇତିହାସର ଗତିପଥ ବଦଳାଇ ଦିଏ । ଯେମିତି ଘଟିଥିଲା ବିବାହ ବେଦୀରେ ଭଣ୍ଡଉଣୀର କନ୍ୟା ଅଦଳ ବଦଳ ଜନିତ ସାମନ୍ୟ ତ୍ରୁଟି ଯୋଗୁଁ ।

ଲେଖକ ଉପସ୍ଥାପନା କରିଛନ୍ତି ଯେ ଅଧୁନା ସମାଜରେ ଛାଡପତ୍ର ଓ ପୁନଃ ବିବାହ ଏକ ସାଧାରଣ ଘଟଣା ଯାହା ହିନ୍ଦୁ ସଂପ୍ରଦାୟର ଧର୍ମଭାବନା ଓ ଚନ୍ତାଧାରାର ପରିପନ୍ଥୀ । ସମାଜର ଏଭଳି ଏକ ସମସ୍ୟା ଉତ୍‌ଥାପନ କରି ପରିଶେଷରେ 'ଭାଗ୍ୟମ୍ ଫଳିତ ସର୍ବତ୍ରମ୍', ପୂର୍ନଜନ୍ମର ସଂପର୍କ, ତ୍ୟାଗ, ସମର୍ପଣ, ସେବା ମନବୃତ୍ତି ଆଦି ମହାନ୍ ଗୁଣକୁ ଆପଣାର କରି ସୁଖ ଶାନ୍ତିମୟ ଦାମ୍ପତ୍ୟ ପାରିବାରିକ ଜୀବନଯାପନ କରିବା ସ୍ୱର୍ଗତୁଲ୍ୟ ହୋଇପାରେ । ନବଦମ୍ପତିମାନେ ତଥା ପ୍ରେମି ଯୁଗଳ ଓଲଟପାଲଟ ଉପନ୍ୟାସରୁ ଶିକ୍ଷା କରିବା ଉଚିତ୍ । ଉପନ୍ୟାସ ଠାଏ ଠାଏ ଅଧୁନା ପ୍ରେମି ଯୁଗଳ ପାଇଁ ଅରୁଚିକର ବୋଧ ହେଲେ, ଘଟଣା ସ୍ରୋତ ଓ କଥନଭଙ୍ଗୀ ଅତୁଟ ରହିଛି, ଉତ୍କଣ୍ଠା ଭରି ରହିଛି ।

**- ବଟକୃଷ୍ଣ ମହାପାତ୍ର**
ସମ୍ପାଦକ, ୧୦, ରାମକୃଷ୍ଣ ଲେନ୍,
ଆଦମ୍ବାକାମ, ଚେନ୍ନାଇ-୬୦୦୦୮୮



***ସମାଜ, ୧୭.୦୪.୨୦୧୨***

ଅଭାବଗ୍ରସ୍ତ ଜୀବନର ପୀଡା ଭିତରେ ବି ସ୍ୱପ୍ନର ରଙ୍ଗ ଚହଲିଛି ଏଠି। ବର୍ଷା ଆଶଙ୍କାରେ ଆତଙ୍କିତ ଚତୁର୍ଥୀ ରାତ୍ରିର ଆକାଂକ୍ଷିତ ମୁହୂର୍ତ୍ତରେ ହିଁ ଅନ୍ୟ ଏକ ଦୁର୍ଘଟଣା ଘଟିଯାଇଛି। ଫଳରେ ସବୁ କିଛି ଓଲଟ ପାଲଟ ହୋଇଯାଇଛି। ଏହି ଓଲଟ ପାଲଟ ଭିତରେ ଗଣବିବାହର ଅଭାବନୀୟ ଦିଗଟି ଉନ୍ମୋଚିତ ହୋଇଛି ଉପନ୍ୟାସରେ । ବିଡମ୍ବିତ ଭାଗ୍ୟର ବର୍ଣ୍ଣନା, କେତେକ ସ୍ଥଳରେ ହାସ୍ୟରସର ମଧୁର ପ୍ରଲେପ, ପୁଣି ଘଟଣା ଓ ଚରିତ୍ରର ବାସ୍ତବ ଅଭିମୁଖୀ ସଂଯୋଜନା ଏହାର ପରିଣତି ପାଇଁ ଉତ୍କଣ୍ଠା ଭରିଦିଏ।



*ଖବର, ୦୧.୦୪.୨୦୧୨*

'ମାରୱାଡି ମହିଳା ସମିତି ଆନୁକୂଲ୍ୟରେ ସାମୂହିକ ବିବାହ ସମାରୋହ' ଶୀର୍ଷକ ଏକ ସମ୍ବାଦ ହିଁ କଥାଶିଳ୍ପୀ ରାଧାମୋହନ ମହାପାତ୍ରଙ୍କୁ 'ଓଲଟ ପାଲଟ' ଉପନ୍ୟାସ ରଚନା କରିବା ପାଇଁ ଖୋରାକ୍ ଯୋଗାଇଛି । ଅଭାବୀ ପରିବାରର କନ୍ୟାମାନଙ୍କ ପାଇଁ ସାମୂହିକ ବିବାହ ସମାରୋହ ଆୟୋଜନ କରି ଏକ ହମତ୍ ଉଦ୍ୟମ ଭିତରେ ବିଧିର ବିଧାନ କିପରି ବ୍ୟକ୍ତିଗତ ଇଚ୍ଛାକୁ ଏଡାଇ ଯାଇଛି ତାହା ଏହି ଉପନ୍ୟାସର କାହାଣୀ କହିଛି।

ଖୁବ୍ ଯତ୍ନର ସହ ନିଜର ଚଉଠି ଘର ସଜାଉଥିବା ଚନ୍ଦ୍ରକାନ୍ତ ନିଜର ପ୍ରିୟ ପରିଚିତ କନକ ସ୍ଥାନରେ ଆକସ୍ମିକ ଭାବେ ପାଇଛି 'ସରିତା'କୁ। ଗଣ ବିବାହରେ ଓଲଟ ପାଲଟ ହୋଇଯାଇଛି। ଚନ୍ଦ୍ରକାନ୍ତ ହାତ ଧରିଛି ସରିତାର ନିଜ ଅଜାଣତରେ, ଠିକ୍ ସେହିପରି ମନୋଜ ହାତ ଧରିଛି କନକର। ବାରିକିଆଣୀ ବିବାହ ପାଇଁ ଅପେକ୍ଷାରତା କନ୍ୟାମାନଙ୍କ ମେଳରୁ ଭୁଲ୍ ବେଦୀରେ ବସାଇଦେବାର ଫଳ ହୋଇଛି ଏପରି। କଳ୍ପନାତୀତ ଘଟଣାକୁ ସହଜରେ ଗ୍ରହଣ କରିବା ସ୍ଥିତିରେ କେହି ନାହାନ୍ତି । ମନୋଜ କନକକୁ ପ୍ରତିଶ୍ରୁତି ଦେଇଛି ଚନ୍ଦ୍ରକାନ୍ତକୁ ଖୋଜି ତା' ହାତରେ ଦେବ। ପରବର୍ତ୍ତିତ ପରିସ୍ଥିତିରେ ଚିତ୍ତ ସଂଘର୍ଷ ମଧ୍ୟରେ ଦିନ ଗଡ଼ିଚାଲିଛି । ସମସ୍ତେ ଭୁଲ୍ କେଉଁଠି ତାହା ବୁଝିପାରିଛନ୍ତି। ତେବେ ସ୍ରୋତ ଆଉ ଉଜାଣି ପ୍ରବାହିତ ହୋଇପାରିନାହିଁ। 'ଯାହା ହାଣ୍ଡିରେ ଚାଉଳ ଯିଏ ପକାଇଛି' ଉକ୍ତିକୁ ଯଥାର୍ଥ ବୋଲି ସ୍ରଷ୍ଟା ସ୍ପଷ୍ଟ କରିଦେବାକୁ ଚାହିଁଛନ୍ତି। ମନୋଜକୁ କନକ ଓ ଚନ୍ଦ୍ରକାନ୍ତକୁ ନେଇ ସରିତାଙ୍କ ଭବିଷ୍ୟତ ଗଢ଼ାଯାଇଛି।

ଚମତ୍କାର କଥାବସ୍ତୁ, ସରଳ ସାବଲୀଳ ବର୍ଣ୍ଣନା ଓ ବେଶ୍ ଆବେଗଧର୍ମୀ ପରିଣତି 'ଓଲଟ ପାଲଟ' ଉପନ୍ୟାସକୁ ପ୍ରଭାବଶାଳୀ କରିଛି। ଜଙ୍ଗଲର ଜମାନବନ୍ଦୀ, 'ବ୍ୟାଘ୍ର ନିନାଦ', 'ଅରଣ୍ୟ ଅତିଥି', 'ଭୂମିତୃଷ୍ଣା' ଉପନ୍ୟାସ ପରି ଏହି ଉପନ୍ୟାସ କଥାକାର ଶ୍ରୀ ମହାପାତ୍ରଙ୍କ ଆଉ ଏକ ଉଲ୍ଲେଖନୀୟ କୃତୀ ଭାବେ ପାଠକୀୟ ଶ୍ରଦ୍ଧା ଓ ସମ୍ମାନ ଲାଭ କରିବ।



*ସୂର୍ଯ୍ୟପ୍ରଭା: ୬-୫-୨୦୧୨*

ସାମ୍ପ୍ରତିକ ସମାଜର ବ୍ୟସ୍ତ ବହୁଳତା ଓ ଆଧୁନିକ ମଣିଷର ସମସ୍ତ ବିଷୟରେ ସଂକ୍ଷିପ୍ତ ସଂସ୍କାରଣ ଉପରେ ରଚିଶୀଳତା ଲେଖକଙ୍କୁ ଏହି ଅଭିନବ ଆଧୁନିକଧର୍ମୀ କାହାଣୀକୁ ଏକ କ୍ଷୁଦ୍ର ଉପନ୍ୟାସର କାୟା ମଧ୍ୟରେ ପ୍ରକାଶ କିରବାକୁ ପ୍ରେରଣା ଦେଇଛି। ଆଧୁନିକ ଯୁଗର ଏକ ଗଣବିବାହ ଅନୁଷ୍ଠାନ ମଧ୍ୟରେ ଅଜାଣତରେ ହୋଇଥିବା ବରକନ୍ୟାଙ୍କ ଏକ ଅଦଳବଦଳ ଘଟଣାକୁ ନେଇ ଅତ୍ୟନ୍ତ ଚିତ୍ତାକର୍ଷକ ଢଙ୍ଗରେ ଲେଖକ ଉପସ୍ଥାପନା କରିଛନ୍ତି ଏହି କାହାଣୀକୁ। କଥାବସ୍ତୁ, ଭାଷା, ଶୈଳୀ, ତଥ୍ୟ, ପରିସର ଏବଂ ସମସାମୟିକତା ଏହି ମନୋରଞ୍ଜନଧର୍ମୀ ସାମାଜିକ କ୍ଷୁଦ୍ର ଉପନ୍ୟାସକୁ ଖୁବ୍ ମନୋଜ୍ଞ କରିପାରିଛି। କାହାଣୀର ବର୍ଣ୍ଣନା ମଧ୍ୟରେ ବୁଦ୍ଧଙ୍କର ଜନ୍ମସ୍ଥାନ ବିତର୍କଠାରୁ ଆରମ୍ଭ କରି ୧୭୫୭ ମସିହାର ପଲାସୀ ଯୁଦ୍ଧରେ ସିରାଜୌଦ୍ଦଲାଙ୍କ ନିଜ ଗୋଡରୁ ସଞ୍ଜୁ ଖୋଲି ନ ଜାଣିବା ଭାରତ ଇତିହାସକୁ ଏକ ନୂଆ ମୋଡ଼ ଦେବା ଭଳି ଅନେକ ତଥ୍ୟ ଉପନ୍ୟାସଟିକୁ ଅତ୍ୟନ୍ତ ଆକର୍ଷଣୀୟ କରିପାରିଛି। ଆଶା, ପାଠକ ମହଲରେ ନିଶ୍ଚିତ ଭାବେ ବିଶେଷାଦୃତ ହେବ।



*ସମ୍ବାଦ: ୨୨-୪-୨୦୧୨*
*ପ୍ରକାଶ କାଳ : ୨୦୧୨*

ସାମୂହିକ ବିବାହ ସମାରୋହ, ଯେଉଁଠି ବରକନ୍ୟାଙ୍କ ଅନେକ ଯୋଡି ଉପସ୍ଥିତ ଥାଆନ୍ତି, ଏଭଳି ଗଣବିବାହ ଏବେ ଅନେକ ସ୍ଥାନରେ ଦେଖିବାକୁ ମିଳିଲାଣି। ତେବେ ଏହି ଗଣବିବାହ ସମୟରେ ଯଦି ମୁହଁ ଢାଙ୍କିଥିବା କନ୍ୟା ତା' ପାଇଁ ଠିକ୍ ହୋଇଥିବା ବରକୁ ବିବାହ ନ କରି ଅନ୍ୟ କାହାକୁ ବିବାହ କରିଯାଏ, କ'ଣ ହେବ ତା'ର ପରିସ୍ଥିତି ଆଉ ପରିଣତି ! ! ଏଭଳି ଏକ ପରିସ୍ଥିତି ଆଉ ପରିଣତିକୁ ନେଇ ଉପନ୍ୟାସଟିର କାହାଣୀ ଗତି କରିଛି । ଚନ୍ଦ୍ରକାନ୍ତ ଯାହାକୁ କନକଲତା ବୋଲି ଭାବି ବିବାହ କରିଥିଲା ସେ ଥିଲା ସରିତା। ତେଣୁ ଉଭୟଙ୍କ ଭିତରେ ସୁଖୀ ଦାମ୍ପତ୍ୟ ଜୀବନ ନ ଥିଲା। କଥା ଯାଇଥିଲା ଛାଡପତ୍ର ଯାଏଁ। ଏଭଳି ଓଲଟ ପାଲଟର କେଉଁ ନିଷ୍କର୍ଷରେ ପହଞ୍ଚିବେ ବିଚାରପତି ବୁଝିପାରୁ ନ ଥିଲେ। ଶେଷରେ ସେ କନ୍ୟାଙ୍କ ନିଷ୍ପତ୍ତି ଉପରେ ତାହା ଛାଡି ଦେଇଥିଲେ। ଉପନ୍ୟାସଟିରେ ରହିଛି ଏକ ନାଟକୀୟ ମୋଡ। କାହାଣୀଟି ପାଠକମାନଙ୍କୁ ବାନ୍ଧି ରଖିପାରିବ ବୋଲି ଆଶା କରାଯାଏ।






ପୁସ୍ତକ ନାମ : ଝରେ ଶ୍ରାବଣ ଝୁରେ ଫଗୁଣ

ପ୍ରକାଶକ : ପ୍ରତିଭା ମହାପାତ୍ର,
୧୪୭, ବୁଦ୍ଧେଶ୍ୱରୀ,
ଭୁବନେଶ୍ୱର-୬

ପ୍ରକାଶ କାଳ : ୩.୩.୧୯୮୮

ପୃଷ୍ଠା : ୪୦୮

ପ୍ରଚ୍ଛଦ : ଅସୀମ ବସୁ

ମୂଲ୍ୟ : ୫୫/-

***ପ୍ରଜାତନ୍ତ୍ର ସାପ୍ତାହିକୀ: ୧୯, ମେ- ୪ ଜୁନ୍ ୧୯୮୮***
***'ଫଗୁଣର ଝରିବାରେ ଝରା ଶ୍ରାବଣ ସ୍ମୃତିର ରୋମନ୍ଥନ'***

ପ୍ରକାଶିତ ୩୨ ପୃଷ୍ଠା ବ୍ୟାପୀ ଗଳ୍ପ "ଅଭିଳାଷର ଅନ୍ୟନାମ"ର ପରିବର୍ଦ୍ଧିତ ରୂପ ହେଉଛି ଉପନ୍ୟାସ 'ଝରେ ଶ୍ରାବଣ ଝୁରେ ଫଗୁଣ'। ଏହି ପରିବର୍ଦ୍ଧନ ପ୍ରକ୍ରିୟାରେ ସ୍ୱାଭାବିକ ଭାବେ ଔପନ୍ୟାସିକ ଶ୍ରୀ ରାଧାମୋହନ ମହାପାତ୍ର ଦୀର୍ଘ ବର୍ଣ୍ଣନାଶୈଳୀ, କେତେକ ଆକସ୍ମିକତା, କାହାଣୀର ଦିଗ ପରିବର୍ତ୍ତନ, ନୂତନ ସଂଯୋଜନାର ଆଶ୍ରୟ ନେଇଥିଲେ ବି ୪୦୮ ପୃଷ୍ଠା ବ୍ୟାପୀ ଏହି ଉପନ୍ୟାସଟି ଅସ୍ୱାଭାବିକ ଭାବେ ବିରକ୍ତିକର ବା ଅନୁକ୍ରଣ୍ଠିତ ହୋଇନି। ବରଂ ପରିବେଶ, ଚରିତ୍ର, ସାମାଜିକ ଚଳଣୀ ଓ ଚରିତ୍ରଗୁଡ଼ିକର ମାନସିକ କ୍ରିୟା-ପ୍ରକ୍ରିୟାର ଚିତ୍ରଣ ଜୀବନ୍ତ ଓ ଅତି ଆପଣାର ଭଳି ସ୍ୱାଭାବିକ ହେବା ଫଳରେ ଆରମ୍ଭରୁ ଶେଷଯାଏ ପାଠକର ପଠନାଗ୍ରହ ଅବ୍ୟାହତ ରହିପାରିଛି । କାହାଣୀର ଅବତାରଣା ଶୈଳୀ ଅପରିସୀମ କୌତୁହଳ ଓ ଉତ୍ସୁକତା ମଧ୍ୟରେ ପାଠକର ମନ ଓ ଆଖିକୁ ଶେଷ ପର୍ଯ୍ୟନ୍ତ ଆଗେଇ ନେବାରେ ସହାୟକ ହୋଇପାରିଛି।

ଉପନ୍ୟାସର ପ୍ରଥମାର୍ଦ୍ଧଟି ଏକ ଦୁର୍ଘଟଣାଜନିତ ଦୁଃଖ, ଅଶ୍ରୁ ଓ ଗ୍ଲାନି ମଧ୍ୟରେ ଯେଉଁଳି ବେଦନାହତ, ଦ୍ୱିତୀୟାର୍ଦ୍ଧର ନାଟକୀୟ ଆକସ୍ମିକତା ମଧ୍ୟରେ କାନ୍ଦିଲା ଶ୍ରାବଣକୁ ହସିଲା ଫଗୁଣରେ ପରିଣତ କରିବାର ଉତ୍କଣ୍ଠା ସୃଷ୍ଟି ଲାଗି ସେଇଭଳି ଏକ ସାର୍ଥକ ପଟ୍ଟଭୂମି। ବସ୍ତୁତଃ ଏକ ଟ୍ରେନ୍ ଦୁର୍ଘଟଣା ପରେ ଉପନ୍ୟାସର ନାୟିକା ଶ୍ରାବଣୀ ନାୟକ ଦେବକାନ୍ତଠାରୁ ବିଚ୍ଛିନ୍ନ ହୋଇଯିବା ପରେ ଯେଉଁ ଅକଥନୀୟ ଦୁଃଖ ଓ ଯନ୍ତ୍ରଣାର ଶିକାର ହୋଇଛି, ତା'ର ଅବସାନ ଘଟି ପୁଣି ତା' ଦାମ୍ପତ୍ୟ ଜୀବନର ସୁଖ, ଶାନ୍ତି ଓ ସୌହାର୍ଦ୍ଦ୍ୟ ଫେରି ଆସିଛି ଉପନ୍ୟାସର ଉପସଂହାର ପୃଷ୍ଠାଗୁଡ଼ିକରେ। ବିବାହ, ବିଚ୍ଛେଦ ଓ ପୁନର୍ମିଳନ, ଉପନ୍ୟାସର ଏହି ତିନୋଟି ମୁଖ୍ୟ ବିନ୍ଦୁରେ ଚତୁଃପାର୍ଶ୍ୱରେ ଯେଉଁ ଘଟଣାର ଉତ୍ତରୀ ସୃଷ୍ଟି ହୋଇଛି ସେଥିରେ ନାୟିକାର ସ୍ୱପ୍ନ, ଦୁଃଖ, ସଂଘର୍ଷ, ଯେଉଁଳି ସ୍ୱାଭାବିକ୍ ରୀତିରେ ପ୍ରକଟିତ, ବନ୍ଧୁ ବଞ୍ଚାଇବା ଲାଗି ନାୟକ ଦେବକାନ୍ତଙ୍କ ସଂଗ୍ରାମ ସେଇଭଳି ଦେଦୀପ୍ୟମାନ। ଏ ଉଭୟେ ମୁଖ୍ୟ ଚରିତ୍ର ଏବଂ ତାଙ୍କ ଚାରିପଟେ ଘୂରି ବୁଲୁଥିବା ଅନ୍ୟ ସହାୟକ ଚରିତ୍ରଗୁଡ଼ିକର ପରିକଳ୍ପନା ଓ ଚିତ୍ରଣ ଓଡ଼ିଆ ଘରର ଚଳଣୀ, ସଂସ୍କୃତି, ସାମାଜିକ ଛବି ଓ ଉତ୍ଥାନ-ପତନ ଦୃଷ୍ଟିରୁ ମନୋଜ୍ଞ ଓ ସ୍ୱାଭାବଧର୍ମୀ। ସେଇଭଳି ସେମାନଙ୍କର ଚିନ୍ତା ଓ ଚେତନାର ଦିଗ୍‌ବଳୟରେ ଲେଖକ ଯେଉଁ ଦର୍ଶନ, ନୀତି, ସଂସ୍କାର ଓ ପାରସ୍ପରିକ ସମ୍ପର୍କର ଆଲେଖ୍ୟ ପ୍ରଦାନ କରିଛନ୍ତି, ତା ପାଠକର ନିତ୍ୟପରିଚିତ ଓ ଅତି ଆପଣାର ହୋଇପାରିଛି । ଏ ଦୃଷ୍ଟିରୁ ଔପନ୍ୟାସିକଙ୍କର କଳାନୈପୁଣ୍ୟ ଯଥାର୍ଥରେ ପ୍ରଶଂସାର୍ହ। ତାଙ୍କର ସୃଷ୍ଟି ସ୍ୱତଃ ହୃଦ୍ୟ। ତାଙ୍କର ସାଧନା ଧନ୍ୟବାଦାର୍ହ। ଏହି ପରିପ୍ରେକ୍ଷୀରେ ତାଙ୍କର ବର୍ଣ୍ଣନାଶୈଳୀର ଚମତ୍କାରୀତା ମଧ୍ୟ ବେଶ୍ ଉପଲବ୍ଧ। ଏହି ଅନୁପମ ବର୍ଣ୍ଣନାଶୈଳୀ ମଧ୍ୟରେ

ଅନୁପମ ପରିଶେଷଯାଏ ଲମ୍ବିଯାଇଥିବା କାହାଣୀର ସାବଲୀଳତା ଓ ସାର୍ଥକ ପ୍ରଭାବ ହିଁ ଲେଖକଙ୍କ ସୃଷ୍ଟି ଧର୍ମର ପରମ ନୈପୁଣ୍ୟ ଅନୁବ୍ୟଞ୍ଜିତ। ଏହି ନୈପୁଣ୍ୟ ମଧ୍ୟରେ ଲେଖକଙ୍କର ଆଦର୍ଶ ମୂଲ୍ୟବୋଧ, ଗଭୀର ମନସ୍ତତ୍ତ୍ୱ ଓ ବହୁ ଶାସ୍ତ୍ରଦର୍ଶିତା, ସମୟ ସଚେତନତା ଯେଭଳି ଚିନ୍ତା-ଦ୍ୟୋତକ, ଚରିତ୍ର ସମୟ ପରିବେଶର ମାତ୍ରାଜ୍ଞାନ ସେହି ଭଳି ସୃଷ୍ଟିର ଶ୍ରୀବୃଦ୍ଧିକାରକ।

ଗଳ୍ପ ଓ ଉପନ୍ୟାସ ଉଭୟର ରଚନା କ୍ଷେତ୍ରରେ ଶ୍ରୀ ମହାପାତ୍ର ଜଣେ ସିଦ୍ଧହସ୍ତ ଶିଳ୍ପୀ। ଏହା ତାଙ୍କର ବହୁ ଗଳ୍ପ ଓ ପୂର୍ବରୁ ପ୍ରକାଶିତ ୪ଟି ଉପନ୍ୟାସ ଭଳି, 'ଝରେ ଶ୍ରାବଣ ଓ ଝୁରେ ଫଗୁଣ'ରେ ପ୍ରତିପାଦିତ ହୋଇପାରିଛି। ଏହି ସୁଖପାଠ୍ୟ ଓ ଚିନ୍ତାଗର୍ଭକ ଉପନ୍ୟାସଟି ଯେ ପାଠକଙ୍କ ଦ୍ୱାରା ନିଶ୍ଚୟ ଆଦୃତ ହେବ ଏଥିରେ ସନ୍ଦେହ ନାହିଁ। ପୁସ୍ତକ ଓ ତା'ର ମୁଖବନ୍ଧ ଲେଖକଙ୍କୁ ଜଣେ ନିରବଚ୍ଛିନ୍ନ ସାରସ୍ୱତ ସାଧକ ଭାବରେ ପରିଚିତ କରାଇପାରିଛି। ତାଙ୍କର ଏ ସାଧନା ଅଧିକ ଅଗ୍ରଗତି କରି ଜୟଶ୍ରୀ ମଣ୍ଡିତ ହେଉ।

- ଗୋବିନ୍ଦ ଚନ୍ଦ୍ର ଚାନ୍ଦ






ପ୍ରତିଶ୍ରୁତି ପ୍ରତିଷ୍ଠାନ, ବାରିପଦାଠାରେ ଉଦ୍‌ବୋଧନ ଦେବାବେଳେ ରାଧାମୋହନ।

ପୁସ୍ତକ ନାମ : ସତ୍ୟମ୍‌ଏବ

ପ୍ରକାଶକ : ପ୍ରତିଭା ମହାପାତ୍ର,
୧୪୭, ବୁଦ୍ଧେଶ୍ୱରୀ,
ଭୁବନେଶ୍ୱର-୬

ପ୍ରକାଶ କାଳ : ୫.୨. ୧୯୮୪

ପୃଷ୍ଠା : ୧୧୦

ପ୍ରଚ୍ଛଦ : ଉଦୟ ନାରାୟଣ ଜେନା

ମୂଲ୍ୟ : ୪୦/-






ବାରିପଦା ସାହିତ୍ୟ ସଂସଦରେ ସତ୍ୟମ୍ ଏବର ଉନ୍ମୋଚନ ଅବସରରେ।

***ସ୍ୱାକ୍ଷର***
***ସଂଖ୍ୟା- ଡିସେମ୍ବର, ୧୯୮୪***
***କୁକୁର ପ୍ରୀତିର ପରାଗ: ସତ୍ୟମ୍‌ଏବ***

ଏକ ଅଭୂତପୂର୍ବ ଘଟଣା। ସର୍ବେଶ୍ୱର ଓ ଚକ୍ରପାଣି ଦୁଇ ଅନ୍ତରଙ୍ଗ ବାଲ୍ୟବନ୍ଧୁ। ସର୍ବେଶ୍ୱର ଧାନଢ୍ୟ ବ୍ୟକ୍ତି ତଥା ଜମିଦାରଙ୍କ ପୁତ୍ର, ଦେହରେ, ପୋଷାକରେ ବୁନିଆଦିର ଛାପ। କିନ୍ତୁ ଚକ୍ରପାଣି ଜଣେ ସ୍କୁଲ ମାଷ୍ଟ୍ର ସାଧାରଣ ପରିବାରର ପୁତ୍ର। ଉଭୟଙ୍କର ବହୁ ବର୍ଷ ପରେ ସାକ୍ଷାତ ହୁଏ ଏବଂ ସର୍ବେଶ୍ୱର ଏକ ଶିକ୍ଷାନୁଷ୍ଠାନ ଗଢ଼ିବାକୁ ପ୍ରସ୍ତାବ ଦିଅନ୍ତି ଏବଂ 'ନବଜ୍ୟୋତି' ପ୍ରତିଷ୍ଠିତ ହୁଏ। ଉଭୟେ ଥିଲେ ଅବିବାହିତ। ଘନିଷ୍ଠତାର ସ୍ମାରକୀ ସ୍ୱରୂପ ଗୋଟିଏ ଦିନରେ ସେମାନଙ୍କର ବିବାହ ଅନୁଷ୍ଠିତ ହୁଏ ଏବଂ କଟକ ନିକଟସ୍ଥ ବିରୂପା ନଦୀ କୂଳରେ ଏକାଭଳି ଜାଆଁଳା ଭାଇ ପରି ଆଧୁନିକ ଶୈଳୀରେ ଲଗାଲଗି ହୋଇ ସୁଦୃଶ୍ୟ ମନୋରମ ବାସଗୃହ ତୋଳିବସନ୍ତି। କିନ୍ତୁ ଆଭିଜାତ୍ୟ ଓ ଅସହନଶୀଳତା ଜ୍ୱାଳାରେ ସଂକମ୍ରିତ ହୁଅନ୍ତି ସର୍ବେଶ୍ୱରଙ୍କ ସହଧର୍ମିଣୀ ସ୍ନେହଲତା ଏବଂ ସ୍ୱାମୀ ସର୍ବେଶ୍ୱରଙ୍କୁ ଚକ୍ରପାଣିଙ୍କ ପ୍ରତି କୂଟ-ଚକ୍ରାନ୍ତ କରନ୍ତି। ପରିଶେଷରେ ସଚ୍ଚୋଟ ଚକ୍ରପାଣି ଅନୁଷ୍ଠାନରୁ ବିତାଡିତ ହୁଅନ୍ତି। ସର୍ବେଶ୍ୱରଙ୍କ ମହାଡମ୍ବର ଜୀବନଶୈଳୀ ଯେତିକି ପରିବ୍ୟାପ୍ତ ହୁଏ, ଚକ୍ରପାଣିଙ୍କ ଆର୍ଥିକ ପରିସ୍ଥିତି ଶୋଚନୀୟ ହୋଇଉଠେ। କ୍ରମେ ଘୋର ଅର୍ଥାଭାବରେ ପଡନ୍ତି ଚକ୍ରପାଣି ଏବଂ ତିନୋଟି ପୁତ୍ରଙ୍କୁ ଶିକ୍ଷିତ କରାଇବାର ସମସ୍ୟାରେ ଘାଣ୍ଟି ହୁଅନ୍ତି। ତେବେ ସେମାନଙ୍କ ଶିକ୍ଷାରେ ବ୍ୟାଘାତ ନ ହେବା ପାଇଁ ଗୋଟିଏ ତେଜରାତି ଦୋକାନ କରି ପରିବାର ପୋଷନ୍ତି ଓ ପିଲାମାନଙ୍କ ଶିକ୍ଷା ଅବ୍ୟାହତ ରହେ।

ର୍ସେବଶ୍ୱର ବଡଲୋକି ବୁନିଆଦିର ପ୍ରତୀକ ସ୍ୱରୂପ ଏକ ଆଲ୍‌ସେସିଆନ୍ କୁକୁର ରଖିଥାନ୍ତି ଯାହାର ନାମ 'ଶେରା' ଯେକି ତାଙ୍କ ପ୍ରଭାତ ଭ୍ରମଣର ସାଥୀ ହୋଇଥାଏ । ଚକ୍ରପାଣିଙ୍କ ସାନପୁଅ କୋମଳମତୀ ଶିଶୁ 'ଟୁନା' ପଡୋଶୀ ମଉସା ସର୍ବେଶ୍ୱର ବାବୁଙ୍କ ଆଲ୍‌ସେସିଆନ୍ କୁକୁର ଭଳି ଗୋଟିଏ କୁକୁର ରଖିବାକୁ ଅଡିଧରିବସେ। ପିତାମାତା ତା'ର ଅଳିକୁ ଟାଳି ବସନ୍ତି। ଶିଶୁ ବା କାହୁଁ ବୁଝିବ ପରିବାରର ଆର୍ଥିକ ଦୁରାବସ୍ଥା। ସେ ସ୍କୁଲ ଫେରନ୍ତା ବାଟରୁ ମା'ଠୁ କ୍ଷୀର ଖାଉଥିବା ଏକ କୁକୁର ବଚ୍ଚା ଧରିଆଣି ଘରେ ପୋଷିବା ପାଇଁ ଜିଦ୍ ଧରିବସେ ଏବଂ କୁକୁର ଛୁଆକୁ ସେମାନେ ପାଳିବସନ୍ତି। ସେ ଥିଲା ଏକ କୁତ୍ତୀ ଯାହାର ନାମ ସେମାନେ ରଖିଲେ 'ଟିପା'। କ୍ରମଶଃ ଟିପା ଖୁବ୍ ହୃଷ୍ଟପୁଷ୍ଟ ହୋଇ ବଢ଼ି ଉଠେ ଓ ତା'ର ପରିପକ୍ୱ ବୟସ ଉପସ୍ଥିତ ହୁଏ। ପାଚେରି ସେପଟୁ ସର୍ବେଶ୍ୱରଙ୍କ 'ଶେରା' ଯେତେବେଳେ ଗୁରୁଗମ୍ଭୀର ଗର୍ଜନ କରି ଭୁକିଉଠେ, ଚକ୍ରପାଣିଙ୍କ 'ଟିପା' ତା'ର ସ୍ୱରକୁ ସମର୍ଥନ ଜଣାଇ ପାଚେରି ଏପାଖରୁ ବିଗୁଲ ବଜାଏ। ଅହର୍ନିଶି ଶେରା ଓ ଟିପା ନିଜ ନିଜ ପାଚେରି

ପରିସୀମା ଭିତରେ ଚହଳ ପକାଇଥାଆନ୍ତି। ଏହି ସ୍ୱର ମାଧ୍ୟମରେ ସେମାନଙ୍କ ବାର୍ତ୍ତା ବିନିମୟ ହୁଏ, ସଦ୍‌ଭାବ ଗଢ଼ିଉଠେ।

ଦିନେ ନିଯୁକ୍ତ କୁକୁରସେବକର ଅବହେଳାବଶତଃ ଶେରା ଫାଟକ ପାର ହୋଇ ବାହାରକୁ ଚାଲିଆସେ ଏବଂ ଏହି ସମୟରେ ମଧ୍ୟ ଟିପା ହତା ବାହାରକୁ ମଳତ୍ୟାଗ କରିବା ପାଇଁ ଚାଲି ଆସିଥିଲା। ଟିପାର ଋତୁ ସମୟ। ବିଦେଶୀ ଆଲ୍‌ସେସିଆନ୍ ସହିତ ଦେଶୀ କୁତ୍ତୀର ସଂଗମ ହୁଏ। ଏହି ଦୃଶ୍ୟ ଧନାଢ୍ୟା ସ୍ନେହଲତାଙ୍କ ଚକ୍ଷୁଶୀଳ ହୁଏ କଠୋର ଭାବେ। ତାଙ୍କ ଆଭିଜାତ୍ୟରେ ସାମାନ୍ୟ କୁତ୍ତା ଶେରାର କୁଠାରାଘାତ ! ଛାର କୁକୁର ଶତ୍ରୁର ଦେଶୀ କୁତ୍ତୀ ସହିତ ସଙ୍ଗୋପନ ସହବାସ ! ! ନା, ସେ ଏ ଅପମାନ ବରଦାସ୍ତ କରିପାରିବେ ନାହିଁ କଦାପି। ସ୍ୱାମୀ ସର୍ବେଶ୍ୱରଙ୍କୁ ତତ୍‌କ୍ଷଣାତ୍ ଟେଲିଫୋନ୍ କରନ୍ତି ଏବଂ ସର୍ବେଶ୍ୱର ସହସା ଆସନ୍ତେ, ଦେଖନ୍ତି ଶେରା ଇତି ମଧ୍ୟରେ ବାସଭବନକୁ ଫେରିଆସି ଜଣେ ଦୋଷୀ ଭଳି ପଲଙ୍କ ତଳେ ଆତ୍ମଗୋପନ କରିଛି ଏବଂ ସର୍ବେଶ୍ୱର ସଙ୍ଗେ ସଙ୍ଗେ ଅତୀବ ଉତ୍ତ୍ୟକ୍ତ ଓ ଅନ୍ଧ ହୋଇ ହିତାହତ ଜ୍ଞାନ ହରାଇ ତାଙ୍କ ପିସ୍ତଲ ବ୍ୟବହାର କରି ଶେରାର ଜୀବନ ଶେଷ କରନ୍ତି। କିନ୍ତୁ ଟିପା ଅନ୍ତଃସତ୍ତ୍ୱା ହୁଏ ଏବଂ ସେ ମାତ୍ର ଗୋଟିଏ ଅଣ୍ଡିରା ବଚ୍ଚା ପ୍ରସବ କରେ ଯାହାର ନାମ ରଖନ୍ତି 'ଟିପୁ'। ସେ ଠିକ୍ ଶେରାର ଅନୁରୂପ ଭଳି ବଢ଼ି ଉଠେ, ତା'ର ଭୁକା ମଧ୍ୟ ଶେରା ପରି ଯାହାର ସ୍ୱର ଶୁଣିଲେ ସର୍ବେଶ୍ୱର ଅନୁତାପ ଅନଳରେ ହନ୍ତସନ୍ତ ହୁଅନ୍ତି, ନିଃସଙ୍ଗତା ଅନୁଭବ କରନ୍ତି।

ଏମିତି ଦିନେ ଝଡ଼, ବର୍ଷା ଓ ତୋପାନର ସାୟଂ ସମୟ। ମୂଷଳ ଧାରାରେ ପନବ ସହିତ ପ୍ରବଳ ବର୍ଷା। ଚକ୍ରପାଣି ଦେଖନ୍ତି ଟିପୁ ନାହିଁ। ଘୂର୍ଣ୍ଣି ବତାସର ପବନ ଧକ୍କାରେ ଉଭୟଙ୍କ ଫାଟକ ଉନ୍ମୁକ୍ତ। ଚକ୍ରପାଣି ବର୍ଷାତି ଧରି ଟିପୁକୁ ଖୋଜନ୍ତି ଏବଂ ଟିପୁର ବୋବାଳି-ସ୍ୱର ଶୁଣନ୍ତି ସର୍ବେଶ୍ୱରଙ୍କ ଡ୍ରଇଂ ରୁମ୍ ଭିତରୁ ଏବଂ ତାଙ୍କ କୁଣ୍ଠିତ ପାଦ ଆକର୍ଷଣ ଭଳି ଅଗ୍ରସର ହୁଏ ସର୍ବେଶ୍ୱରଙ୍କ ବାସଭବନ ଭିତରକୁ ଓ ଦେଖନ୍ତି ସେର୍ବଶ୍ୱର ଟିପୁକୁ ଶେରା ଭାବି ତାଙ୍କ କୋଳକୁ ଫେରି ଆସିବା ଭଳି କୁଣ୍ଢାଇ ବସିଛନ୍ତି। ଚକ୍ରପାଣିକୁ ଦେଖି ସେ ଟିପୁକୁ ଛାଡି ଅଶ୍ରୁବିଗଳିତ ବଦନରେ ଚକ୍ରପାଣିଙ୍କୁ ଆଲିଙ୍ଗନ କରନ୍ତି। ଦୁଇ ବନ୍ଧୁଙ୍କର ବନ୍ଧୁତ୍ୱ ପୁନଃ ପ୍ରତିଷ୍ଠା ହୁଏ। ଯେଉଁଠି ଗର୍ବାରୂଢ଼ ମଣିଷ ବୁଝି ନ ପାରେ ମନୁଷ୍ୟତ୍ୱ, ସେଠି କୁକୁର କଳିପାରେ ମଣିଷର ସୁଖଦୁଃଖ, ମଧୁର-ତିକ୍ତ ସମ୍ପର୍କ। ଏହା କୁକୁରର ମାନବୀୟତା ନୁହେଁ କି ? ଆମ ଦେଶୀ କୁକୁର ଯେ ଇତର ନୁହେଁ, ଉଚ୍ଚତର, ଚକ୍ରପାଣି 'ଟିପୁ' ଏହାର ଜ୍ୱଳନ୍ତ ଉଦାହରଣ।

ଉପନ୍ୟାସଟି ପାଠକଲା ପରେ ଏହା ଏକ ନିଛକ ଘଟଣା ବୋଲି ନିଶ୍ଚିତ ଭାବେ ପାଠକ ଅନୁଭବ କରିବେ। ଘଟଣାକୁ ଅକ୍ଷରରେ ଅବିକଳ ଥୋଇବାର ଅପୂର୍ବ କଳା ରାଧାମୋହନ ବାବୁଙ୍କ

ଲେଖନୀର ଏକ ସମୁଜ୍ଜ୍ୱଳ ଉପସ୍ଥାପନା। ମଣିଷ ଚରିତ୍ର ବନାମ ପ୍ରାଣୀ ସ୍ୱଭାବର ଏକ ତୁଳନାତ୍ମକ ବିବରଣୀରେ ଲେଖକ ଦର୍ଶାଇଛନ୍ତ- ବେଳେବେଳେ ମଣିଷ ପଶୁ ହୋଇଯାଏ ଏବଂ ପଶୁ ମଣିଷ ପାଲଟିଯାଏ। ଅହଂକାରୀ ମିଣିଷକୁ ଉପନ୍ୟାସ 'ସତ୍ୟମ୍ଏବ' ଏକ ଚେତାବନୀ। ସତ୍ୟ କେବେ ଲୁଚି ରହେନା- ସଦା ପ୍ରସ୍ଫୁଟମାନ। ଉପନ୍ୟାସଟିକୁ କୁକର ପ୍ରୀତିର ଭିନ୍ନ ଏକ ପରାଗ ବୋଲାଯାଇପାରେ। ଏଣୁ 'ସତ୍ୟମ୍ ଏବ' (ସତ୍ୟର ଜୟ) ନାମକରଣ ଯଥାର୍ଥ।

**- ବୈକୁଣ୍ଠ ଶତପଥୀ**

ସମ୍ପାଦକ- 'ସ୍ୱାକ୍ଷର' ବାଲେଶ୍ୱର






ପୁସ୍ତକ ନାମ : ପ୍ରଥମ ପ୍ରଭାତ

ପ୍ରକାଶକ : ପ୍ରତିଭା ମହାପାତ୍ର, ୧୪୭, ବୁଦ୍ଧେଶ୍ୱରୀ, ଭୁବନେଶ୍ୱର-୬

ପ୍ରକାଶ କାଳ : ରଥଯାତ୍ରା ୧୯୮୨

ପୃଷ୍ଠା : ୨୦୦

ପ୍ରଚ୍ଛଦ : ଉଦୟ ନାରାୟଣ ଜେନା

ମୂଲ୍ୟ : ୬୦/-

*ସ୍ୱରାଜ୍ୟ- ୨୪.୦୪.୧୯୯୩*

**ପ୍ରଥମ ପ୍ରଭାତ ଉପନ୍ୟାସ ପାଠ୍ୟକ୍ରମଭୁକ୍ତ ହେଉ**
ଆପଣଙ୍କ ପତ୍ର (ମତାମତ ପାଇଁ ସମ୍ପାଦକ ଦାୟୀ ନୁହନ୍ତି)
ମାନନୀୟ ଶିକ୍ଷାମନ୍ତ୍ରୀ ମହୋଦୟେଷୁ...

**ମହାଶୟ,**

କଥା ସମ୍ରାଟ, ଭାଷାର ସୁରେନ୍ଦ୍ର, ସୁରେନ୍ଦ୍ର ମହାନ୍ତି, ଡ଼ଃ ବିଭୂତି ପଟ୍ଟନାୟକ, ସ୍ୱର୍ଗତ ଗୋପୀନାଥ ମହାନ୍ତି, ମହାପାତ୍ର ନୀଳମଣି ସାହୁ, ଫକୀର ମୋହନ ପ୍ରମୁଖଙ୍କ ଗଳ୍ପ- ଉପନ୍ୟାସ ବିଶ୍ୱବିଦ୍ୟାଳୟ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ କରାଯାଇଛି।

ଏବେ ସଫଳ ଉପନ୍ୟାସ ରଚନା କ୍ଷେତ୍ରରେ ଔପନ୍ୟାସିକ ରାଧାମୋହନ ମହାପାତ୍ର କଲମ ଚାଳନା ଅବ୍ୟାହତ ରଖିଛନ୍ତି । ଏ ପର୍ଯ୍ୟନ୍ତ ତାଙ୍କର ୪ଖଣ୍ଡ କାଳଦୟୀ ଉପନ୍ୟାସ ପ୍ରକାଶ ପାଇଲାଣି। ସେହି ଦୃଷ୍ଟିରୁ ବିଚାର କଲେ ଜଣାପଡେ ଯେ, ରାଧାମୋହନଙ୍କ 'ପ୍ରଥମ ପ୍ରଭାତ' ଉପନ୍ୟାସ ଅନନ୍ୟ। ଏହା ତାଙ୍କର ପ୍ରଥମ ଉପନ୍ୟାସ ହୋଇଥିବାରୁ ଏହାର ନାମ 'ପ୍ରଥମ ପ୍ରଭାତ'। ବହିରେ ନାୟିକା ସମ୍ବୋଧନ କରି ଲେଖକ ଲେଖିଛନ୍ତି, 'ତୁମେ ମୋ ଜୀବନେ ପ୍ରଥମ ପ୍ରଭାତ, ତୁମର ପ୍ରଭାରେ ସଦାପ୍ରଭାବିତ।' ସୂର୍ଯ୍ୟୋଦୟ ପୂର୍ବରୁ ସିନ୍ଦୂରା ଫାଟି ସୂର୍ଯ୍ୟଙ୍କୁ ଆହ୍ୱାନ କଲାଭଳି, 'ପ୍ରଥମ ପ୍ରଭାତ' ଲେଖକଙ୍କ ଆଗାମୀ ସୃଷ୍ଟିକୁ ଆମନ୍ତ୍ରଣ କଲା ପରି ବହିଟିଏ ନିଶ୍ଚୟ। ଅନେକ ଲେଖକଙ୍କ କ୍ଷେତ୍ରରେ ଏଭଳି ହୋଇଛି ଯେ ତାଙ୍କ ସାମଗ୍ରୀକ କୃତି ମଧ୍ୟରୁ ଗୋଟିଏ ଲେଖା ସର୍ବଶ୍ରେଷ୍ଠ ମାନ୍ୟତା ପାଇଯାଏ। ଯାହାକି ଲେଖକଙ୍କର ଏହି 'ପ୍ରଥମ ପ୍ରଭାତ' ପ୍ରତିଶ୍ରୁତି ବହନ କରେ। ହୁଏତ ସେଥିପାଇଁ ଓଡ଼ିଆ ଚଳଚ୍ଚିତ୍ର ନିର୍ମାତା ସାଧୁ ମେହର "ପ୍ରଥମ ପ୍ରଭାତ" ଉପନ୍ୟାସଟିକୁ ନେଇ 'ପହେଲା ସବେରା' ଚଳଚ୍ଚିତ୍ର ନର୍ମାଣରେ ପ୍ରୟାସୀ।

'ପ୍ରଥମ ପ୍ରଭାତ' ବିଷୟବସ୍ତୁ ପ୍ରାଣବନ୍ତ ଓ ମର୍ମସ୍ପର୍ଶୀ । ଭାବ ଭାଷା ଲଳିତ ତଥା ଶିକ୍ଷଣୀୟ । ମଣିଷ ଜୀବନର ସଂଘାତକୁ ଔପନ୍ୟାସିକ ଯେପରି ଭାବେ ନିଖୁଣ ଭାବରେ ଚିତ୍ରଣ କରିଛନ୍ତି ସୁଧୀ ପାଠକ ସମାଜ ଆରମ୍ଭରୁ ଶେଷ ପର୍ଯନ୍ତ ନିଷ୍ପଳକ ନୟନରେ ପଢ଼ି ଆନନ୍ଦିତ ହେବେ। କରିବା ନିଷ୍ପ୍ରୟୋଜନ, ଯିଏ ଥରେ "ପ୍ରଥମ ପ୍ରଭାତ' ଉପନ୍ୟାସକୁ ପାଠକରିଛି, ସେ ପୁସ୍ତକଟିକୁ ନସାରି ରହିପାରିନାହିଁ। ଏଥିରେ ନାଟକୀୟତା ପୂରି ରହିଛି । ସଚ୍ଚା ପ୍ରେମର ପଟାନ୍ତର ନାହିଁ ପତି-ପତ୍ନୀଙ୍କ ସଂପର୍କରେ, ପ୍ରେମୀ ପରିଶେଷର ପରିମେଷ୍ଟିଙ୍କ ଦ୍ୱାରା ପୁରସ୍କୃତ ହୋଇଥାଏ- ଉପନ୍ୟାସର ଅନ୍ତର୍ବାଣୀ। ଘଟଣାରେ ନାଟକୀୟତା ଭର୍ତ୍ତୀ ରହିଛି।

ଏବେ ଓଡ଼ିଶାରେ ସଫଳ ଉପନ୍ୟାସ ରଚନା ଧିମେଇ ଯାଇଛି ପ୍ରୋତ୍ସାହନ ଅଭାବରୁ । ଦେଶରେ ସଫଳ ଉପନ୍ୟାସ ସୃଷ୍ଟି କରାଯିବା ନିମନ୍ତେ ଉତ୍କଳ ବିଶ୍ୱବିଦ୍ୟାଳୟର ବିଦ୍ୱାନ୍ ମଣ୍ଡଳୀ ପ୍ରଥମ ପ୍ରଭାତକୁ +୩କଳା ଓଡ଼ିଆ (ସମ୍ମାନ) ପାଠ୍ୟକ୍ରମରେ ସନ୍ନିବେଶିତ କରିବା ଆବଶ୍ୟକ ।

"ସୁନା ଚିହ୍ନେ ବଣିଆଁ,
ଗୁଣ ଚିହେଁ ଗୁଣିଆଁ ।"

-ଗୁଣକୁ ଚିହ୍ନିବାକୁ ଗୁଣୀମାନଙ୍କୁ ଆମେ ଅନୁରୋଧ ଓ ଆହ୍ୱାନ କରୁଛୁ ।

।ଇତି।

ଆପଣଙ୍କର

**କୃଷ୍ଣଚନ୍ଦ୍ର ଦାଶ**, ବାଙ୍କା ବଜାର, କଟକ

ଦେବୀ ପ୍ରସନ୍ନ ନନ୍ଦ, କଲେଜ ଛକ, କଟକ

**ଶରତ ଚନ୍ଦ୍ର ପାଣିଗ୍ରାହୀ**, ଖ୍ରୀଏଷ୍ଟ କଲେଜ, କଟକ

**ଚିନ୍ତାମଣି ସାମନ୍ତରାୟ**, ୟୁନିଟ୍-୬, ଟାଇପ୍-୪, ଭୁବନେଶ୍ୱର

(ବି:ଦ୍ର: ଏହାର ଏକକିତା ନକଲ କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର; ସଚିବ, ଶିକ୍ଷାବିଭାଗ; ନିର୍ଦ୍ଦେଶକ ଉଚ୍ଚଶିକ୍ଷା ବିଭାଗ, ଭୁବନେଶ୍ୱର ତଥା ଲେଖକ ରାଧାମୋହନ ମହାପାତ୍ର, 'ପ୍ରତିଭାନୀ', ବୁଦ୍ଧେଶ୍ୱରୀ, ଭୁବନେଶ୍ୱର-୬ଙ୍କୁ ପ୍ରଦାନ କରାଗଲା)



ପୁସ୍ତକ ନାମ : ସତ ହେଲେବି ଗପ

ପ୍ରକାଶକ : ପ୍ରତିଭା ମହାପାତ୍ର, ୧୪୭,

ବୁଦ୍ଧେଶ୍ୱରୀ, ଭୁବନେଶ୍ୱର-୬

ପ୍ରକାଶ କାଳ : ୩୧.୧୦.୨୦୦୧

ପୃଷ୍ଠା : ୨୫୦

ପ୍ରଚ୍ଛଦ : ପ୍ରତିଭା

ମୂଲ୍ୟ : ୮୦/-






'ସତ ହେଲେ ବି ଗପ' ଉନ୍ମୋଚନ କରୁଛନ୍ତି ପ୍ରଫେସର ଚନ୍ଦ୍ରଶେଖର ରଥ (ବାଙ୍କି ମହୋତ୍ସବ, ୨୦୦୧)

***ପ୍ରଜାତନ୍ତ୍ର ସାପ୍ତାହିକୀ ୩-୯ ମାର୍ଚ୍ଚ, ୨୦୦୨***
***ସଚସଚିକା - ମିଛିମିଛିକା ଖେଳ***

'ସତ ହେଲେ ବି ଗପ' ଗାଳ୍ପିକ ରାଧାମୋହନ ମହାପାତ୍ରଙ୍କ ରଚିତ ସଦ୍ୟତମ ଗଳ୍ପ ସଂକଳନ । ଏହା ପୂର୍ବରୁ ଲେଖକଙ୍କ ପ୍ରଥମ ପ୍ରଭାତ, ସତ୍ୟମ୍ ଏବ, ଝରେ ଶ୍ରାବଣ ଝୁରେ ଫଗୁଣ, ଜୀଅନ୍ତା ଶବ, ତମସା ତୀର୍ଥ, ଜଙ୍ଗଲର ଜମାନବନ୍ଦୀ, ବ୍ୟାଘ୍ର ନିନାଦ, ଅରଣ୍ୟ ଅତିଥି, ରକ୍ତର ରଙ୍ଗ, ଭୂମିତୃଷ୍ଣା ଶୀର୍ଷକରେ ଉପନ୍ୟାସ ଗ୍ରନ୍ଥ ପ୍ରକାଶ ପାଇ ଲେଖକ ଆଦୃତି ଲାଭ କରିଛନ୍ତି।

'ସତ ହେଲେ ବି ଗପ'ରେ ଅଣତିରିଶଟି ଗଳ୍ପ ସ୍ଥାନିତ । ସତ ହେଲେ ବି ଗପ, ଆସ କରିବା ହରତାଳ, ବହି ବିଳାପ, ପରୀକ୍ଷା, ମଧୁର ମିଶ୍ରରାଗ, ସାହସର ସନନ୍ଦ, ପୃଷ୍ଠାଏ ଇତିହାସ ମୁଠାଏ ସ୍ମୃତି, ବୟସ ବିଚାର: ଏକ ସଂଳାପ ଆଦି ଗଳ୍ପକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ଗାଳ୍ପିକଙ୍କ ଅନୁଚିନ୍ତା ବିଭିନ୍ନ କଥାବସ୍ତୁର ସ୍ରୋତ ଦେଇ ବହିଯାଇଛି । ତେବେ, ଏଥିରେ ସବୁଠାରୁ ବଡ ଲକ୍ଷଣୀୟ ଦିଗଟି ହୋଇଛି ସତେଜତା ଓ ସତ୍ୟତା ପ୍ରତି ଗାଳ୍ପିକଙ୍କ ଅନୁରକ୍ତି । ଗଳ୍ପ ସଂଗ୍ରହର ମୁଖବନ୍ଧରେ ଉଲ୍ଲେଖ କରାଯାଇଛି- ଗପ କ'ଣ କେବେ 'ପୁରୁଣା' ପଦବାଚ୍ୟ ? ଆଦୌ ନୁହେଁ । ସର୍ଜନାତ୍ମକ ସୃଷ୍ଟିଟିଏ ସଦା ନିତ୍ୟ, ନୂତନ ଚିରୋଜ୍ଜ୍ୱଳ । ସେଥିରେ କେବେ ଘୁଣ ଲାଗିବ ନାହିଁ । ମସିହା ମସିହା ବିତିଗଲେ ମଧ୍ୟ ମସିଆ ଧରେ ନାହିଁ । ଅବଧିରେ ନୁହେଁ ସେ ସୀମିତ ।

ଅପରପକ୍ଷରେ କହିବାକୁ ଗଲେ, ନବଜାତ ଶିଶୁମାନଙ୍କର କୁଆଁ କୁଆଁ, ଓଁକାର ଧ୍ୱନିର ରୂପପାଉ ଏବଂ ସେହି ମନ୍ତ୍ରବତ୍ ସିମ୍ଫୋନୀ ଜଗତର ସମୂହ ଚେତନାକୁ ପରିପ୍ଲୁତ କରୁ- ଏକଥା ଉପରେ ମଧ୍ୟ ଗୁରୁତ୍ୱାରୋପ କରାଯାଇଛି । ଏଥିରେ ଯେଉଁସବୁ କଥାବସ୍ତୁ ଗଢି ଉଠିଛି, ଅନେକ କଳ୍ପନାଶକ୍ତି ଓ ଜୀବନବୋଧ ଦ୍ୱାରା ଅନୁରଣିତ । ଆଧୁନିକ ଜୀବନର ଜଟିଳତା ଏବଂ ସ୍ୱବିରୋଧୀ ମଧ୍ୟ ସ୍ପଷ୍ଟ । ଅପାର୍ଥିବତାର ଉପକରଣକୁ ସାଉଁଟି ଆଣି ପରିବର୍ତ୍ତନର ଧାରା ସହ ଯୁଗଚେତନା-ଯନ୍ତ୍ରଣାକୁ ମୂଲ୍ୟାୟନ କରାଯାଇଛି । ତା' ଛଡା ବ୍ୟକ୍ତି ଚରିତ୍ରର ମୁକ୍ତି ପ୍ରତ୍ୟାଶା ଏବଂ ଜୀବନ-ସ୍ଫୂର୍ତ୍ତି ସପକ୍ଷରେ ଗାଳ୍ପିକଙ୍କ ଅନୁଚିନ୍ତା କ୍ରିୟାଶୀଳ ସତ ହେଲେ ଅସହାୟ ଏବଂ ଅନୁଶୋଚନା ଜର୍ଜରିତ ପ୍ରାଣରେ ଆଶ୍ୱାସନା-ଦମ୍ଭର ବୀଜ ବପନ ପାଇଁ ମୁକ୍ତିପାଠର ପ୍ରୟାସ ହୋଇଛି । 'ମଣିଷକୁ ପ୍ରତିଟି ମୁହୂର୍ତ୍ତ ପରୀକ୍ଷାର ସମ୍ମୁଖୀନ ହେବାକୁ ପଡିବ, ଏଥିରୁ ନିଷ୍କୃତିର ମାର୍ଗ ନାହିଁ । ଏପରିକି ମୃତ୍ୟୁ ପରେ ବି ।' - ଏ କଥାକୁ ଦର୍ଶାଯାଇଛି 'ପରୀକ୍ଷା' ଗଳ୍ପରେ । ଅପରପକ୍ଷରେ, ବାସ୍ତବତା ଅତ୍ୟନ୍ତ ନିଷ୍ଠୁର, ଏହାର ମୁକାବିଲା କରିବାକୁ ମାନସିକ ସ୍ତରରେ କୌଣସି ମୁହୂର୍ତ୍ତରେ ବି ଆମକୁ ପ୍ରସ୍ତୁତ ହୋଇ ରହିବାକୁ ହେବ- ଏହା ମଧ୍ୟ ସୂଚାଇ ଦିଆଯାଇଛି ।

'ଭୁକିଲା କୁକୁର ଭୋକିଲା ନର' ଗଳ୍ପରେ ମଣିଷର ଅସହାୟତାବୋଧ ଏବଂ କରୁଣଭାବ ଦର୍ଶାଯାଇଥିଲେ ମଧ୍ୟ ଯା'ର ଅନ୍ତଃସ୍ୱର ବ୍ୟଙ୍ଗ ଓ ବିଦ୍ରୂପର । ମଣିଷ ଜୀବନ ଅପେକ୍ଷା କୁକୁର ଜୀବନ

ଶ୍ରେୟସ୍କର ବୋଲି ଉଦ୍ରେକ କରାଯାଇଥିବା ଚେତନା ଅନ୍ତରାଳରେ ମଣିଷ ପ୍ରତି ମଣିଷର ଥିବା ହୀନମନ୍ୟତା ଏବଂ ଯଥେଚ୍ଛାଚାରକୁ ଠାବ କରିହୁଏ । ମଣିଷ ପ୍ରତି ମଣିଷର କୁତ୍ସିତ ସମ୍ପର୍କୀୟ ସନନ୍ଦକୁ ଲେଖକ କିପରି ପାଠ କରିଛନ୍ତି ଗଳ୍ପାଂଶଟିକୁ ଲକ୍ଷ୍ୟ କରାଯାଉ- କୁକୁର ଖାଉଛି ଖାସ୍ ଭୁକିବାକୁ, ଆଉ ଦୁଃଖୀ ନିରବରେ ଭୁକୁଛି କେବଳ ମୁଠେ ଖାଇବାକୁ । ତା' ପାଇଁ ଖାଦ୍ୟ କାହିଁ ? ହୀରୁଠୁ ଶହେ ଗୁଣ ଜୋର୍‌ରେ ବୋବାଳି ଛାଡିଲେ ମଧ୍ୟ ଖାଦ୍ୟ ନାହିଁ । ସେ ଅର୍ଦ୍ଧାହାର, ଅଭୁକ୍ତ, ଅନାହାରରେ ଦିନ କାଟୁଛି । ତା' ଉଦରରେ ଅନନ୍ତ କ୍ଷୁଧା- ଭୁଖାର ଇସ୍ତାହାର । ନିର୍ଜୀବ ପେଚୁଆ ଆଖିରେ ସେମିତି ଚାହିଁଛି କୁକୁର ସେବକ ଦୁଃଖିଶ୍ୟାମ । ଈର୍ଷା କରୁଛି ମାଲିକର ଏଇ ପୋଷା ପଶୁଟିକୁ । ଆର ଜନ୍ମରେ ଏମିତି କୁକୁରଟିଏ ହୋଇ ଜନ୍ମ ହୁଅନ୍ତା ପରା ! ।

ଅନୁରୂପ ଭାବେ 'କୁକୁର ପ୍ରତି' ଗଳ୍ପରେ ଭୃତ୍ୟାନୁଭୃତ୍ୟ ବିଷୟଟିକୁ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାର କରାଯାଇ ମାନବୀୟ ପ୍ରବୃତ୍ତିର ମୁଖାପେକ୍ଷୀତାର ଅନ୍ତ ପାଇଁ ଆହ୍ୱାନ କରାଯାଇଛି । ତେବେ, ଏଇଠି ଗାଳ୍ପିକଙ୍କ ମୂଲ୍ୟବୋଧ ସଚେତନତା ହିଁ ଗଳ୍ପ ଦ୍ୱୟରେ ଉପଜୀବ୍ୟ । ବିଦ୍ରୂପ ଛଳରେ ହୋଇଥିବା କଟାକ୍ଷ ପ୍ରକାରାନ୍ତରେ ମାନବୋତ୍ତର ମୂଢତାକୁ ନିର୍ଦ୍ଦେଶ କରେ ।

'ସତ ହେଲେ ବି ଗପ' ଗଳ୍ପରେ କଥାବସ୍ତୁ ସତସତିକା ଏବଂ ମିଛିମିଛିକା ଖେଳର ଡୋରିରେ ବନ୍ଧା । ହାସପାତାଳର ରୁଗ୍‌ଣତା କ୍ରମଶଃ ଘର, ପରିବାର ଏବଂ ସମାଜରେ କିପରି ଦାନା ବାନ୍ଧୁଛି, ତାକୁ ଦର୍ଶାଇବାର ପ୍ରୟାସ ହୋଇଛି । ଗାଳ୍ପିକଙ୍କ ଭାଷାରେ- ମଣିଷର ଆନନ୍ଦରେ ଓ ବିଷାଦରେ ଆଖିରୁ ଆପେ ଆପେ ଲୁହ ଖସିବା ଏକ ସ୍ୱାଭାବିକ ଗୁଣ । କେଉଁ ଲୁହ ସୁଖର ଓ କେଉଁ ଲୁହ ଦୁଃଖର ପରିସ୍ଥିତି ସୂଚାଇ ଦିଏ । 'କହନ୍ତୁ ଏଥର ଡାକ୍ତର ସୌରଭ, ଦରିଦ୍ର ମାଳତୀକୁ ଜୀବନ ସାଥୀ କରି ତମେ ସତରେ ଖୁସି ତ ? ଗୋଟାଏ ଆନ୍ତରିକ ଆଲିଙ୍ଗନ ଓ ଦୃଢ ଚୁମ୍ବନରେ ସୌରଭ ଉତ୍ତର ଦେଇଥିଲେ କେବଳ ।'

'ଆଇନର ଫାଙ୍କ ଦେଶର ବାଙ୍କ' ଗଳ୍ପରେ ନ୍ୟାୟ ପାଇବା ଆଜି କେତେ ବିଡମ୍ବିତ ଏବଂ ପ୍ରଶାସନିକ-ରାଜନୀତିକ ପଣାପାଲି ଯୋଗୁଁ କିପରି ସ୍ଥଳ ପ୍ରଦୂଷଣ ହୋଇଚାଲିଛି ତାହାକୁ ଭିନ୍ନ ଢଙ୍ଗରେ ଉପସ୍ଥାପନା କରାଯାଇଛି । ଶିଶୁଶ୍ରମିକ ପ୍ରଥା ବିରୋଧରେ ମଧ୍ୟ ସ୍ୱର ଉଠାଯାଇଛି ।
'ସତ ହେଲେ ବି ଗପ'ର କେତେକ ଗଳ୍ପରେ ଶୌର୍ଯ୍ୟ-ସୌନ୍ଦର୍ଯ୍ୟ ପ୍ରତି ଗାଳ୍ପିକଙ୍କ ବିମୁଗ୍ଧ ଭାବ ସ୍ପଷ୍ଟ । ଅରଣ୍ୟମନସ୍କ ଦୃଷ୍ଟିଭଙ୍ଗୀକୁ ମଧ୍ୟ ଠାବ କରିହୁଏ ।

- ମନୋଜ କୁମାର ମେହେର



***ସମୟ (ରବିବାର)***
***ତା ୧୦-୩-୨୦୦୨***

ଔପନ୍ୟାସିକ ରାଧାମୋହନ ମହାପାତ୍ରଙ୍କ 'ସତ ହେଲେ ବି ଗପ' ମାନବିକତାର ଏକ ପୂର୍ଣ୍ଣ ନିଦର୍ଶନ । ମଣିଷ ମଣିଷକୁ ଭଲ ପାଇବାର ଯେଉଁ ଆବେଗ ଅଛି, ତାହାର ତୁଳନା ନାହିଁ । ଏହି ଗପଗୁଡ଼ିକ ତାହାର ଗୋଟିଏ ଗୋଟିଏ ପ୍ରତିଶ୍ରୁତିର ସ୍ୱାକ୍ଷର । ୨୯ଟି ଗଳ୍ପର ସମାହାରରେ ଏହି ସଂକଳନଟି ପାଠକ ପ୍ରାଣକୁ ତୃପ୍ତିଦେବା ସହିତ ଗପର ଭାବବୋଧ ତାହାର ଚିତ୍ତବୃତ୍ତିକୁ ଆଲୋଡ଼ିତ କରିବ । ସତ ହେଲେ ବି ଗପ, ଭୁକିଲା କୁକୁର ଓ ଭୋକିଲା  ନର, ବିବର୍ଣ୍ଣ ବର୍ଣ୍ଣମାଳା, ତପ୍ତ ତାରକା, ଆଦିମ, ମଧୁର ମିଶ୍ର ରାଗ, ଏକ ମଣିଷମରା ବନ୍ଧୁକର କାହାଣୀ ଗୁଡ଼ିକ ଜୀବନର ସନ୍ଧାନ ଦିଏ । ଜୀବନକୁ ଭଲ ପାଇବାର ସଂକେତ ପ୍ରଦାନ କରେ ।

ଗପର ଉପସ୍ଥାପନା ଶୈଳୀ ଚମତ୍କାର । ଭାଷାର ପରିପାଟୀ ଗାମ୍ଭୀର୍ଯ୍ୟ ନାହିଁ ମାତ୍ର ସରଳତାରେ ପ୍ରତିପ୍ରାଣକୁ ନିବିଡ଼ ଭାବେ ବିମୋହିତ କରିବାର ପ୍ରୟାସ ତାହାର ଶବ୍ଦ ସଂଯୋଜନାରୁ ଉପଲବ୍ଧି କରିହୁଏ । ଚେତନାକୁ ଉଦ୍ଦୀପ୍ତ କରେ । 'ତପ୍ତ ତାରକା' ଗଳ୍ପରେ ତାହା ପ୍ରତିପାଦ୍ୟ । 'ମହିଳାଙ୍କ ମୁହଁରେ ସଭ୍ୟତାର ବର୍ଣ୍ଣବୋଧ ଶୁଣି ହିରୋ ସାଜିଥିବା ଯୁବକଟି ନିଜ ଗାଲକୁ ଆଉଁଶୁ ଥିଲା । ଶିଶୁକୁ ମାରିଥିବା ଚାପୁଡ଼ା ଯେମିତି ତା' ଗାଲରେ ଜୋରକରି ବାଜିଥିଲା ଶୂନ୍ୟଭେଦ କରି । ସେ ବାହାରକୁ ପଳାଇଯିବାକୁ ବାଟ ଅଣ୍ଡାଳୁ ଥିଲା । ଯେତ ସାମାନ୍ୟ ମହିଳା ନୁହନ୍ତି, ବିରୁଡ଼ିବସା ।'

ଗାଳ୍ପିକ ମହାପାତ୍ରଙ୍କର ଗଳ୍ପରେ ବାସ୍ତବିକ ଏକ ଯାଦୁ ଅଛି । ସମ୍ମୋହିତ କରିବାର ଏକ ପ୍ରେରଣା ଅଛି । ଯାହା ପ୍ରାଣପଲ୍ଲବକୁ ମଧୁମୟ କରିଦିଏ । ଶାଣିତ ଦୃଷ୍ଟିଚେତନାରେ ଗଳ୍ପଗୁଡ଼ିକର ଭାବବୋଧ ସାଂପ୍ରତିକ ସମାଜ ପାଇଁ ଏକ ବଳିଷ୍ଠ ଇସ୍ତାହାର ।

**- ଡକ୍ଟର ଧରଣୀଧର ରାଉତ**
ଅଧ୍ୟାପକ, ମହର୍ଷି କଲେଜ, ଭୁବନେଶ୍ୱର



*ସମାଜ (ରବିବାର ଦୈନିକ), ତା ୨୪-୨-୨୦୦୨*

ଗଳ୍ପ ସଂକଳନଟିରେ ପ୍ରକାଶିତ ଅଣତିରିଶଟି ଗଳ୍ପରେ ଗାଳ୍ପିକ ଜୀବନର କେତେକ ଅନୁଭୂତିକୁ ମୂର୍ତ୍ତର ରୂପ ଦେଇଛନ୍ତି । ସାଂପ୍ରତିକ ସମାଜରେ ଘଟୁଥିବା ଅନେକ ଦୁଃଖଦ ଘଟଣାକୁ ନେଇ ବିଭିନ୍ନ ଚରିତ୍ର ମାଧ୍ୟମରେ ନିଜର ଭାବ ବ୍ୟକ୍ତ କରିଛନ୍ତି । ପୁସ୍ତକରେ ପାଠକୀୟ ଆବୃତ୍ତି ରହିଛି । 'ଭୋକିଲା କୁକୁର ଭୁକିଲା ବର' ବୁଭୁକ୍ଷୁ ଗରୀବର ଆର୍ତ୍ତସ୍ୱର ଶୁଣିହୁଏ । ଏହାକୁ ଭୁଖାର ଇସ୍ତାହାର ବୋଲାଯାଇ ପାରେ । ପ୍ରତି ଗପରେ ଯୁଗ-ଯନ୍ତ୍ରଣାର ସ୍ୱର ଅନୁରଣିତ । ଗପ 'ଆସ କରିବା ହରତାଳ' ସମାଜରେ ପ୍ରତ୍ୟେକ କଥାରେ ଦାଦାଗିରି ଓ ରାଜନୈତିକ ଅଭିସନ୍ଧି ପ୍ରତି ତୀର୍ଯ୍ୟକ୍ ଭାବେ ଅଙ୍ଗୁଳି ନିର୍ଦ୍ଦେଶ କରୁଛି । ଦେଶ ବନ୍ଦ, କାର୍ଯ୍ୟ ବନ୍ଦର କୁପରିଣାମ ନିଜେ ଜନତାକୁ ଭୋଗିବାକୁ ପଡ଼ିଥାଏ, ପ୍ରଗତିପଥରେ ପ୍ରତିବନ୍ଧକ ହୁଏ, ତାହାକୁ ସୁନ୍ଦର ଭାବେ ଦର୍ଶାଯାଇଛି ।



*ସମାଜ (୪-୧୨-୨୦୦୪) ରବିବାର*

*ଭଙ୍ଗା ମୂନର ଭାଷା*

ଏହି ଗଳ୍ପ ସଂକଳନରେ ୨୫ଟି ଛୋଟବଡ ଗଳ୍ପ ସ୍ଥାନ ପାଇଛି । ପୂର୍ବରୁ ଏହି ଗଳ୍ପ ଗୁଡିକ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଥିଲା । ଅଧିକାଂଶ ଗଳ୍ପ ନିତିଦିନିଆ ଜୀବନର ଘଟଣାବଳୀ ବିଭିନ୍ନ ସମସ୍ୟା ଓ ଅନ୍ଧ ବିଶ୍ୱାସ ଉପରେ ଆଧାରିତ ହୋଇଥିବାରୁ ସେଥିରେ ସମାଜ ଚିତ୍ର ଭଲ ଭାବରେ ପ୍ରତିଫଳିତ । ଗଳ୍ପଗୁଡିକର ବିଷୟବସ୍ତୁ ମନଛୁଆଁ ହୋଇଛି । ଭୁଶୁଡି ପଡୁଥିବା ସମାଜରେ ଦୁର୍ଗୁଣଗୁଡ଼ିକ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରାଯାଇଛି । ତେବେ କେତେକ ସ୍ଥାନରେ ମୁଦ୍ରଣ ଜନିତ ତ୍ରୁଟି ପରିଲକ୍ଷିତ ହେଉଛି । ସମାଜରେ ଅନ୍ଧ ବିଶ୍ୱାସ, ଭଣ୍ଡବାବାଙ୍କ କଳାକାରନାମା ଉପରେ ପ୍ରଚଣ୍ଡ ଆକ୍ରମଣ କରିଛନ୍ତି ସୃଜନ ଲେଖନୀକାର । ମୋଟାମୋଟି ଭାବେ ସଂକଳନଟି ପାଠକମାନଙ୍କ ଦ୍ୱାରା ଆଦୃତ ହେବ ବୋଲି ଆଶା ।



ପୁସ୍ତକ ନାମ : ଭଂଗା ମୁନର ଭାଷା

ପ୍ରକାଶକ : ପ୍ରତିଭା ମହାପାତ୍ର,

୧୪୭, ବୁଦ୍ଧେଶ୍ୱରୀ,

ଭୁବନେଶ୍ୱର-୬

ପ୍ରକାଶ କାଳ : ୨୫.୦୨.୨୦୦୫

ପୃଷ୍ଠା : ୨୭୨

ପ୍ରଚ୍ଛଦ : ଅସୀମ ବସୁ

ମୂଲ୍ୟ : ୮୦/-







ଭଂଗାମୁନର ଭାଷା ଉନ୍ମୋଚନ କରୁଛନ୍ତି ପ୍ରଫେସର ରଜତ କୁମାର କର, ଚୀରସଂଧାନର ସଂପାଦକ ପାର୍ଥସାରଥି ଅଜୟ ବାରିକ୍, ତା.୨୫.୨.୨୦୦୫।

*ଧରିତ୍ରୀ (ଛୁଟିଦିନ)*
*୭-୧୩(ଅଗଷ୍ଟ, ୨୦୦୫)*

କାହାଣୀଟିଏ କିଏ କେଉଁଠୁ ପାଏ ? ହେଲେ ଗାଳ୍ପିକ ରାଧାମୋହନ ପାଆନ୍ତି ପ୍ରତ୍ୟେକଟି ଚରିତ୍ରକୁ ସମାଜ ଭିତରୁ ନିରିଖେଇ ଦେଖିବା ପରେ । ତେଣୁ ତାଙ୍କର ଗଳ୍ପର ଚରିତ୍ରମାନେ ଅବାସ୍ତବ ନୁହନ୍ତି, ବରଂ ନିତିନିତି ବାସ୍ତବତାକୁ ସାମ୍ନା କରୁଥିବା ଏବଂ ଦରଦୀ ମଣିଷଟିଏର ଆବେଗକୁ ସ୍ପର୍ଶ କରୁଥିବା ଚରିତ୍ର । ଯଦିଓ କିଛିକିଛି କାହାଣୀକୁ ଗତିଶୀଳ କରାଇବା ପାଇଁ ଏବଂ କ୍ଲାଇମାକ୍ସରେ ପହଞ୍ଚାଇବା ପାଇଁ ଲେଖକ ବ୍ୟଗ୍ର ହୋଇପଡିଛନ୍ତି, ନାଟକୀୟତାର ଆଶ୍ରୟ ନେଇଛନ୍ତି, ହେଲେ ତାହା ଏକ ଭିନ୍ନ ବାସ୍ତବତା ଯାହା କେବେକେବେ ଘଟିଯିବା ଅସମ୍ଭବ ନୁହେଁ । ଏସବୁକୁ ବାଦ୍ ଦେଇ ଲେଖକଙ୍କ ଭାବ, ଭାଷା ଏବଂ କାହାଣୀକୁ ନେଇଆଣି ଥୋଇ ପାରିବାର କଳାକୁ ବିଚାରକୁ ନେଲେ 'ଭଙ୍ଗା ମୁନର ଭାଷା' ଲେଖକ ଶ୍ରୀ ମହାପାତ୍ରଙ୍କ ଏକ ସଫଳ ସୃଷ୍ଟି । ପଚିଶଟି ଗଳ୍ପକୁ ନେଇ ପ୍ରକାଶ ପାଇଥିବା ଲେଖକଙ୍କର ପ୍ରଥମ ତିନୋଟି ଗଳ୍ପକୁ ଆଲୋଚନାକୁ ନିଆଯାଉ । ପ୍ରଥମ ଗଳ୍ପ 'ଭଙ୍ଗା ମୁନର ଭାଷା'ରେ ସବୁ ପ୍ରକାର ଚୋରକୁ ଧରାଯାଇପାରେ ମାତ୍ର 'ଚରିତ୍ର' ଚୋରି କରୁଥିବା ଚୋରକୁ କ'ଣ ଧରାଯାଇପାରେ ? ଏମିତି ଏକ ପ୍ରଶ୍ନବାଚୀ ସୃଷ୍ଟି ହୋଇଛି । ଦ୍ୱିତୀୟ ଗଳ୍ପ 'ଡାଆଣୀର ଡାକ' ଏକ ଚମତ୍କାର ଗଳ୍ପ । ଅନ୍ଧବିଶ୍ୱାସରେ ବେଳକୁ ବେଳ ହଜି ଯାଉଥିବା ପତି-ପତ୍ନୀର ସମ୍ପର୍କ ତଥା ତା'ର କରୁଣ ପରିଣତି ବେଶ୍ ମର୍ମସ୍ପର୍ଶୀ । ତୃତୀୟ ଗଳ୍ପ 'ଶବ ଶିକାର' ବି ସେମିତି ଏକ ପରିଣତିର ସାମ୍ନା କରିଛି । ତାହା ଅନ୍ଧବିଶ୍ୱାସ ନୁହେଁ, ଅବୈଧ କାମନାର । ପ୍ରାୟ ପ୍ରତ୍ୟେକଟି ଗଳ୍ପରେ ଲେଖକଙ୍କର ସାମାଜିକ ଦାୟିତ୍ୱବୋଧଟି ବାରି ହୋଇପଡେ ।



***ପ୍ରଜାତନ୍ତ୍ର ସାପ୍ତାହିକୀ ୧୭-୨୩ ଏପ୍ରିଲ, ୨୦୦୫***
***ବହି ସମାଜର ସ୍ୱରଲିପି: 'ଭଙ୍ଗାମୁନର ଭାଷା'***

କ୍ଷୁଦ୍ର କଳେବର ଭିତରେ ଅନେକ ଘଟଣାକୁ ଧରିରଖେ ଗଳ୍ପ । ବିଶେଷକରି ବର୍ଣ୍ଣନାର ଛଟା ସହ ଥାଏ ମାର୍ମିକ ବେଦନା, ସମାଜର ପ୍ରତିଛବି ଏବଂ ମନଛୁଆଁ ଭାଷା । ଫଳରେ ପାଠକ ହୃଦୟର କେଉଁ ଏକ ନିଭୃତ କୋଣକୁ ଛୁଇଁଯାଏ ଗଳ୍ପ । ଲେଖନୀ ଯେତେ ବାସ୍ତବବାଦୀ, ଯୁଗୋପଯୋଗୀ ହୁଏ, ସୃଷ୍ଟି ମଧ୍ୟ ସେତେ ହୃଦୟସ୍ପର୍ଶୀ ଓ ଆକର୍ଷଣୀୟ ହୁଏ । ସେହି ନ୍ୟାୟରେ ରଚିତ ରାଧାମୋହନ ମହାପାତ୍ରଙ୍କ ଗଳ୍ପ ସଂକଳନ 'ଭଙ୍ଗାମୁନର ଭାଷା' କେବଳ ଭଙ୍ଗା ମନର ଭରସା ନୁହେଁ, ଭାଙ୍ଗି ନ ପଡିବାର ଅଭୟ ଆଶ୍ୱାସନା ଦିଏ । ଏହା ସହିତ ନୂତନ ଶବ୍ଦ ସଂଯୋଜନାର ଖୋରାକ ମଧ୍ୟ ଯୋଗାଏ । ବିଭିନ୍ନ ପ୍ରତିଷ୍ଠିତ ପତ୍ରପତ୍ରିକାରୁ ସଂଗୃହୀତ ୨୫ଟି ସ୍ୱରଚିତ ଗଳ୍ପକୁ ଏକ ସୁନ୍ଦର ସଂକଳନରେ ସଜାଇଛନ୍ତି ଲେଖକ ଶ୍ରୀ ମହାପାତ୍ର । ସଂକଳନଟି ୧୯୬ ପୃଷ୍ଠା ବିଶିଷ୍ଟ । ଏହାର ପ୍ରତ୍ୟେକ ଗଳ୍ପ ନୂଆ ଲାଗେ ।

ସଂକଳନର ଶିରୋନାମାନୁସାରେ ପ୍ରଥମ ଗଳ୍ପ 'ଭଙ୍ଗାମୁନର ଭାଷା' । ଜୀବନର ଶ୍ରେଷ୍ଠ ସମ୍ପଦକୁ ହରାଇ ପାଗଳୀ ପରି ଖୋଜି ହେଉଥିବା ନାରୀକୁ ସାଦା ପୋଷାକଧାରୀ ଗୋଇନ୍ଦା ନିଜର କର୍ମନିପୁଣତାର ପରିଚୟ ଦେଇ ହଜିଯାଇଥିବା ଧନର ସନ୍ଧାନ ଦେବାକୁ ଦମ୍ଭୋକ୍ତି ପ୍ରକାଶ କରିଛନ୍ତି । ଥରେ ହଜିଯାଇଥିବା ଚିଜ ଯେ ଚରିତ୍ର ଏକଥା ଜାଣି ଗୋଇନ୍ଦା ହତବାକ୍ ହୋଇ ନିଜର ଅସାମର୍ଥ୍ୟ ପ୍ରକାଶ କରିଛନ୍ତି । ଏହି ଗଳ୍ପର ଶିରୋନାମା ପ୍ରତୀକାତ୍ମକ ।

ଚରିତ୍ର ମନୁଷ୍ୟର ସର୍ବସ୍ୱ । ତେଣୁ ଚରିତ୍ରହରା ପ୍ରଥମେ ନିଜ ପାଖରେ ପରାଜିତ ହୁଏ । ଭାଙ୍ଗିପଡେ । ଯେପରି ଭଙ୍ଗା ମୁନଯୁକ୍ତ କଲମର ଲିପି ଅସ୍ପଷ୍ଟ, ଦୁର୍ବୋଧ୍ୟ ଓ ଅଲୋଡା, ସେହିପରି ନଷ୍ଟ ଚରିତ୍ର ସମାଜ ପାଇଁ ଘୃଣ୍ୟ ହୋଇଯାଏ । ସଂକଳନର ଅନ୍ୟ ଏକ ଗଳ୍ପ 'ଡାଆଣୀର ଡାକ' ସଂସ୍କାର ଉପରେ ପର୍ଯ୍ୟବସିତ । ମଣିଷ ଭାରି ସନ୍ଦେହୀ । ପରକଥାରେ ପ୍ରଳୟ ଘଟାଏ । ଯେପରି ପଡ଼ିଶାମାନଙ୍କୁ ବିଶ୍ୱାସ କରି ସ୍ୱାମୀ ସଦାନନ୍ଦ, ଅତି ଆପଣାର ପତ୍ନୀ ଚମ୍ପାକୁ ଡାଆଣୀ ସନ୍ଦେହରେ ବିଷଦେଇ ହତ୍ୟାକରେ ଏବଂ ପରେ ଜେଲ୍ ଭୋଗେ । ଅନ୍ଧବିଶ୍ୱାସ ଓ ପତି-ପତ୍ନୀ ମଧ୍ୟରେ ନିବିଡତାକୁ ଖୁବ୍ ଚମତ୍କାର ଢଙ୍ଗରେ ଉପସ୍ଥାପନା କରିଛନ୍ତି ଶ୍ରୀ ମହାପାତ୍ର । ତାଙ୍କ ଭାଷାରେ- "ଏ ସମାଜରେ ଅନ୍ଧବିଶ୍ୱାସ କଳା ମେଘ ଭଳି ମାଡି ବସିଛି ସମସ୍ତଙ୍କୁ । ଅନ୍ଧାସୁରକୁ ମାରିବ କିଏ ?" 'ଶବ ଶିକାର' ଗଳ୍ପରେ ଦାରିଦ୍ର୍ୟର ନିଖୁଣ ଛବି ପ୍ରତିଫଳିତ ହେଲାବେଳେ, 'ଉଆଁସୀ ଜହ୍ନ'ରୁ ପ୍ରେମପ୍ରଣୟର ଭାଷା ସ୍ପଷ୍ଟ ବୁଝିହୁଏ । 'ଆମେ ଡକାୟତି କରୁ ଖାସ୍ ପେଟପାଟଣା ପାଇଁ, ଲୁଟ୍ ଧନ ଉଚିତ କାମରେ ଲାଗିଲେ ଧନ ବଢ଼ିବ ।' ଏହା ସ୍ୱୀକାରୋକ୍ତି ବହନ କରେ ଗଳ୍ପ 'ମୁକ୍ତିଦାତା' । ପତିକୁ ରୋଗମୁକ୍ତ କରିବା ଛଳରେ ପତ୍ନୀ ପ୍ରତି ରହିଥିବା କାମତୃଷ୍ଣାକୁ ଆବିଷ୍କାର କରିହୁଏ ଜଣେ ଭଣ୍ଡ ସନ୍ନ୍ୟାସୀଠାରୁ । ଅପରପକ୍ଷରେ ଜଣେ ମଦ୍ୟପ, ଡକାୟତ ଭିତରେ ପ୍ରକୃତ ସାଧୁ ସ୍ୱଭାବର ସନ୍ଧାନ ମିଳେ । ସଂକଳନର ଶେଷ ଗଳ୍ପ 'ସ୍ୱାଭିମାନ' । ଏହା ପ୍ରତ୍ୟେକ ନିଜ ପାଇଁ ବଡ- ଏହି ଶିକ୍ଷା ଦେଇଥାଏ । ସବୁ ଦୃଷ୍ଟିରୁ ବିଚାର କଲେ ସଂକଳନଟି ଖୁବ୍ ଉଚ୍ଚକୋଟୀର ।

◆



ବନଚାରୀର ଜୀବନ
ଓ ସୃଜନରେ
ରାଧାମୋହନ

ଔପନ୍ୟାସିକ ରାଧାମୋହନ ମହାପାତ୍ର ଏକାଧାରରେ ଜଣେ ସୁଲେଖକ, ସ୍ତମ୍ଭକାର, ପ୍ରକୃତି, ବନ୍ୟପ୍ରାଣ ତଥା ପ୍ରାଣୀଜଗତକୁ ଭରପୁର ଭଲ ପାଉଥିବା ଜଣେ ସହଜ ସରଳ ମଣିଷ, ଯାହାଙ୍କ ଭିତରେ ଜଙ୍ଗଲ ଏବ ସୃଜନର ଅନେକ ପତିଆରା ପାଖୁଡାମେଲନ୍ତି ଭିନ୍ନଭିନ୍ନ ଭାବରେ, ଭିନ୍ନଭିନ୍ନ ସମୟରେ। ତାଙ୍କୁ ଯଥାର୍ଥରେ ପାଠକମାନେ 'ଓଡ଼ିଶାର ଜିମ୍ କରବେଟ' ବୋଲି ଆଖ୍ୟା ଦିଅନ୍ତି। ସେ 'ଓଡ଼ିଶା ସାହିତ୍ୟ ଏକାଡ଼େମି ପୁରସ୍କାର' ସହିତ 'ପ୍ରକୃତି ବନ୍ଧୁ ପୁରସ୍କାର' ଓ ଅଜସ୍ର ମାନପତ୍ରରେ ମଣ୍ଡିତ ହୋଇଛନ୍ତି। ଏଯାବତ୍ ୧୪ଟି ଉପନ୍ୟାସ, ୨ଟି ଗଳ୍ପ ସଂକଳନ, ଅନେକ ସ୍ତମ୍ଭ-ପ୍ରବନ୍ଧ ରଚନା କରି ପାଠକୀୟ ସ୍ୱୀକୃତି ଲାଭ କରିଛନ୍ତି ତାଙ୍କ ସୃଷ୍ଟି-ସର୍ଜନାକୁ ନେଇ ବିଭିନ୍ନ ଗଣମାଧ୍ୟମରେ ଅନେକ ସାକ୍ଷାତ୍‌କାର, ପୁସ୍ତକ ସଂପର୍କରେ ସମୀକ୍ଷା, ରଚିତ ବନବାସୀ, ବନ୍ୟଜନ୍ତୁ ତଥା ବନକଥା ଓ ତାଙ୍କ ଜୀବନଗାଥା ଏବଂ ଜୀବନ ଦର୍ଶନ ଏହି 'ବନଚାରୀର ଜୀବନ ଓ ସୃଜନରେ ରାଧାମୋହନ' ପୁସ୍ତକରେ ବର୍ଣ୍ଣିତ ହୋଇଛି। ତାଙ୍କ ଶୃଙ୍ଖଳିତ ପାରିବାରିକ ଜୀବନ ଓ ଚିତ୍ର ବି ଏହି ପୁସ୍ତକରୁ ସ୍ପଷ୍ଟ ଜଣାପଡେ। ଜଣେ ଭଲ ମଣିଷଙ୍କ ସର୍ଜନକ୍ରିୟାକୁ ଏକତ୍ର କରିବାକୁ ମୋର ମନ ହେଲା। ଏମିତି ଦିନେ ବସି ଶ୍ରୀଯୁକ୍ତ ମହାପାତ୍ର ଏବଂ ଶ୍ରୀମତୀ ମହାପାତ୍ରଙ୍କ ସହିତ କଥା ହେଉହେଉ 'ବନଚାରୀର ଜୀବନ ଓ ସୃଜନରେ ରାଧାମୋହନ'ର ପରିକଳ୍ପନା ।

-ସୁନୀତି





www.dakshyabooks.com

BANACHARIRA JEEBANA O
SRUJANARE RADHAMOHANA

A Collection by
Suniti Mund

Dakshya Books
(A unit of dakshya venture pvt. ltd.)

Cover Design : Subash Barik


